# କାଗଜ ବାଘ

ରବି କାନୁନ୍‌ଗୋ



**କାଗଜ ବାଘ**—ଲେଖକ : ଶ୍ରୀ ରବି କାନୁନ୍‌ଗୋ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ରାମନବମୀ, ୧୯୯୪, ପ୍ରଚ୍ଛଦପଟ : ଅସିତ୍ ମୁଖାର୍ଜୀ, ମୁଦ୍ରଣ ନନ୍ଦକିଶୋର ପ୍ରେସ, ଡଗରପଡ଼ା, କଟକ-୨



**KAGAJA BAGHA**—Author Sri Rabi Kanungo, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), First Edition : Ram Nabami, 1994, Cover Design : Asit Mukherjee, Printed at : Nandakishore Press, Dagarapara, Cuttack-2.

PRICE : Rs. 38.

**ISBN 81-7401-062-9**

# ମୁଖବନ୍ଧ

ପୁସ୍ତକ ପାଇଁ କୌଣସି ପ୍ରାକ୍-କଥନର ଆବଶ୍ୟକତା ଥାଏ କି ?

ଉତ୍ତର ଯଦି 'ନା' ହୁଏ ତାହା ବେଶି ଯୁକ୍ତିଯୁକ୍ତ ଲାଗୁଛି । ମାତ୍ର, 'ହଁ' କୁଆଡ଼େ ପରମ୍ପରା ।

ଛଳନାକୁ ମଧ୍ୟବିନ୍ଦୁରେ ରଖି ସମାନ ସମାନ ଦୂରତାରେ ସ୍ୱାଧୀନ ଭାବେ ବିଚରଣ କରୁଥିବା କମନୀୟ ପରମ୍ପରା ଏବଂ ବ୍ୟକ୍ତିଗତ ଈପ୍ସା ଭିତରୁ ଆମେ କାହା ନିକଟକୁ କେତେ ଟାଣି ହୋଇଯାଉ ଅଥବା ଛଟକାଇଯାଉ ଇଲାକାରୁ କେଉଁଠି, କାହିଁକି କେତେକାଳ କଟାଉ, ଏହି ଅନ୍ୱେଷଣର ଚିରନ୍ତନତା ସାହିତ୍ୟ ପାଇଁ ସବୁକିଛି । ଏଇ ବିଶ୍ୱାସ ପାଇଁ ମୁଁ ଲେଖେ । ଅନ୍ୟଥା, ସୁଯୋଗ ଅନୁଯାୟୀ, ଯାହା କିଛି କରିପାରୁଥା'ନ୍ତି ।

ମୁଖବନ୍ଧ ଲେଖିବା ପରି ନିଜ ଚିନ୍ତାର ପ୍ରତିଏବଂ କାର୍ଯ୍ୟଟି କଲାବେଳେ ପିଲାଦିନର ଗୋଟିଏ କଥା ମନେପଡ଼େ । ଡ୍ରଇଂ-ସାର୍ ପରୀକ୍ଷା କରିବାକୁ ଗାଈ ଚିତ୍ର ଆଙ୍କିବାକୁ କହିଥିଲେ । କଲି । ଚିତ୍ର ତଳେ ଲେଖିଦେଲି 'ଗାଈ' । ଅନେକ ସହପାଠୀଙ୍କ ପରି ମୁଁ ଶୂନ ପାଇଥିଲି । କିନ୍ତୁ ମୁଁ ପାଇଥିବା ଶୂନ ତଳେ ସାର୍ ଅକ୍ଷରରେ ବି 'ଶୂନ' ଲେଖିଦେଇଥିଲେ । ନିଜ କ୍ରୋଧକୁ ଲାଜ ଏବଂ ଅନୁନୟ ଢଙ୍ଗରେ ପ୍ରକାଶ କରି ସାର୍‌ଙ୍କୁ ପଚାରିଲି, ଏମିତି ଅକ୍ଷରରେ ଲେଖିବାର କାରଣ କ'ଣ ? ସେ କହିଲେ, "ଚିତ୍ରକୁ ଯିଏ ଭାଷାରେ ବୁଝାଏ ସେ ପାଇଥିବା ମାର୍କ ବି ଭାଷାରେ ବୁଝୁ ।"

ପ୍ରକାଶକ, ଫ୍ରେଣ୍ଡସ୍ ପବ୍ଲିଶର୍ସର ଶ୍ରୀ ସହଦେବ ପ୍ରଧାନ ମହାଶୟଙ୍କ ସହିତ ଟେଲିଫୋନ୍ କଥାବାର୍ତ୍ତା ବେଳେ ମୁଖବନ୍ଧ ଲେଖିବା କଥା କହିସାରିଲା ପରେ ପିଲାଦିନର ଏଇ କଥାଟି ମୋର ବହୁତ ମନେପଡ଼ିଲା ।

ଓଲ୍ ସିନା ତିନଥର ହସେ ମାଣ ପଛବୁଦ୍ଧିଆ ହେଲେ ପାଞ୍ଚଥର । ଅତିରିକ୍ତ ଦୁଇଥରର କାରଣ ହେଲା : ଅନ୍ୟମାନେ ତାକୁ ପଛବୁଦ୍ଧିଆ ବୋଲି ଜାଣିପାରନ୍ତି—ସେଥିପାଇଁ ବି ସେ ହସେ, ଆଉ ଥରେ ହସେ ନିଜ ପଛବୁଦ୍ଧିଆପଣ ଲୁଚାଇବାକୁ । ତେଣୁ ଏହା ମୋର ପଞ୍ଚମ ହସର ଦସ୍ତାବିଜ ।

ଫୁଲ ଯଦି ନିଜ ରୂପ-ଗନ୍ଧରେ ପ୍ରଲୁବ୍ଧ କରିଇ ନପାରେ, ନିବାକ୍ ପ୍ରୀତି ଯଦି ଅଶ୍ରୁଷ୍ଟିର ରୁଦ୍ଧ ମୁଖଶାଳାକୁ ଖୋଲିଦେଇ ନପାରେ, ଗୀତ ସଙ୍ଗୀତ ପାଠକର ମନ-ଝରଣା ଯଦି ଆପେ ଆପେ ବହିଯାଇ ନପାରେ—-ଆକାଶରେ ଆଷାଢ଼ର ମେଘକୁ ଦେଖି ମୟୂରକୁ ନାଚ ଶିଖାଇବା ଯାହା ମୁଖବନ୍ଧ ବାଟେ ବହି ବିଷୟରେ କିଛି କହିବା ମୋତେ ସେମିତି ଲାଗୁଛି ।

କୋଡ଼ିଏ ବର୍ଷରୁ ଅଧିକ ହେଲାଣି । ଓଡ଼ିଆ ଭାଷାର ପ୍ରମୁଖ ସମ୍ବାଦପତ୍ର-ପତ୍ରିକାରେ ମୋ ଲଳିତ ନିବନ୍ଧ ଗୁଡିମତ ପ୍ରକାଶିତ ହୋଇଆସୁଛି । ବିନୀତ ଭାବରେ ଗୋଟିଏ କଥା ସ୍ୱୀକାର ନକଲେ ମୁଁ ନିଜ ପାଖରେ ଅପରାଧୀ ହୋଇପଡ଼ିବି । ଦିନ ଆରମ୍ଭରେ ବର୍ଷ ସରେନି । ମୁଁ ଯଦି ଟାଣିହୋଇ କିଛିବାଟ ଆସିପାରିଥାଏ ତାହା ମୋର ଅଗଣନ ପାଠକଙ୍କ ଶ୍ରଦ୍ଧା ଯୋଗୁ । ମୋର ଆଖି ଥିଲା—ସେମାନଙ୍କଠାରୁ ମୁଁ ଦୃଷ୍ଟି ପାଇଛି । ମୋର ହାତ ଥିଲା—ସେମାନଙ୍କଠାରୁ ମୁଁ ସୃଷ୍ଟି ପାଇଛି । ଲେଖକଟିଏ ଭାବେ, ନିଜ ଭିତରେ ନିଜେ ହଜିବା ପାଇଁ ଏଠାରୁ ବଡ଼ ମନ୍ତ୍ର ମୋତେ ଜଣାନାହିଁ ।

ରାମନବମୀ
ତା ୨୦ । ୪ । ୧୯୯୪

**ରବି କାନୁନଗୋ**

# ସୂଚୀପତ୍ର

ବିଷୟ | ପୃଷ୍ଠା
---|---

# ତଥ୍ୟ ଉପରେ ବନମାଳୀ

ସରକାରୀ ଚାକିରି ପାଇଁ ଆଶାୟୀ ଜଣେ ପ୍ରାର୍ଥୀଙ୍କୁ ସାକ୍ଷାତକାର ସମୟରେ ପ୍ରଶ୍ନ କରାଗଲା, ଯଦି ସୁଯୋଗ ପାଅ, ରିସ୍‌ପତ୍ ଖାଇବ ନା ନାହିଁ ?

ଟିକିଏ ବିଚଳିତ ନ ହୋଇ ପ୍ରାର୍ଥୀଜଣକ କହିଲେ—ନିଜ ଉପରେ ମୋର ଅଧିକାର ଥାଇପାରେ ସାର୍, ହେଲେ ଆଉ କାହା ପେଟରେ ମୁଁ କାହିଁକି ଧୂଳି ଦେବି ?

ଖୋଲିକୁହ ।

ସୁଯୋଗ ପାଇ ଯଦି ଇସ୍ତମାଲ୍ ନକରେ, ସଭିଏଁ କହିବେ ବୁଡ଼୍‌ବକ୍ । ଯଦି ଧରାପଡ଼ିଯାଏ କେହି ପିଠିରେ ପଡ଼ିବେନି ସାର୍, ମୁଁ ହେବି ଚୋର । ଯଦି ଧରା ନ ପଡ଼ିଲି ଜଗତ କହିବ ବିଚକ୍ଷଣ । ଚାକିରି ମିଳୁ ସାର୍, ଯେଉଁଠା ସୁବିଧା ହେବ ତାହାହିଁ କରିବାକୁ ମୁଁ ପ୍ରତିଶ୍ରୁତି ଦେଉଛି ।

ତଥାକଥିତ ସାଧୁତାକୁ ଦୂର ଗଗନରୁ ନିରୀକ୍ଷଣ କରୁଥିବା ହାକିମ ମହୋଦୟ ପ୍ରାର୍ଥୀଙ୍କ ଉତ୍ତରରେ ପ୍ରୀତ ହେଲେ ବା ନହେଲେ, ଅଥବା ତାଙ୍କ ସୁପାରିଶରେ ଚାକିରି ମିଳିଥିବ ବା ମିଳିନଥିବ, ସେ ବିଷୟରେ ଆମେ କୌଣସି ସମ୍ବାଦ ରଖିନାହୁଁ । କଇଁଛର ଉପର ଖୋଳପା ବାହ୍ୟ ଆକ୍ରମଣରୁ ପ୍ରାଣୀଟିକୁ ରକ୍ଷା କରିଥାଏ । ଆମ ପ୍ରାର୍ଥୀଙ୍କ ଉତ୍ତରକୁ ତିନିଭାଗ କଲେ ତହିଁରୁ ଗୋଟିଏ ଅବିକଳ ସେଇଆ । ନିଜକୁ ବଞ୍ଚେଇ ପରିବେଶର 'ହିତ ସାଧନ' କରିବା, ତସ୍କାର୍ଥ ଚୋରି କରିବା, ଏକ ବିଚକ୍ଷଣ କାର୍ଯ୍ୟ ।

କୌଣସି ଏକ ସହରରେ ପାମୋଲିନ୍ ତେଲ ମିଳୁନଥାଏ । ଖବରକାଗଜରେ ସେ ତେଲର ବନ୍ୟା ବୋଲି ସରକାର ଭୁହାକୁ ଭୁହା ଘୋଷଣା କରୁଥା'ନ୍ତି । ସହରର ଜନପ୍ରତିନିଧିଙ୍କୁ ପଚରାଗଲା । ସେ ମଧ୍ୟ କହିଲେ—ଯାହାକୁ ଯେତେ । କିନ୍ତୁ ଲୋକେ ପାଉ ନାହାନ୍ତି । କିଛି ଲୋକ ସଙ୍ଗଠିତ ହୋଇ ବହୁବାର ନିରାଶ ହେବାପରେ ଥରେ ହାକିମଙ୍କ ଦେଖା-ପାଇଲେ । ଏଇଠି ମତ ମତାନ୍ତରର କଥା ଉଠିଲା । ଏକାଧିକ ଲୋକ ଏକ ସମୟରେ କଥା ହେଉଥିବାରୁ ଜନପ୍ରତିନିଧି ତାହାକୁ ବିଶୃଙ୍ଖଳିତ ଆଚରଣ ବୋଲି ବର୍ଣ୍ଣିଲେ । “ବାହାରିଯାଅ ନହେଲେ ପୋଲିସ୍ ଡାକିବି”, ଏହା ତ ଯେକୌଣସି ସରକାରୀ ହାକିମଙ୍କର ଅତ୍ୟାବଶ୍ୟକ କର୍ତ୍ତବ୍ୟ । ପୋଲିସ୍ ଭୟରେ ଲୋକଙ୍କ ସାହସ ପାଣି ଫାଟିଗଲା । ସବା ଆଗଧାଡ଼ିରେ ଠିଆ ହୋଇଥିବା ଲୋକ ଲେଉଟାଣି ପଚୂଆରର ଆଗ ଲାଇନ୍ ଧରିବାକୁ ଧାଁଧପଡ଼ ଆରମ୍ଭ କରିଦେଲେ ।

‘ଅଳିଆ’ ସଫାହେବା ପରେ ହାକିମ ତାଙ୍କୁ ଲକ୍ଷ କରି କହିଲେ :

ନୂଆନେତା ।

ମୁଁ : ସାର୍, ସେମାନଙ୍କ ଭୁଲ କେଉଁଠି ଥିଲା ?

ଏଠାକୁ ଆସିବା ।

: ତା'ହେଲେ କେଉଁଠାକୁ ଯାଇଥା'ନ୍ତେ ?

: ସେ ବିଷୟରେ ସରକାରୀ ଆଦେଶ ସ୍ପଷ୍ଟ ନୁହେଁ ।

ଗଣତନ୍ତ୍ର ଏକ ଗଜଦନ୍ତ ପଲଙ୍କ, ସେଥିରେ ସହସ୍ରାଧିକ ଅଳିଅଳି ରାଜଜେମାମାନେ ସତେ ଯେମିତି ଆୟସ କରୁଛନ୍ତି । ପ୍ରତି ପଲଙ୍କର କୋଣରେ ସଜାହେବାପରି ଲଖାଯାଇଛି ମଣିମାଣିକ୍ୟ ଖଞ୍ଜା ସୁବର୍ଣ୍ଣପଞ୍ଜୁରି । ସେଇଥିରେ ଅବରୁଦ୍ଧ ଥିବା ଚଢ଼େଇଗୁଡ଼ିକ ପ୍ରୀତି ପ୍ରଳାପରେ ମଗ୍ନ । କେଇଟା ବର୍ଷ ପରେ ସେଇ ଚଢ଼େଇର ପର ଖସିଯାଏ । ତାକୁ ସ୍ଥାନମାନ କରି ରାସ୍ତାରେ ଛାଡ଼ିଦିଆଯାଏ । ପୁଣି ସ୍ୱାଗତିକା ଗାଇ ଆଉ ଗୋଟିଏ ଉଡ଼ିଆସିବ ସେଇ ପଞ୍ଜୁରି ଭିତରକୁ । ଆପେକ୍ଷିକ ସମୟରେ ଏଇ ଚଢ଼େଇଗୁଡ଼ିକ ହିଁ ଗଣତନ୍ତ୍ରର ଏମ୍ବ୍ଲେମ୍ !

'ୟେ ତୋ ଆଧୁନିକ ଟେକ୍ନିକ କା କମାଲ୍ ହୈ' ପରି । ନିଃଶବ୍ଦ କଳବେଳ ହାନବ୍ୟବସ୍ଥାରେ ଦୁର୍ନୀତି ମାଡି ନାଁ ନେଇ ଆଗେଇ ଚାଲିଛି । ପରେ ପରେ ସମସ୍ତେ ଜାଣିଲେ ଷ୍ଟୋରିଂ ଏଜେଣ୍ଟ ହାକିମଙ୍କର ଅତ୍ୟନ୍ତ ପ୍ରିୟ ଲୋକ, ହାକିମ୍ ଜଣେ ମନ୍ତ୍ରୀଙ୍କର ଅତ୍ୟନ୍ତ ପ୍ରିୟ ଓ ସରକାରୀ ରିଟେଲର୍‌ଗଣ ଷ୍ଟୋରିଂ ଏଜେଣ୍ଟର ପ୍ରିୟଭାଜନ ହେବାକୁ ପ୍ରତିଯୋଗିତା କରୁଥାନ୍ତି । ଅବସ୍ଥା ଯଦି ଏପରି, ପ୍ରତୀକ୍ଷମାଣ ଜନସାଧାରଣ ଗଣତନ୍ତ୍ରର ରଥକୁ କିପରି ଟାଣିବେ ?

କୌଣସି ଇଲାକା ଦେଖନ୍ତୁ, ମୂଳତତ୍ତ୍ୱରେ ବ୍ୟତିକ୍ରମ ନାହିଁ— ଯାହା ଫରକ ପରି ପ୍ରତୀୟମାନ ହୁଏ ତାହା କେବଳ ଆଚରଣ ଓ କୌଶଳରେ । ପୋଲିସବାଲାଏ କହିବାକୁ ଆରମ୍ଭ କଲେଣି : ଅପରାଧୀ କ'ଣ ଆମକୁ କହି ଅପରାଧ କରିଥିଲା ଯେ ଆପଣମାନେ ତରତର ହେଲେ ଆମେ ଧରିନେବୁ । ଅଭିଜ୍ଞତା କିନ୍ତୁ ଅନେକ ଦୁଃଖର କଥା ସୂଚାଇ ଦେଉଛି । ପୋଲିସକୁ ଯେ କହି ଅପରାଧ କରାନଯାଏ, ତାହା ନୁହେଁ । ହଲପ୍‌କରି କହିପାରୁ, ଏପରି ଅବସ୍ଥାରେ ବରଂ ପୃଥିବୀ ଶାନ୍ତ, କେବଳ ଉଜୁଡ଼ି ଯାଇଥିବା ଗଣତନ୍ତ୍ରର ନାଗରିକଟି ବ୍ୟସ୍ତ ।

ଥରେ ଜଣେ ମନ୍ତ୍ରୀଙ୍କୁ ଏକ ସାମ୍ବାଦିକ ସମ୍ମିଳନୀରେ ତାଙ୍କ ଅଧୀନରେ ଥିବା ବିଭାଗର କେତେକ ଗୁରୁତର ତ୍ରୁଟି ସମ୍ପର୍କରେ ପ୍ରଶ୍ନ ପଚରା ଯାଆନ୍ତେ, କାହିଁକି କେଜାଣି ମନ୍ତ୍ରୀ ମହୋଦୟ ତାହାକୁ ତାଙ୍କ ଅଧସ୍ତନ କର୍ମଚାରୀଙ୍କ ବିରୁଦ୍ଧରେ ଅଭିଯୋଗ ବୋଲି ବିଚାରି ବସିଲେ ଏବଂ କହିଲେ 'ସଟ୍ ଅପ୍' । ଏପରି ଅବସ୍ଥାରେ କରାଯିବ କ'ଣ ? ଅଧସ୍ତନ କର୍ମଚାରୀମାନଙ୍କ ଚୋର କେଉଁଠିକି ? ସେମାନଙ୍କୁ ଠିକଏ ଝାଙ୍କା ଦେବା ଲାଗିଲେ ମନ୍ତ୍ରୀମାନେ ଝାଉଁଳି ପଡୁଛନ୍ତି କାହିଁକି ? ତାହାହେଲେ 'ଶପୂର୍ସ-ଅପ୍' କରାଯିବ କାହାକୁ ?

ପୂର୍ବକାଳରେ ଜଣେ ରାଜା ଥିଲେ । ତାଙ୍କ ରାଜ୍ୟଶାସନରେ ଦୁର୍ନୀତିର ଚେର ମାଡ଼ିଯାଇଛି ବୋଲି ବହୁ ଅଭିଯୋଗ ପହଞ୍ଚିଲା । ରାଜା ବିବ୍ରତ ହୋଇପଡ଼ିଲେ । ବହୁ କଣ୍ଟ୍ରାକ୍ଟର ନିଯୁକ୍ତ କଲେ ଓ ତାଙ୍କର କଠୋର ଆଦେଶ ଥିଲା, ଦୁର୍ନୀତିର ଚେର ଉପାଡ଼ିଦିଅ । କଣ୍ଟ୍ରାକ୍ଟରଗଣ

ରାଜ୍ୟସାରା ଆସନପାଣ୍ଡ ଚେର ଉପାଡ଼ିବା କାର୍ଯ୍ୟରେ ଲାଗିଗଲେ । ରାଜା ବେଶ୍ ଖୁସି ଯେ ଆଉ ଦୁର୍ମଷ କଥା କେହି କହୁନଥାନ୍ତି ।

ହଠାତ୍ ଦିନେ ରାଜାଙ୍କ ସିଂହାସନ ନିକଟରେ ପଲସ୍ତର ଫାଟିବା ଦେଖାଗଲା । ରାଜା ଲୋକ, ସହଜେ ତ କିଛି ବୁଝନ୍ତିନି । ମନ୍ତ୍ରୀଙ୍କୁ ଡାକି ପଚାରିଲେ : ମନ୍ତ୍ରିବର, କିସ ଅଟେ ସମାଚାର ? ଅନେକ ନିରୀକ୍ଷଣ କରି ମନ୍ତ୍ରୀ କହିଲେ ଆଉ କିଛି ନୁହେଁ ଏହା ଦୁର୍ମଷର ଚେର । ଅନେକ ଦିନୁ ଯେଉଁ ନାଁଟି ନଶୁଣିଥାନ୍ତି ତାହା ହଠାତ୍ ଶୁଣିବାକୁ ପାଇ ରାଜା କୋପାନ୍ୱିତ ହୋଇପଡ଼ିଲେ ।

ମୁକୁଳା ଖଡ୍ଗ ହାତରେ ଧରି ବାହାରିପଡ଼ିଲେ ସେ । ପ୍ରଥମେ କଟୁଆଳମାନଙ୍କ ସନ୍ଧାନ, ତା’ ପରେ ଦୂର୍ମଷର ବୃକ୍ଷ । ସେ ଯେତେ ସ୍ଥାନରେ ପହଞ୍ଚିଲେ ସବୁଠାରେ ଗୋଟିଏ ପ୍ରକାର କଥା ଦେଖି ବିସ୍ମିତ ହୋଇପଡ଼ିଲେ । କଟୁଆଳମାନେ ସବୁ ବୃକ୍ଷମୂଳେ ବଶମ୍ୱଦ କର୍ମଚାରୀପରି ରାଜା-ଆଜ୍ଞା ପାଳନ କରିଛନ୍ତି । ମାତ୍ର କିଛି ଚେର ଉପାଡ଼ି ଉପାଡ଼ି ସେମାନଙ୍କଠାରୁ ଚେର ବାହାରି ମାଟିତଳେ କାହିଁ କୁଆଡ଼େ ଭେଦିଯାଇଛି ସୁତରାଂ ସେମାନେ ନିଜେ ଆଉ ଦି ଉଠିପାରୁନାହାନ୍ତି !

□ □

# ମୋ ପ୍ରୀତି ; ମୋ ପ୍ରତି ପ୍ରୀତି

ଆଦିମ ମଣିଷର ସୂଚନା ପାଇଁ ଜିଜ୍ଞାସା କମ୍ ଥିଲା, ଆବଶ୍ୟକତା ବି। ପରସ୍ପର ମଧ୍ୟରେ ମତପାର୍ଥକ୍ୟ ହେବାର ଇଲାକା ବି କମ୍ ଥିଲା । ମାତ୍ର ଯେଉଁଠି ମତପାର୍ଥକ୍ୟର ସମସ୍ତ ସଂଯୋଗ ଘଟିଯାଉଥିଲା ଜିଗୀଷା ତା'ର ପ୍ରାଣବନ୍ଦି ଛୁଇଁ ତାକୁ ରକ୍ତମୁଖା କରାଇ ଦେଉଥିଲା । 'ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍'—ତା' ମନ-ଗଗନକୁ ସମ୍ପୂର୍ଣ୍ଣ ଆଚ୍ଛାଦିତ କରି ଦେଉଥିଲା । ଜିତିଲେ ନିଜ ଚନ୍ଦ୍ରାର 'ମହୀ'ରେ ଏକାଧିପତ୍ୟ ରାଜତ୍ୱ ବିରାଜୁଥିଲା ତା'ର, ଆଉଥରେ ନହାରିବା ପର୍ଯ୍ୟନ୍ତ ଏବଂ ହାରିଲେ ଅଲବତ୍ ମରଣ ଓ ତାହାଥିଲା 'ସ୍ୱର୍ଗ'ର ଆଶ୍ୱାସନା ।

ସେଇ ପୁରୁଣା ମଣିଷର ଇସ୍ତାହାରକୁ ନେଇ ଆମେ ଆସି ନୁଆ ଯୁଗରେ ପହଞ୍ଚିଯାଇଛୁ—ଏକଥା ଯଦି କେହି କହିବସେ, ଆଖିବୁଜି ସମସ୍ତେ ମତଦେବେ ପାଗଳଟେ, ସିନିକ୍‌ଟେ । ଏକଥା ଏଇଥିପାଇଁ କହିବାକୁ ମନ ହେଉଛି ଯେ, ଆଜି ମଣିଷ ପାଖରେ ମିଛ ସତ ପାଇଁ 'ପ୍ରାୟୋରିଟି' ବିଚାର ନାହିଁ । ମୁକୁଳା ଖଡ଼୍‌ଗ ଧରି ଶତ୍ରୁକୁ ଭୁସିବାପାଇଁ ଗୋଡ଼େଇ ଯିବାର ଆଚରଣ । ପ୍ରତିବନ୍ଧକ ଅନେକ ନଥିଲେ ତାହା ବି ଅସମ୍ଭବ ହୁଅନ୍ତା ନାହିଁ ।

ଯେ କୌଣସି ନେତାଙ୍କ ପରି ରାଜୀବଙ୍କର 'ବ୍ୟାଣ୍ଡ ଓ୍ୱାଗନ୍ ଫଲୋଅର୍' ନିଶ୍ଚୟ ଥିବେ । ତୁଣ୍ଡରୁ ଯାହା ବାହାରିବ, ଜୀ ହଜୁର । ରାଜୀବ ଗାନ୍ଧୀ ନିକଟରେ କହିଛନ୍ତି : ଖବରକାଗଜବାଲାଏ ବହୁତ ମିଛ କହୁଛନ୍ତି । ଏଇକଥାରୁ ହିଁ ପ୍ରଲୁବ୍ଧ ପ୍ରୀତିର ପ୍ରସ୍ତାବନା । ଯେତେବେଳେ କିଛି ନ କହିଲେ ପୃଷ୍ଠା ଭରିବନି, ସୁହାଇଲା ପରି ସତ ମିଳୁନାହିଁ ଅଥବା ଆତ୍ମପ୍ରଚାରର ନିଜ ଫୁଙ୍କା ବେଲୁନ୍‌ରୁ ହାଉଆ ସରିଆସିଲାଣି ସେତେବେଳେ

କଲମ୍ କଲମ୍ ମୂଲ୍ୟବାନ୍ ସ୍ଥାନ କ'ଣ ବଦ୍ୟୋଗ ଦୁଃଖ ପାଇଁ ସମ୍ମାନ ଦେଖାଇନ୍ଥ ପରି ଗ୍ରାଡ଼ ଦିଆଯାଇ ପାରିବ ? ପୁନଶ୍ଚ, ଯଦି ପ୍ରିୟ ପାଠକେ 'ଗୃହ' ପସନ୍ଦ କରୁଛନ୍ତି, ସେମାନଙ୍କ କୌତୁକଆ ମନକୁ ଆଉ ଟିକେ କୁତୁକୁତୁ କରିଦେଲେ କ୍ଷତି କ'ଣ ?

ନିକଟରେ ଓଡ଼ିଶା ଭବନ ସମ୍ପର୍କରେ ଏହିପରି ଗୋଟିଏ ସମ୍ବାଦ ବାହାରିଛି । ଜଣେ ପାଠକ ସ୍ୱଭାବରେ ଏକାଧିକବାର ପଢ଼ି ମଧ୍ୟ ସମ୍ବାଦଟିର ମୁହଁ ଓ ମୁହାଁଣକୁ ଯୋଡ଼ି ପାରିଲନାହିଁ । ବୋଧହୁଏ, ପ୍ରବଞ୍ଚକ— ନୈତିକତା ଲେଡ଼ି ବସିଥିଲ, ତାହା ଝାଟିମାଟି ଗୋବର ଲିପା 'ଭବନ'ଟିଏ ହୋଇଥାନ୍ତା; କାଠ ପିଢ଼ା ବା ବରଡ଼ାଚଟିର ଆସନମାନ ରହିଥାନ୍ତା ଯେଉଁଠି; ବିଜୁଳି ଆଲୁଅ ପରିବର୍ତ୍ତେ ଜଡ଼ାତେଲ ଦୀପ ଜଳୁଥାନ୍ତା, ବିଛଣା ପାଇଁ ହେଁସ କନ୍ଥା ଆଦି ବ୍ୟବହାର କରାଯାଇଥାନ୍ତା । ତା'ହେଲେ ଯାଇ ସାମ୍ବାଦିକ ମହୋଦୟଙ୍କ ବିଚାରରେ ଓଡ଼ିଶା ନିଜ ନାମ ସାର୍ଥକ କରିଥାନ୍ତା ।

ମନେପଡ଼ୁଛି, ଏହିପରି ଏକ ପାଗଳାମି ସ୍ୱର୍ଗତଃ ରାଜନାରାୟଣ (ମହାନ୍ ଆତ୍ମାର ସଦ୍‌ଗତି ହେଉ) ମନ୍ତ୍ରୀ ଥିବାବେଳେ ଦେଖାଇଥିଲେ । ବୈଦେଶିକ ଅତିଥିମାନଙ୍କ ନିମନ୍ତେ ନିର୍ଦ୍ଧାରିତ ପ୍ରଟୋକଲ ମର୍ଯ୍ୟାଦାର ପରମ୍ପରାକୁ ସେ ଭାଙ୍ଗି ଦେଇଥିଲେ । ସାଣ୍ଡେଲିଅରରୁ ଆଲୁଅ ଜଳିବ ନାହିଁ କାରଣ ତାହା ଥିଲ ବାଦଶାହି । କଟ୍‌ଗ୍ଲାସ୍‌ରେ ପାନୀୟ ଦିଆଯାଇ ପାରିବ ନାହିଁ କାରଣ ତାହା ଥିଲା ବିଦେଶୀ ସଂସ୍କୃତିର ଛୁଟା ଇତ୍ୟାଦି । ମୋରାରଜୀ ଭାଇ ଅତିଷ୍ଠ ହୋଇପଡ଼ୁଥାନ୍ତି । ଥରେ ସେ କହିଲେ, ତାହେଲେ ଏଥର ବାଙ୍କୁଏଟ୍ ହଲ୍‌କୁ ଯେଉଁ ବିଦେଶୀ ଅତିଥିମାନେ ଆସିବେ ସେମାନଙ୍କୁ ଆର୍ଯ୍ୟ ସଂସ୍କୃତି ନାଁରେ କ'ଣ କଉପୁନି ପିନ୍ଧି ଆସିବାକୁ ବାଧ୍ୟ କରିବା ? କଥା ସେଇଠି ସରିଥିଲ କାରଣ ଅଧିକା ସତନ ପାଇଁ ରାତି ଅଣ୍ଟି ନ ଥିଲ ।

ସମ୍ବାଦପତ୍ରଗୁଡ଼ିକ ସ୍ୱାଧୀନ ହେବା ଦରକାର । ମାତ୍ର ସ୍ୱାଭାବିକ ପ୍ରଶ୍ନ : କେତେ ସ୍ୱାଧୀନ ? କିପରି ସ୍ୱାଧୀନ ? ନାଗରିକ ସ୍ୱାଧୀନତାଠାରୁ ଅଧିକା ସ୍ୱାଧୀନ ହେବା ଦରକାର କି ? ଟିକିଏ ଖରାପ ଶୁଭୁ ପଛକେ,

ଏଣୁ ସ୍ୱାଧୀନତାକୁ ଯଦି ଘୋଡ଼ା ଡ଼ମ୍ବ ବାଚକ ଅର୍ଥରେ ପ୍ରୟୋଗ କରାଯାଏ ତାହାହେଲେ ପରିଣତି ଯାହା ହେବାକଥା ତାହାହିଁ ହେଉଛି । ସ୍ୱାଧୀନତା ପାଇଁ ଆର୍ତ୍ତ ଚିତ୍କାରରେ ଗଗନ ପବନ କମ୍ପୁଛି ଅଥଚ ସ୍ୱେଚ୍ଛାଚାରର କମ୍ପନାହିଁ ।

ଆଜି ଗୋଟିଏ ବିପରୀତ ଅବସ୍ଥା, ବିଲକ୍ଷଣ କହିଲେ ଚଳିବ, ଆମମାନଙ୍କ ଦେହସୁହା ହୋଇସାରିଲାଣି । ସମାଜରେ ନାଁ ଅର୍ଜନ କରିଥିବା ବିଶିଷ୍ଟ ମଣିଷ ବା ମାମଲତ୍‌କାର ଅନୁଷ୍ଠାନଗୁଡ଼ିକ ଅହରହ ନିଜ ନିଜର ନାଁ ଓ ଗୁଣକୀର୍ତ୍ତନ ଖବରକାଗଜ ପୃଷ୍ଠାଗୁଡ଼ିକରେ ଦେଖିବାକୁ ଚାହାନ୍ତି । ସତ ନଥାଉ ପଛେ, ଯେମିତି ହେଲେ ସତ୍ୟବାନ୍ ହେବେ ସେମାନେ । ଏଇଠି ଆମ 'ଟାଇଟଲ୍ ଫଗ୍' ମୋ ପୀରତି ଜୁଆରରେ ଭସିବୁଲୁ ମୋ ପାଇଁ ଅରପିତ ପୀରତିର ସବୁ ଫୁଲପାଖୁଡ଼ା । ହାୟ, ହାୟ !

ହିଟ୍‌ଲର୍‌ଙ୍କର ଜଣେ ପ୍ରଚାର ମନ୍ତ୍ରୀ ଥିଲେ । ନାଁ ତାଙ୍କର ପାଲ୍ ଯୋଶେଫ୍ ଗୋବେଲ୍‌ସ୍ । ସେ ଥିଲେ ଇତିହାସରେ ନାଁ ଅର୍ଜନ କରିଥିବା ଜଣେ ପ୍ରସିଦ୍ଧ ମିଛୁଆ । ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷଭାଗକୁ ମିତ୍ର-ଶକ୍ତିର ଆକ୍ରମଣରେ କ୍ରମାଗତ ଭାବେ ଜର୍ମାନ ବିପର୍ଯ୍ୟସ୍ତ ହୋଇଯାଉଥାଏ ମାତ୍ର ଗୋବେଲ୍‌ସ୍‌ଙ୍କ ପ୍ରଚାର ମାଧ୍ୟମ ଏତେ ପ୍ରଖର ଥିଲା ଯେ ତାଙ୍କ ଦେଶର ଶତ୍ରୁମାନଙ୍କୁ ମଧ୍ୟ ସେମାନଙ୍କ ନିଜର ବିଜୟୀ ସ୍ଥିତି ସମ୍ପର୍କରେ ସେ ଦ୍ୱନ୍ଦ୍ୱରେ ପକାଇ ଦେଉଥିଲେ । ଅସଲରେ ଜର୍ମାନ ହାରୁଥାଏ କିନ୍ତୁ ତାଙ୍କ ପ୍ରଚାରରେ ଜର୍ମାନ ଜିତୁଥାଏ । ତେଣୁ ତାଙ୍କ ନାଁରେ କଥା ଉଠିଲା, Goebbles' truth, ମାନେ, ମିଛ । ଲୋକେ କହନ୍ତି ତାଙ୍କର କୁଆଡ଼େ ଗୋଟିଏ ତତ୍ତ୍ୱ ଥିଲା : Go on repeating lies till people believe those to be true.

ରାଜୀବ ଗାନ୍ଧୀଙ୍କର ରାଜନୈତିକ ବିଚକ୍ଷଣତାରେ ଅନେକ ଭୁଲ୍ ଭଟକା ବାରି ହୋଇଯାଉଥିଲେ ବି ସେ ସମ୍ବାଦପତ୍ର ସମ୍ପର୍କରେ ଯେଉଁ ମନ୍ତବ୍ୟ ଦେଲେ, କେତେକ ସମ୍ବାଦପତ୍ର ଓ ବ୍ୟକ୍ତିବିଶେଷଙ୍କ ଆଚରଣକୁ ଦେଖି, ମନ 'ଏନ୍‌କୋର୍—ଏନ୍‌କୋର୍' (ଯାହାର ଉତ୍କଟ୍ ସଙ୍ଗୀତ ଟିକିଏ ଅଶ୍ଳୀଳ ହେଲେ ଦର୍ଶକ ଗ୍ୟାଲେରୀରୁ ଏଇ ଶବ୍ଦ ଶୁଣିଥିବେ) ଡାକୁଛି ।

ସମ୍ବାଦପତ୍ର ଓ କେତେକ ବ୍ୟକ୍ତିବିଶେଷଙ୍କର ଅସତ୍ୟର ମଧୁଚନ୍ଦ୍ରିକା ଚାଲିଥାଉ, ଏଇମିତି ଚାଲିଥାଉ । ଆଇରନ୍ ପାଇରାଇଟସ୍ (Iron pyrites) ନାମକ ଏକ ଖଣିଜ ପଦାର୍ଥ ସୁନାପରି ଦେଖାଯାଏ ବୋଲି ତାର ନାଁ ଯେପରି ଭୂବିଧାକାରମାନେ ଦେଇଛନ୍ତି Fool's gold, ଆମେ ସେହିପରି ଦୈନିକ କେତେ Fool's news ପଢ଼ୁଛୁ ଓ ତାହାସବୁ କେଉଁ ଆଦମ ଖବର ପ୍ରତିଚ୍ଛବି ନେଇ ମୁକୁଳି ଆସୁଛି—ଏକଥା ପାଠକମାନେ ଚିନ୍ତା କରିବା ଉଚିତ କି ନା ବିଚାର କରନ୍ତୁ ।



# ମନ କଣ୍ଟ୍ରୁର 'ମାର୍ଜିନ୍'

ମଣିଷର ପ୍ରତି ଆଚରଣରେ ସୀମା ରହିବା ଦରକାର ବୋଲି କୋଉ ଯୁଗରୁ କଥା ଚାଲିଆସୁଛି । ସମସ୍ତେ କହୁଥାନ୍ତି ମାତ୍ର ପ୍ରାୟ କେହି ପାଳନ୍ତି ନାହିଁ । ସେଇଥି ସକାଶେ ଯେଉଁଠି ଆଶା ଉଦ୍ରେକ ହେବାର ଆଦୌ ଆବଶ୍ୟକତା ନଥାଏ, ସେଇଠି ହି ଆମକୁ ହତାଶା ଲାଞ୍ଛିତ କରେ । ଏତଦ୍ଦ୍ୱାରା ଦହଗଞ୍ଜିକୁ ନିଜେ ନିଜେ ନିମନ୍ତ୍ରଣ କରି ତହିଁର ବିଦାୟ-ଗୀତିକା ପାଇଁ ଉହୁ-ଆହା ବିନା ଆମ ପାଖରେ ଆଉ କୌଣସି ମଧୁର ମୂର୍ଚ୍ଛନା ମିଳେ ନାହିଁ ।

ପାଠକଙ୍କର ଶ୍ରମଭାର ଲାଘବ ହେବା ପାଇଁ ଗୋଟିଏ ଗପ କହୁଛି (ସୌଜନ୍ୟ-'ବେତାଳ ବିଂଶମ' ଷ୍ଟାଇଲ୍) ।

ଧରିଯାଉ କୌଣସି ଏକ ରାଜବଂଶର କଥା । ଦିନେ ଯୁବରାଜଙ୍କୁ ଖାଲି ଫିଲେସଫି 'ମାଡ଼ିଲା' । ପୃଥିବୀ ତାଙ୍କୁ ଲାଗିଲା ଅଳୀକ ମାୟାର ଶିଆଳିଲତା, ନିଅର କଣ୍ଟାବଣ । ତାଙ୍କର କେହି ପ୍ରତିଦ୍ୱନ୍ଦ୍ୱୀ ନଥିଲେ ବା ପ୍ରାସାଦ ଭିତରର କୌଣସି ଷଡ଼ଯନ୍ତ୍ର ଚାଲୁନଥିଲା ତାଙ୍କ ବିରୁଦ୍ଧରେ । ତଥାପି କେଜାଣି କାହିଁକି ମୁଡ଼୍ ହୋଇଗଲା, ତାଙ୍କୁ ଖାଲି ଫିଲେଜଫି 'ମାଡ଼ିଲା' ।

ଯୁବରାଜ କାହାକୁ କିଛି ନକହି ଘୋଡ଼ାଶାଳକୁ ପଶିଗଲେ । ଉପରେ ପାଣି ପଡ଼ିଲେ ଠପ୍‌କରି ତଳକୁ ଗଡ଼ି ଆସୁଥିବା ପରି ଚେହେରାର ମୁର୍‌ମୁର୍ ଖଇରିଆ ରଙ୍ଗର ଘୋଡ଼ାଟିକୁ ଧରି ସେ ବାହାରିଗଲେ । ଅନ୍ତଃହୀନ ଭାବନା-ଶୂନ୍ୟତାକୁ ଦିଗହୀନ ସରଣୀ । ଉଦାର ଭାବେ ଘୋଡ଼ା ଚାଲୁଥାଏ ଟପ୍‌ଟପ୍ । ଚଞ୍ଚଳ ଚାଲିବା ପାଇଁ ଯୁବରାଜଙ୍କର କୌଣସି ତାଡ଼ନା ନଥାଏ ବି ।

ଏମିତି ଯାଉଯାଉ ଘୋଡ଼ା ପଶିଲାଣି ଗୋଟିଏ ଜଙ୍ଗଲ ଭିତରେ । ରାଜକୁମାରଙ୍କର ତେଣିକି ନିଘା ନାହିଁ । ସେ ଚାହୁଁଥାନ୍ତି ଆକାଶର ବିସ୍ତୀର୍ଣ୍ଣ ନୀଳିମାକୁ, ପ୍ରକୃତିର ମନଲୋଭା ସବୁଜିମାକୁ । ଏତିକିବେଳେ ରାଜକୁମାର ଚମକି ପଡ଼ିଲେ । କାରଣ ସେ ଦେଖିଲେ, ତାଙ୍କୁ ହାତ ପତେଇ ଠିଆ ହୋଇଛି ଦରିଦ୍ର ଯୁବକଟିଏ । ପିନ୍ଧିଛି ଛିଣ୍ଡା କୋତରା ଲୁଗା । ମାଗୁଛି, 'ବାବୁ, କିଛି ମିଳୁ ।' ସ୍ଥାନ ନିଘଞ୍ଚ ଜଙ୍ଗଲ ।

ଏ ଦୃଶ୍ୟ ଯୁବରାଜଙ୍କ ଅନୁଭୂତି ଭିତରକୁ ଆସିନାହିଁ, ଦୟା ତ ଦୂରର କଥା । ସେ ପକେଟରେ ହାତ ପୂରେଇ ଯେତେ ସୁନା ମୋହର ଥିଲା ସବୁ କାଢ଼ି ଭିଖାରୀର ଅଞ୍ଜୁଳାରେ ଅଜାଡ଼ିଦେଲେ । ଘୋଡ଼ା ପୁଣି ଆଗେଇଲା । ରାଜକୁମାର କେତେ କେଜାଣି ବାଟ ଯାଇ ସାରିବେଣି, ପୁଣି ଦେଖିଲେ ସେହି ଲୋକଟିକୁ । ମନରେ ତାଙ୍କର କୌଣସି ବିରକ୍ତିଭାବ ଆସିନାହିଁ । ସେ ପଚାରିଲେ : କ'ଣ କହୋ, ପୁଣି କିଆଁ ପଛରେ ଚାଲିଛ ?

ଦିବ୍ୟପୁରୁଷ ପରି ଉଭା ହୋଇଥିବା ବ୍ୟକ୍ତି ଯେ ଯୁବରାଜ ଏକଥା ଲୋକଟି ଜାଣି ନଥାଏ । ସେ କହିଲା—ମହାଶୟ, କପଡ଼ା ଲତା ଖଣ୍ଡେ ମିଳନ୍ତାନି ?

ଆଗରୁ କହିଛି, ଯୁବରାଜ ମୁଡ୍‌ରେ ଥିଲେ । ସେ କ'ଣ କଲେ ନା ନିଜ ଦେହରେ କେବଳ ଅଣ୍ଡରଓ୍ୱାର ରଖି ବାକି ସବୁ ଲୁଗା କାଢ଼ି ଲୋକଟିକୁ ଦେଇଦେଲେ । ଆଗରୁ ତ ପୁଳାଏ ସୁନା ମୋହର ପାଇଥିଲା, ଏବେ ଏତେଗୁଡ଼ିଏ ସୁନାଜରି ଲଗା ବେଶପୋଷାକ ପାଇ ଲୋକଟି ତାଜୁବ୍ । ଅଣ୍ଡରଓ୍ୱାର ପିନ୍ଧା ରାଜକୁମାରଙ୍କ ଘୋଡ଼ା ଚାଲିଗଲା ।

ଆଉ ଥୋଡ଼ାଏ ବାଟ ପରେ ଯୁବରାଜ ପୁଣି ଭେଟିଲେ ସେହି ଲୋକଟିକୁ । ତାଙ୍କ ଦାନର ପୋଷାକ ପିନ୍ଧି ଲୋକଟି ଡନ୍‌ଛନ୍ ଦେଖାଯାଉଥାଏ । ରାଜକୁମାର ପଚାରିଲେ, କଣ କହୋ, ପୁଣି କିଆଁ ପଛରେ ଚାଲିଛ ? ତା'ର ଉତ୍ତର ଥିଲା— ମହାଶୟ, ମୁଁ ଏବେ ଜାଣିପାରୁଛି ଆପଣ କାହିଁକି ଘୋଡ଼ା ଚଢ଼ିଛନ୍ତି । ଏ ପୋଷାକର ଓଜନ ଜଣେ ମଣିଷ ପକ୍ଷେ ବୋହିବା କଷ୍ଟ ବୋଲି, ନା ?

ଯୁବରାଜଙ୍କ ଖେୟାଲି ମନ ଏଥର ଆହୁରି ଭାବାପ୍ଲୁତ ହୋଇଗଲା । ସେ ପଚାରିଲେ, ଘୋଡ଼ାଟି ନେବ କି ? ଲୋକଟି ଲାଜେଇଗଲା । ଯୁବରାଜ

ତାକୁ ଘୋଡ଼ାଟି ଦେଇଦେଲେ । ଏହାପରେ, ଅଶ୍ୱାରୋହୀର ପିନ୍ଧା ଯୁବରାଜ 'ଫିଲୋସଫି-ପ୍ୟାକଡ଼୍-ମୁଣ୍ଡ୍'ରେ ଅନିଶ୍ଚିତ ପଥରେ ଆଗକୁ ଚାଲିଗଲେ ।

ଏଥର, ମଧ୍ୟାହ୍ନର ସମୟ ଅନେକ ବଢିଗଲା । ତା'ପରେ ରାଜକୁମାର ଦେଖିଛନ୍ତି ଯେ ଲୋକଟି ଘୋଡ଼ାରେ ଚଢ଼ି ତାଙ୍କ ପଛେ-ପଛେ ଅନୁସରଣ କରୁଛି । ଅଦ୍ଭୁତ ଦୃଶ୍ୟ । ଏହାପରେ ଆଉ କାହାଣୀ ନାହିଁ, 'ସ୍ନାପ୍-ଏପିଲଗ୍' ।

ଲୋକଟି କହିଲା—ମହାଶୟ, ମୋତେ ପ୍ରଚଣ୍ଡ କ୍ଷୁଧା ଲାଗିଥିଲା । ଆପଣଙ୍କଠାରୁ ଏତେ ଜିନିଷ ପାଇ, ଘୋଡ଼ାଚଢ଼ି ମୁଁ ଚାଲିଲି ଗୋଟିଏ ଝରଣାର ସନ୍ଧାନରେ କେଇ ଆଞ୍ଜୁଳା ପାଣି ଅନ୍ତତଃ ପେଟରେ ପୂରାଇ-ଦେବି ବୋଲି । ପାଣି ପିଉଥିବାବେଳେ ଝରଣାରେ ନିଜର ପ୍ରତିବିମ୍ବ ଦେଖି ମୁଁ ନିଜକୁ ନିଜେ ଚିହ୍ନିପାରିଲିନି, ମହାଭାଗ !

ତାହେଲେ କ'ଣ ହେଲା ? ଯୁବରାଜ ପଚାରିଲେ ।

ଲୋକଟି କହିଲା---ନୂଆ ଭାବେ ପାଇଥିବା ମୋର ଏହି ରୂପକୁ ମାଦକଭରା ଯୌବନର ପୁଟ ଦେଇ ମୋତେ ଦେଖିବାକୁ କିଏ ଅଛି, ମହାଶୟ ? ଆପଣ ଯଦି ବିବାହିତ ହୋଇଥାନ୍ତି ନିଜ ପତ୍ନୀକୁ ମୋତେ ସମର୍ପିଦେଲେ କେମିତି ହୁଅନ୍ତା ?

ଯୁବରାଜଙ୍କ 'ଫିଲୋସଫି' ପାଣି ଫାଟିଗଲା । ତାଙ୍କ ମୁଣ୍ଡ ଉପରେ ଆକାଶଟା କ ଆଉ ଛିଣ୍ଡି ନପଡ଼େ ! ସେ ଦେଖିଲେ, ତଥାପି ବି ତାଙ୍କ ହାତରେ ଘୋଡ଼ା-କୋରଡ଼ାଟା ରହିଯାଇଛି । ଅଣନିଃଶ୍ୱାସୀ ହେବା ପର୍ଯ୍ୟନ୍ତ ତହିଁରେ ସେ ଲୋକଟିକୁ ପିଟି ଚାଲିଲେ । ତା ଦେହରେ ନୋଳା ଫାଟି ରାଜକୀୟ ପୋଷାକ ଭିତରୁ ରକ୍ତ ଜକେଇ ଆସିଲା । ତଥାପି ଲୋକଟି କାନ୍ଦୁ ନଥାଏ; ମାତ୍ର ଚିତ୍କାର କରୁଥାଏ—ମହାଶୟ, ଶାନ୍ତ ହୋଇଗଲି ।

ପରଶେଷରେ ଭିକାରୀ ଜାଣିଲା ସେ ଦୟାଳୁ ଯୁବକ ସେହି ରାଜ୍ୟର ଯୁବରାଜ । ସେ କହିଲା—ହଜୁର, ଅକସ୍ମାତ୍ ସାକ୍ଷାତରେ ଯାହା ଆଶା କରି ନଥିଲି ତାହା ମିଳିଯାଇଥିବା ଯୋଗୁଁ ମନ ମୋର ପକ୍ଷୀରାଜ

ଚଢ଼ିଗଲା । ଆପଣ ଦାତାପଣରେ ସୁନାମ ଅର୍ଜନ କରୁଥିଲେ, ହେଲେ ମୋ ମନର କଣ୍ଟ ବଢ଼ିବଢ଼ି ଚାଲିଥିଲା । କୋଉଠି ହେଲେ ତାହାର ନିବାରଣ ହେବା ଉଚିତ ଥିଲା, ଯାହା ବର୍ତ୍ତମାନ ଆପଣ କରୁଛନ୍ତି । ମୋ ଆଶାର 'ମାର୍ଜିନ' ମୁଁ ଛୁଇଁ ସାରିଛି, ଆଉ ପିଟନ୍ତୁନି, ମହାରାଜ ।

ଆମ ଦେଶରେ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଗୁରୁତର ଅପଭ୍ରଂଶ ହେଉଥିବା ଯୋଗୁଁ ଏ ଲେଖକର ପ୍ରଚଣ୍ଡ ବିଶ୍ୱାସ ହେଉଛି ଯେ, ସଂଖ୍ୟା-ନ୍ୟୂନ ହେଲେ ମଧ୍ୟ, ଆସନ ମାଡ଼ି ବସିଥିବା ଅନେକ ଲୋକ କଣ୍ଟ ନିବାରଣ ନହେବା ପର୍ଯ୍ୟନ୍ତ ଅହେତୁକ ଭାବେ ଆଶାପ୍ରାର୍ଥୀ ହୋଇ ପଡ଼ିଛନ୍ତି । ନିବାରଣ ନିମନ୍ତେ ବି ଗଣତନ୍ତ୍ରର ଖଡ଼୍‌ଗରେ ଧାର ନାହିଁ । ରାଜନୈତିକ ପୃଷ୍ଠଭୂମିରେ ସନ୍ତୁଷ୍ଟ ବା ଅସନ୍ତୁଷ୍ଟ ବା ଶାସକ ବା ବିରୋଧୀ ବା 'ଲୁପ୍ତ ଚୁମ୍ବନ' ହୁଅନ୍ତୁ ଅଥବା, ଅନ୍ୟ କ୍ଷେତ୍ରରେ ଲୋଡ଼ିବା ପୂର୍ବରୁ ଅଭିପ୍ସା ପୂରଣ ହୋଇପାରୁଥିବା ସରକାରୀ ଅଫିସର ବା ଠିକାଦାର-ଦଲାଲ ହୁଅନ୍ତୁ, ସମସ୍ତେ ଆଜି ଆମ ଗଳ୍ପ ବର୍ଣ୍ଣିତ ଭିକ୍ଷାଣୀ ସାଜିବାକୁ ଗୌରବ ମଣୁଛନ୍ତି । ସେମାନଙ୍କ ଚେତନା ଉଦୟ ପାଇଁ ଏହି ବ୍ୟବସ୍ଥା ଭିତରେ କୌଣସି ଉପାୟ ବିଶ୍ୱାସର ସରହଦ ଛୁଉଁନାହିଁ ।

ଗୋଟିଏ ସର୍ବସମ୍ମତ ପ୍ରସ୍ତାବ ଯଦି ଗ୍ରହଣ କରାଯାଆନ୍ତା ତା' ହେଲେ କେମିତି ହୁଅନ୍ତା ପାଠକେ ବିଚାର କରନ୍ତୁ । ପ୍ରତ୍ୟେକ ଅଞ୍ଚଳରେ ଲୋକ ଅଦାଲତ (କ୍ଷମା ପ୍ରାର୍ଥନା ସହ—ଅଦାଲତ ଅର୍ଥରେ ନୁହେଁ) ମାନ ସୃଷ୍ଟି ହେଉ ଓ ଏପରି ଚିହ୍ନିତ ବ୍ୟକ୍ତିମାନଙ୍କ ନାଁ ତାଲିକା ସେହି ଅଞ୍ଚଳର ଛକ ଜାଗାରେ ଝୁଲାଇ ଦିଆଯାଉ । ଆମ ଦେଶରେ ଗଣତନ୍ତ୍ର ପ୍ରତିଷ୍ଠାର ଅଧିମାରମ୍ଭ ସମୟରେ ନେହେରୁ ଯେଉଁମାନଙ୍କୁ ବିଜୁଳିଖୁଣ୍ଟରେ ଝୁଲାଇ ଫାଶିଦେବେ ବୋଲି କଳ୍ପନା କରିଥିଲେ, ଉତ୍ତର ପୁରୁଷଙ୍କର ଏହି କାର୍ଯ୍ୟ-ଦ୍ୱାରା ହୁଏତ ତାଙ୍କ ଅମର ଆତ୍ମା ଆକାଶରେ ଥାଇ ଧୂକୁଧୂକୁ ହୋଇ ଟିକିଏ ଶାନ୍ତ ପାଆନ୍ତା ।



# ଅମୃତସ୍ୟ ପୁତ୍ରାଃ

ଗୃହଶାଳୀ, କେତେ କିସମ୍‌ର ନାମକରଣ ହୋଇସାରିଛି । ଆଉ ମୂଳ ନାଁ ନାହିଁ । କଲେଜଗୁଡ଼ିକ ମହାବିଦ୍ୟାଳୟ ହୋଇଯାଇଛି । ଅନ୍ତ-ମହାବିଦ୍ୟାଳୟମାନଙ୍କ ମର୍ଯ୍ୟାଦା ଓ ସମ୍ମାନର ଅଧିକାରୀ ହେବାପାଇଁ ଯାହାର ଦାବି, ଆମେ ତାହାକୁ ଗେହ୍ଲାରେ ବା ଖାତିରରେ ବା ସରକାରୀ ଆଦେଶାନୁଯାୟୀ କହିବାକୁ ଆରମ୍ଭ କଲୁଣି—ବିଶ୍ୱବିଦ୍ୟାଳୟ । ଦୁଃଖର କଥା, ସେଠାରେ ବିଶ୍ୱ-ଭାବନାର ସତ୍ତା ନାହିଁ ।

କୁହାଯାଉଥିଲା, ଇଂରେଜମାନେ କୁଆଡ଼େ କିରାଣି ଗଢ଼ିବା ପାଇଁ ଏହି କାରଖାନା (!) ମାନ ସ୍ଥାପନ କରିଥିଲେ । ପରାଧୀନତାକୁ ପ୍ରଶଂସା ନ କରି ଏତିକି କୁହାଯାଇପାରେ—ଯାହାହେଉ ସେମାନେ ତ ଯୋଜନା କରି କିଛି ହେଲେ ଗଢ଼ୁଥିଲେ କିନ୍ତୁ ଏବେ ଆମେ କ'ଣ ଗଢ଼ୁଛୁ ସେକଥା ଖୋଦ୍ କାରିଗରମାନେ ବି ଜାଣନ୍ତିନି । କେବଳ ସ୍ୱାଧୀନୋତ୍ତର ଯୁଗରେ ଏହି ଯେଉଁ ପରିବର୍ତ୍ତନଶୀଳ ପ୍ରକ୍ରିୟା (Metamorphosis) ଆରମ୍ଭ ହୋଇଛି, ତାହା କେବେ ଯେ ଶେଷ ହେବ ଜଣାପଡ଼ୁନାହିଁ । ଭାରତୀୟ ଚରିତ୍ର ସମଷ୍ଟିଗତ ଭାବେ ଏକ ଛଳନାର ଚରିତ୍ର । ଇଂରାଜୀ ଉପରୁ ଗୁରୁତ୍ୱ ହ୍ରାସ କରିଯିବ ବୋଲି ଗୃଳିଶ ବର୍ଷ ଧରି ଘୋଷଣା କରି କରି, ସେହି କାଳଠାରୁ ଆଜି ପର୍ଯ୍ୟନ୍ତ ସବୁପିଲାଙ୍କ ମୁଣ୍ଡରେ ଏହି ପଢାଆରି ପୂରାଇ, ସମସ୍ତଙ୍କ ପାଇଁ ଜ୍ଞାନ ଆହରଣର ସୀମାକୁ ସଙ୍କୁଚିତ କରି, ଆମେ କେଇଟା ଥିଲାବାଲା କନ୍‌ଭେଣ୍ଟ୍‌ରେ ପଢ଼ି ନିଭୁ'ଲ ଢଙ୍ଗ ସହକାରେ ନିଜ ପିଲାଙ୍କୁ ବି ପଢ଼େଇ ଦେଲୁ । କୌଶଳୀମାନେ କୁର୍ସି ଆବୋରେଇ ଦେଇଛୁ । ବାକି ଯେତେ ରହିଲେ, ହାଉଆ ଖାଉଥା' । ଆମ ମନର ଗୋପନ ଯୁକ୍ତି ଆମକୁ ବୁଝାଉଛି : ଏକଥା ସିଦ୍ଧ କରି ନ ଯାଇଥା'ନ୍ତା ତା'ହେଲେ ଆମର ସେବା କରିବାକୁ ରହିଥାନ୍ତେ କେଉଁମାନେ ? ପ୍ରାଚୀନ ବର୍ଣ୍ଣାଶ୍ରମର

ମଧୁ-ସତ୍ତ୍ୱକୁ ଆମେ କ'ଣ ନିଜ ହାତରେ ଧୂଳିସାତ୍ କରିଦେଇଥାନ୍ତୁ ? ମାତ୍ର ଯୋଜନାର ବ୍ଲୁ ପ୍ରିଣ୍ଟ୍ ଓ ଭାଷଣ ଭିନ୍ନ । କେହି ଠଉରେଇବାର ଶୂନ୍ୟ ନାହିଁ !

ଶାସନର ସର୍ବମୟ ଭୂମିକାଯୋଗୁଁ ନୂତନଭାବେ ସ୍ୱାଧୀନ ହେଉଥିବା ସମସ୍ତ ଦେଶ ଯେପରି ସ୍ୱପ୍ନକୁ ରୂପାୟିତ କରାଇବା ପାଇଁ ପ୍ରଥମ ପ୍ରଥମ ଚିନ୍ତାର ମରୁଡ଼ିରେ ଜଡ଼ସଡ଼ ଯାଆନ୍ତି, ଧଇଁନିଆଁଯାଉ ଆମର ବାଲ୍ୟାବସ୍ଥା ବି ସେଇଆ ହେଲା । କିନ୍ତୁ ଏ ପର୍ଯ୍ୟନ୍ତ ସେ ଗହ୍ୱରରୁ ଉଠିପାରୁନୁ କାହିଁକି ? ବରଂ ଅନେକ ପାଗଳ-ଚେଷ୍ଟାକୁ ନିରୀକ୍ଷାର ନାମଦେଇ ପ୍ରକମ୍ପନ ସହକାରେ ଭୂଇଁ ଧସେଇ ଜ୍ୟାମିତିକ ସୂତ୍ରରେ କୂଳାଙ୍ଗାର ସଂଖ୍ୟା ବଢ଼ାଇବା ପାଇଁ ଓଭର୍‌ଟାଇମ୍ କରି ଚାଲିଛୁ । ଯେତେବେଳେ ଦେଖାଯାଉ, ଶିକ୍ଷାଯୂତନ ପାଇଁ ନୂଆ ନୂଆ ଖସଡ଼ା, ନୂଆ ସୂତ୍ର । ମାତ୍ର ପୁଣି ଏକ ନୂଆ ନିର୍ବାଗୃହ !

ଥରେ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ବେଶ୍ ମାମଲତକାର ଭାବେ ପରିଚିତି ହାସଲ କରିଥିବା ଭଦ୍ରବ୍ୟକ୍ତିଙ୍କ ସହିତ ଏ ଲେଖକର ସାକ୍ଷାତ ହୁଏ । କଥୋପକଥନ ସମୟରେ ଅସତର୍କ ଭାବେ ସେ କହିଲେ : ଯାହାହେଉ, ଏଥର ଆମ 'ଫାକଲ୍‌ଟି'ରେ ଗୁଡାଏ ପ୍ରଫେସର, ରିଡ଼ର୍ ପୋଷ୍ଟ ସୃଷ୍ଟି ହୋଇଗଲା । ଅନେକ ପ୍ରଶ୍ନୋତ୍ତର ପରେ ଗୋଟିଏ ରହସ୍ୟ ଜାଣିବାକୁ ମିଳିଲା । ତାହା ହେଲା, ଯେଉଁ 'ସବ୍‌ଜେକ୍ଟ'ର ବ୍ୟକ୍ତି କୁଆଡ଼େ ଡ. ପି. ଆଇ ହୁଅନ୍ତି, ସେ ସରକାରଙ୍କୁ ପଟାପଟି କରି ସେହି 'ସବ୍‌ଜେକ୍ଟ'ରେ ଗୁଡ଼ାଏ ଏପରି ପଦବୀ ସୃଷ୍ଟି କରିପକାନ୍ତି । ମୁଁ ପଚାରିଲି, "ଆଜ୍ଞା, ଏମିତି ତ ଅନେକ 'ସବ୍‌ଜେକ୍ଟ' ଥିବ ଯେଉଁଥିରୁ କଦାପି କେହି ଡ.ପି. ଆଇ. ହୋଇ ନଥିବେ ? ସେହି ବିଭାଗରେ ଚାକିରି କରିଥିବା ଶିକ୍ଷକମାନଙ୍କ ଭାଗ୍ୟ କ'ଣ ? ଆପଣମାନଙ୍କ ଭିତରୁ ବେଶି ଯଦି ପ୍ରଫେସର, ରିଡ଼ର୍ ହୋଇଯା'ନ୍ତି ତାହେଲେ ପିଲାଙ୍କ ପାଠପଢ଼ାରେ କିଛି ଉନ୍ନତି ହୁଏ କି ?"

ଉପରର ସବୁ ପ୍ରଶ୍ନ ପାଇଁ ମହାଶୟଙ୍କର ଉତ୍ତର ଥିଲା : ଡାମ୍— ବ୍ଲଡ଼, ହୁ କେୟାର୍ସ ! ସେ ସବୁକଥା ବୁଝିବାକୁ ସବୁ ସମୟରେ ନିର୍ବାଚିତ ସରକାରଟିଏ ଥାଏ ।

ଗତ ବର୍ଷ କୌଣସି ଏକ ବିଶ୍ୱବିଦ୍ୟାଳୟ 'ଯୁକ୍ତ ତିନ' ଶ୍ରେଣୀର ପ୍ରଥମ ବର୍ଷ ପରୀକ୍ଷା ପାଇଁ ପିଲାଙ୍କଠାରୁ ମାଲ୍‌ମସଲା ଆଦାୟ କରିସାରି ପରୀକ୍ଷା କଲାନାହିଁ। କଲେଜଗୁଡ଼ିକୁ ନିର୍ଦ୍ଦେଶ ଦିଆଗଲା, ନିଜ ବାର୍ଷିକ ଫଳ ଅନୁସାରୀ ପିଲାମାନଙ୍କୁ ଉପର ଶ୍ରେଣୀକୁ ଉତ୍ତୀର୍ଣ୍ଣ କରିଦିଅ। କାରଣ ନୂଆଗୋରୁଙ୍କୁ ସ୍ଥାନ ଦେବା ପାଇଁ ଗୁହାଳ ଖାଲି ହେବା ଆବଶ୍ୟକ। ତାହା ହେଲା। ଏବେ ପୁଣି ସେହି ବିଶ୍ୱବିଦ୍ୟାଳୟ ନୂଆ ନିର୍ଦ୍ଦେଶ ପଠାଇଛି—ଆମେ ଦ୍ୱିବର୍ଷର ପରୀକ୍ଷା ଏଇ ବର୍ଷ ଏକାଥରେ କରିବୁ। ପିଲାଏ ଆନ୍ଦୋଳନ ଆରମ୍ଭ କଲେଣି। ସେମାନଙ୍କ ଯୁକ୍ତି ହେଲା, ଆମେ ତ ସେ ପାଠ ଭୁଲି ସାରିଲୁଣି। ତୁମ ମନରେ ଯଦି ଏତେ କଥା ଥିଲା ତା'ହେଲେ ଯୋଡ଼ ପରୀକ୍ଷା, ସେଇଠି ତାକୁ ନକଲ କାହିଁ? ଆମେ ଦ୍ୱିବର୍ଷର ପାଠ ଗୋଟାଏ ବର୍ଷରେ ପଢ଼ି ପରୀକ୍ଷା ଦେବୁ କେମିତି?

ବିଶ୍ୱବିଦ୍ୟାଳୟବାଲାଏ କହୁଛନ୍ତି—ତୁମେ ପଢ଼ିଥିବା ପାଠ ଭୁଲୁଥିଲ କାହିଁକି?

ଆହା-ହା, ସଲିଡ୍ ଆର୍ଗୁମେଣ୍ଟ! ଅବଶ୍ୟ ସରସ୍ୱତୀଙ୍କ କଣ୍ଠ ଦେଇ ବର ନେଇ ଚାଲିଆସିଥିବା ଲୋକ ଥରେ ପଢ଼ିଥିବା ପାଠ ଜୀବନସାରା କେବେ ଭୁଲିବା ଉଚିତ ନୁହେଁ। ମାତ୍ର ଯେଉଁ ପଣ୍ଡିତ ମହାଶୟମାନେ ଏହି ଯୁକ୍ତି ବାଢ଼ୁଛନ୍ତି, ସେମାନେ ଏବେ ସମାସ, ବିଭକ୍ତି ବା ଶୁଭଙ୍କରୀ ଆଦି ମନେରଖିଛନ୍ତି କି? କାହିଁକି, ସେମାନେ କ'ଣ ସପ୍ତମ, ଅଷ୍ଟମ ଶ୍ରେଣୀରେ ଏହି ପାଠସବୁ ପଢ଼ି ନଥିଲେ କି?

କଥା ଏଠି ନୁହେଁ। ସମସ୍ୟା ସୃଷ୍ଟି କରି ତହିଁରୁ ଆଡ଼େଇଯିବା ପାଇଁ ଯେତେ ବିଚକ୍ଷଣ କୌଶଳ ଜଣେ ମଗଜରୁ କାଢ଼ିପାରିବ, ତାହାହିଁ ହେବ ତା' ପାଇଁ ପ୍ରଶାସକର 'ଫିଟିଂ ଟେଷ୍ଟିମୋନିଆଲ୍'! ଅନ୍ୟ ଦିଗରେ କିମିତି ଖେଳରୁ ମହାଭାରତ ଯେ ସୃଷ୍ଟି ନ ହେବ, ଏହି ପ୍ରତିଶ୍ରୁତି କାହାଠାରୁ କିଏ ନେଇପାରିବ ବା କାହାକୁ କିଏ ଦେବ?

Square peg in a round hole—ଏହା ଏକ ଇଂରାଜୀ ରୂଢ଼ି। ଏହି କଥାକୁ ସ୍ମରଣ କରି ଗଡ଼ଜାତ ଶାସନର ଗୋଟିଏ ଗପ ମନେପଡ଼ୁଛି :

ମ୍ୟାଲେରିଆ ସେ ଯୁଗରେ ଗୋଟିଏ ମାରାତ୍ମକ ରୋଗ ଥାଏ । ଥରେ କୌଣସି ଷ୍ଟେଟ୍‌ର ଏସ୍. ପି. ଦରବାର ହଲ୍‌ରେ ରାଜାଙ୍କୁ ସାକ୍ଷାତ କରିବାକୁ ଯାଇଥା'ନ୍ତି । ଦେଖିଲେ ମହିମା ବିମର୍ଷ ବଦନରେ ବସିଛନ୍ତି । ସାହସ କରି ପଚାରିଲେ, "ହଜୁରଙ୍କ ମନ କାହିଁକି ଆଜି ଉଣା ?"

: ଜେମାଙ୍କୁ ଜ୍ୱର ।

: ଆହା, ଅଲଅଲ ସୁକୁମାରୀ କ କ୍ଳେଶ ପାଉନଥିବେ ଟି !

କଥାବାର୍ତ୍ତା ଜରିଆରେ ଲକ୍ଷଣ ବୁଝିନେଇ ଏସ୍.ପି. ସାହେବ ଅନୁମାନ କରିଦେଲେ, ତାହା ମ୍ୟାଲେରିଆ । କଥା କ'ଣ କି, ଷ୍ଟେଟର ସିଭିଲ୍ ସର୍ଜନ ଜେମାଙ୍କର ଚିକିତ୍ସା କରୁଥା'ନ୍ତି ଯେ, ହେଲେ ଧୀରେ ଧୀରେ ଅନେକ ସତର୍କତା ସହକାରେ ଚିକିତ୍ସା କରୁଥା'ନ୍ତି । ଯେତେ ହେଲେ ରାଜକନ୍ୟାଟି !

ଏସ୍.ପି. ସେଇଠୁ ତୁରନ୍ତ ବାହାରିଯାଇ କିଛି କୁଇନାଇନ୍ ବଟିକା ଆଣି ରାଣୀହଂସପୁର ଭିତରକୁ ପଠାଇଦେଲେ—ସକାଳେ, ଖିରାବେଳେ, ରାତିରେ ପାନେ ପାନେ, ଏହି ପ୍ରକାର ନିର୍ଦ୍ଦେଶ ଦେଇ ।

ଦୁଇ ଦିନ ଖଣ୍ଡେ ପରେ ଏସ୍.ପି. ଯେତେବେଳେ ଆଉଥରେ ମହିମାଙ୍କ ସମ୍ମୁଖକୁ ଆସନ୍ତି, ମହାରାଜ ଅର୍ଡ଼ର କରିଦେଲେ : ତୁମେ 'ଉଇଥ୍ ଇମିଡ଼ିଏଟ୍ ଇଫେକ୍ଟ' ସିଭିଲ୍ ସର୍ଜନ ହୋଇଗଲ ଏବଂ ସିଭିଲ୍ ସର୍ଜନ୍‌ଙ୍କୁ ଆଉ କୋଉଠିକି ପଠାଇବା, ସେ ଏସ୍.ପି. ହୋଇ ଥା'ନ୍ତୁ ।

ଜେମାଙ୍କ ପରେ ଷ୍ଟେଟରେ ଅନ୍ୟ ରୋଗୀମାନେ କିପରି ଚିକିତ୍ସିତ ହୋଇଥିବେ ସେ କଥା ଆଦ୍ୟ-କାହାଣୀକାର ଆଉ କହିନାହାନ୍ତି ।



# ଅଭିମାନୀ ରାଧିକା

କେ ଅବା ଯମୁନାକୁ ଯାଉନାହିଁ ?
କେ ଅବା ନଟ-ନାଟେ ଗୃହୁଁ ନାହିଁ
କେ ଅବା ଗାଉନ ତା' ପୀରତି ଗୀତିକା
ଗୋ'
ତା' ଭିଆ କାହା ମନ ଦହୁନାହିଁ ?

ଗୋପାଳକୃଷ୍ଣ ପଦାବଳୀ ପର ଶୁଣାଯାଉଥିଲେ ମଧ୍ୟ, ତାହା ନୁହେଁ । ଶ୍ରୀରାଧାଙ୍କ ପ୍ରୀତି ବିଳାପ ନୁହେଁ । ସତେ ଯେମିତି ପ୍ରାଣ-ବଇଁଶୀରେ କେଉଁ ଏକ ବେସୁର ଅଭିମାନ ଝଙ୍କାରିତ ମୂର୍ଚ୍ଛନା ନେଇ ଛୁଟିଆସୁଛି । କହୁଛି : ହେ ପୃଥିବୀ, ତୁ ଏତେ ବିଗ୍ରହଶୂନ୍ୟ ? ଏତେ ପକ୍ଷପାତି ? ରାଧା କହିଲେ ବୋଲି କଥା ହୋଇଗଲା । କିଏ ନ କହିଥା'ନ୍ତା ? କହୋ, ଷୋହଳ ସହସ୍ର ଗୋପନାରୀ ଯାହା କରୁଥିଲେ, ରାଧା ସେଥିରୁ କିଛି ନିଆରା କାମ କରିଛନ୍ତି କି ? ରାଧାଙ୍କର କହିବା କଥା ହେଲା—ନା । ତା'ହେଲେ ଦୋଷରୁଣୀ ବୋଲି ଅପବାଦ ନାଗର ସାରା ଗୋପଦାଣ୍ଡରେ ଉଡ଼ଉଡ଼ ହୋଇ କାହିଁକି ବାଜିଲା ଯେ ? ରାଧା ବୋଲି ସିଏ ଖାଲି ସିନା ମନକଷ୍ଟରେ କଥାଟିକୁ 'ସିଲ୍' ମାରିଦେଲେ; ଆହୁରି ବି ଗୋଟିଏ କାରଣ ଥିଲା—ସେମାନଙ୍କ ପାରସ୍ପରିକ ପ୍ରେମ ଥିଲା ନିରବଚ୍ଛିନ୍ନ ଓ ପ୍ରେମିକ ଥିଲେ ଠାଣୁଆ । ନ ହେଲେ ଆମ-ଆପଣଙ୍କ କଥା ହୋଇଥିଲେ, ସୁଇସାଇଡ୍ କରିବା ଛଡ଼ା ବାଟ ମିଳି ନଥାନ୍ତା ।

ରାଧାକୃଷ୍ଣ ବିପ୍ରଲମ୍ଭ ଆମ ଆଲୋଚନାର ପର୍ଯ୍ୟାୟ ଭିତରକୁ ଆଦୌ ଆସିବା କଥା ନୁହେଁ । ଆସୁ ଆସୁ ଆସିଗଲା ଏଇଥିପାଇଁ ଯେ ସମ୍ଭୋଗ ଓ ପୀରତିକୁ ଅଲଗା ଅଲଗା ରଖିବା ଯାହା, ସ୍ୱୈର ଧରିବା ବିଭାଗରେ ସ୍ୱୀକାର କରି ନିଜେ ସ୍ୱୈର ନ କରିବା ତା'ଠୁଁ ବରଂ ସୁବିଧା । କଥା ହେଲା, ରାଧା ଅଭିମାନ କଲେ—ଆରେ ବାଡ଼ିପଶା ଦଳ, ମୋତେ କିଆଁ ଏକୁଟିଆ କନ୍ଦଉଛ ?

ଯେଉଁ ପାଠକ ଭୁବନେଶ୍ୱରର ବଡ଼ଗଡ଼ ଥାନା ଦେଖିଥିବେ ସେମାନେ ନିଶ୍ଚୟ ସମ୍ମୁଖ ପାଚେରିଟି ଗେଟ୍ ପାଖାପାଖି ଭାଙ୍ଗି ଥିବାର ଲକ୍ଷ୍ୟ କରିଥିବେ । 'କମ୍ବଦନ୍ତୀ' ଶୁଣାଯାଏ, ପୂର୍ବକାଳର ଜଣେ ଏସ୍.ପି. ରାତିଅଧରେ ଟିକିଏ ଉଚ୍ଚ ମିଜାଜ୍‌ରେ ଥାଇ ଥାନାକୁ ପାନ୍ଥନିବାସ ଭାବି ନିଜେ ଚଳାଉଥିବା ଜିପ୍‌ଟିକୁ ଏମିତି ଭୁଲେଇ ଦେଲେ ଯେ, ଏସ୍.ପି.ଙ୍କ ପ୍ରତାପ ପାଖରେ ସାମାନ୍ୟ ପଥର ପାଚେରିର ତାକତ୍ କେତେ, ଭାଙ୍ଗି ହୋଇ ପଡ଼ିଲା । ଏଇ ଯେଉଁ ମୁଖଶାଳା, ତାହାର ମନ୍ଦିରରେ ହାଲି ହାଲି ମିଳିବୁ ଜନାକାଣ୍ଡର ପୋଥିଟିଏ ତ ? ଏତେ ଆଲୋଡ଼ନ କାହିଁକି ହେଉଛୁ ? ଯିଏ ଯେମିତି ଇଚ୍ଛା ସେମିତି ଯୋଡ଼ାଯୋଡ଼ି କରି କଥାଟିକୁ ବଖାଣି ବସୁଛନ୍ତି, ଫଉଲାଉଛନ୍ତି । ପ୍ରସଙ୍ଗକ୍ରମେ, ରାଧାଙ୍କ ଅଭିମାନଟି ତ ଏଇଠି ।

ବାତ୍ସ୍ୟାୟନ ତାଙ୍କ କାମସୂତ୍ରରେ ଦର୍ଶନ, ଭାବ, ପ୍ରୀତି, ସମ୍ଭୋଗର ଗୋଟିଏ କ୍ରମବର୍ଦ୍ଧମାନ ସଂଯୁକ୍ତ ରେଖା (sequence)ର ବର୍ଣ୍ଣନା କରିଛନ୍ତି । ମଣ୍ଡଳ୍ ପ୍ରେମ ପାଇଁ, କୌଣସି ଗୋଟିଏକୁ ବାଦ୍ ଦେଇଦେଲେ ବାକିସବୁ ନିରର୍ଥକ ହୋଇଯାଏ । ବିବାହର ପରିଣତି ସମ୍ଭୋଗ ହୋଇପାରେ, ମାତ୍ର ସବୁ ସମ୍ଭୋଗ ବିବାହ ଯୋଗୁ କେବଳ ହୁଏନା, ସବୁ ପ୍ରେମ ବିବାହ ପାଇଁ ପଥ ସୁଗମ କରିପାରେନା ବା ସବୁ ଭାବ ପ୍ରେମରୂପକ ମଖମଲି ଦାନା ବାନ୍ଧିପାରେନା । ବୋଧହୁଏ ସେଇଥିପାଇଁ ଇଂରାଜୀ ଭାଷାରେ ଅଲଗା ଅଲଗା ଭାବେ ପ୍ରେମର ଠାକୁର କ୍ୟୁପିଡ଼୍ (Cupid), ଠାକୁରାଣୀଙ୍କ ନାଁ ଭେନସ୍ (Venus) । ମାତ୍ର ବିବାହ ପାଇଁ ସର୍ବମୋଟ ଗୋଟିଏ ଠାକୁର ହାଇମେନ୍ (Hymen) । ଏ ଠାକୁର ଠାକୁରାଣୀ ମାମଲାରେ ଭାରତୀୟ ଫର୍ମୁଲ ଭାରି ସହଜ : କନ୍ଦର୍ପ । ନୟମାନୁଯାୟୀ କେହି ଦେଖିପାରିବେନି, କେହି ଜାଣିପାରିବେନି, ଗୁମର ଗୁମରରେ କଥା ଶେଷ ।

ହଁ, ଗୋଟିଏ କଥା ନିହାତି କହିବା ଉଚିତ । ତାହା ହେଲା— ଯୁଗ । ଅର୍ଥାତ୍, ପରିବର୍ତ୍ତିତ ସମୟକୁ ନେଇ ମଣିଷର ପରିବର୍ତ୍ତିତ ଆଚରଣ । ଆଜି କିଏ ଏତେ ନିକମା ହୋଇ ବସିରହିଛି ଯେ, ଧୀରେ ଧୀରେ କେଳାଙ୍କ ପରି ନିଃଶ୍ୱାସ ବନ୍ଦ କରି ନଳି ଯୋଖି ଯୋଖି ଶେଷ

ଅଠାକାଠିଟିକୁ କୋଉ ଦୂର ଡାଳରେ ବସିଥିବା ଚଢ଼େଇର ପରରେ ଲଗାଇ ତାକୁ ନିଜ ଅକ୍ତିଆରକୁ ନେଇ ଆସିବ ? କୋଉ ଗ୍ୟାରେଣ୍ଟି ଅଛି ଯେ, ଚଢ଼େଇ କେତେବେଳେ ଫୁର୍ ନ କରିଦେବ ? ତେଣୁ ସମୟର ଦାବି ହେଲା, 'ପ୍ରସିଜ୍ୟୁରାଲ୍ ଡଲେ' ଛାଡ଼ ସବୁ 'କୁଇକ୍ ସର୍ଭିସ୍' । ତେଣୁ, ବାତ୍ୟାୟନ 'ଆଉଟ୍‌ଡେଟେଡ୍' ।

କୁହାଯାଏ, ନେଇଆଣି ଥୋଇ ଜାଣିଲେ ଚୋରର ବିଦ୍ୟା ଭଲ । ସେତିକ ନୁହେଁ, ନେଇ ଆଣି ଥୋଇ ଜାଣିଲେ ଯେ କୌଣସି ବିଦ୍ୟା ଭଲ । ଏପରିକି, ଜନାକାଶ ବିଦ୍ୟା ବି । ଲେଖକ ରହୁଥିବା ସହରରେ ଗୋଟିଏ ଅର୍ଦ୍ଧ ସରକାରୀ ଭବନ ଅଛି ଯାହାକୁ ଖାସ୍ ରଖାଯାଇଛି କେତେକ ଅସଭ୍ୟ ମଉଜ ପାଇଁ । ସେଠାରେ ବ୍ଲୁ ଫିଲ୍ମ୍, ବିନା ଲାଇସେନ୍‌ସ ମଦ, ବଡ଼ ବଡ଼ ମୁକୁଟ ଥିବା ସରକାରୀ ବେସରକାରୀ ହାକମ, ଗୁକିରି କରୁଥିବା ଜଣେ ଦୁଇଜଣ ଯୁବତୀ ବିଧବାଙ୍କ ସମେତ କେତେକ ଦୁର୍ନାମଗ୍ରସ୍ତ 'ସୋସାଇଟି ଉଇମେନ୍'ଙ୍କର ସମାହାର—ଦ୍ଵିଗୁ ସପ୍ତାହରେ ଅନ୍ତତଃ ଥରେ ଦ'ଥର ସଙ୍ଗଠିତ ହୁଏ । କୈବଲ୍ୟ ଛୁଇଁ କହିଲେ ମଧ ସେଠାରେ ଯେ ସେହି ଅବସରରେ କୃଷ୍ଣକୀର୍ତ୍ତନ ହେଉଥିବ, ଏକଥା କେହି ବିଶ୍ୱାସ କରିବେ ନାହିଁ । ତଥାପି କୁଆଁଟିଏ ବି ବୁନାହିଁ ତ । ତା' ମାନେ, ନେଇ ଆଣି ଥୋଇପାରିବା କୌଶଳ କର୍ତ୍ତାମାନଙ୍କୁ ଜଣା ।

ଦରଦର ନାଁ ନେଇ ସୁନ୍ଦରୀ ଯୁବତୀମାନଙ୍କୁ ଏନ୍. ଏମ୍. ଆର୍. ଗୁକିରିରେ ରଖିବା ଏବଂ ସେମାନଙ୍କ ଅସହାୟପଣିଆକୁ କେତେକ କ୍ଷେତ୍ରରେ ଯେପରି କୁତ୍ସିତ ଭାବେ ବ୍ୟବହାର କରାଯାଉଛି, ତାହା ବିରୁଦ୍ଧରେ ପ୍ରତିବାଦ କରିବାର ଉପାୟ ନାହିଁ । ଗୋଟାଏ ପଟେ ଭୋକ, ଅନ୍ୟ ପଟରେ ଭୋଗର ଲାଳସା ଓ ମର୍ଯ୍ୟାଦା ହେଲା ନିଃଶବ୍ଦ, ଗୁଞ୍ଜରଣଶୂନ୍ୟ ବ୍ୟବସ୍ଥା । ଅଟଙ୍ଗ ଲାଗୁଥିବା ଗୋଟିଏ ଘଟଣା । ବହୁ ବର୍ଷ ତଳେ ବାଲେଶ୍ୱର ଜିଲ୍ଲାର କୌଣସି ଏକ ଡାକ-ବଙ୍ଗଳାରେ ଅଗତ୍ୟା ବାଧ୍ୟ ହୋଇ ରାତି କଟାଇବାକୁ ପଡ଼ିଥିଲା । ଥକିଯାଇଥିବା ଯୋଗୁ ଚଟ୍‌କରି ନିଦ ଲାଗିଗଲା । ରାତି ଅଧା ହେବଣି,

ବାହାରୁ କବାଟ ବାଡ଼େଇବା ଶବ୍ଦ ହେଲା । ଖୋଲି ଦେଖିଲା ବେଳକୁ ଜଣେ ସୁଦର୍ଶନ ସମ୍ଭ୍ରାନ୍ତ ଭଦ୍ରମହିଳା । ତାଙ୍କର କ୍ରୋଧମିଶା ପ୍ରଶ୍ନ ଥିଲା— ଅମୁକ ବାବୁ କେଉଁ ଘରେ ଅଛନ୍ତି ? ଅମୁକବାବୁ କିଏ ବା ସେ କେଉଁ ଘରେ ରହିଥିବେ ତାହା ଜାଣିବା ଏ ଲେଖକ ପକ୍ଷେ ସମ୍ଭବ ନଥିଲା ।

ଡାକବଙ୍ଗଳାରେ କେଇଟା ବା ଘର । ହଠାତ୍ ନିଆଁ ଲାଗିଗଲା । ଅମୁକବାବୁ ଘର ଖୋଲି ଦେଖନ୍ତି ସାମ୍ନାରେ ନିଜର ଘରଣୀ । ଭିତରେ ଆଉ ଜଣେ ଯିଏ ଥିଲେ ତାଙ୍କୁ ପୂର୍ବରୁ ଦେଖି ଲେଖକ ଭାବିଥିଲା ସେଇ ବୋଧେ ସାହାବାଣୀ । କଥା ଓଲଟପାଲଟ । ପରେ ଶୁଣିବାକୁ ମିଳିଲା, ମୁଖ୍ୟ ଦରଜା କାହିଁକି ଖୋଲା ରଖିଥିଲା ସେଥିଯୋଗୁଁ ଚୌକିଦାରର ଚାକିରି ଯାଇଛି ।

All is fair in love and war—ଏହି ରୁଚି ଓ ପୂର୍ବରୁ ବର୍ଣ୍ଣିତ 'କୁଇକ୍ ସର୍ଭିସ୍'କୁ ଅନ୍ତରଙ୍ଗ ଭାବେ ଗ୍ରହଣ କରି ଜନାକାଙ୍କ୍ଷା କରିଥିବା ପୋଲିସ୍‌ବାବୁ ଜଣଙ୍କ ଯଦି ରାଜମହଲ ଛକରେ ମାଇକ୍ ଲଗାଇ କହନ୍ତି : ଆରେ ବାଡ଼ପଶା ଦଳ, ଉଦାହରଣ ଖୋଜିବ ଯଦି ଦେଖୁଥା ସାରି ବୁଲି । ଖାଲି ମୋତେ ନିନ୍ଦୁଛ କିଆଁରେ ? ଆଶା କରୁଛୁ, ସମସ୍ୟା ଅନେକ ସମାଧାନ ହୋଇଯାନ୍ତା ।



# 'ପାୱାର୍'

ଇଂରାଜୀ ଅଭିଧାନରେ ଏହି ବିଭ୍ରାନ୍ତିଜନକ ଶବ୍ଦଟିର ବହୁତ ଅର୍ଥ । ଯଥା—କ୍ଷମତା, ଦକ୍ଷତା, ଶକ୍ତି, ନିୟନ୍ତ୍ରଣ, ପ୍ରଭୁତ୍ୱ, ପୁନଃପୌନିକ ଗୁଣିତକ ଇତ୍ୟାଦି । ଇଏ ଗୋଟିଏ ଶବ୍ଦ, ନୂଆ ନୂଆ ଅର୍ଥ ଆହୁରି ଗ୍ରହଣ କରିଚାଲିଛି ସିନା ହେଲେ କିଛି ଛାଡ଼ୁନାହିଁ । ଇଏ ପୁଣି ଗୋଟିଏ ଶବ୍ଦ ପରିବ୍ୟାପ୍ତ ଢଙ୍ଗରେ କିପରି ଏତେ ଅର୍ଥ ଗ୍ରହଣ କରିପାରିଲା ତାହା ଯେତିକି ଅବୋଧ୍ୟ, ପ୍ରୟୋଗ କ୍ଷେତ୍ରରେ କେତେକର ଅର୍ଥ ଜନସାଧାରଣଙ୍କୁ ତତୋଽଧିକ ବିଭ୍ରାନ୍ତ କରି ପକାଉଥିବା ପ୍ରାୟ ସମସ୍ତଙ୍କ ଅଭିଜ୍ଞତା । ପାୱାର୍ ବୋଲି ଖାଲି ନାଁଟା ଶୁଣାଇ ଦିଅନ୍ତୁ, କିଏ 'ମାଏ-କା-ଲାଲ୍' ନ ଚମକିବ କୁହନ୍ତୁ ତ !

ନ୍ୟାଯ୍ୟ ହେଉ ବା ଅନ୍ୟାଯ୍ୟ ହେଉ, ଭୁଲ ହେଉ ବା ଠିକ୍ ହେଉ, ଯଦି କିଛି ହୋଇପାରୁଛି, ତାହେଲେ ଏହାର, ଅର୍ଥାତ୍ ପାୱାର୍‌ର, ଅସ୍ତିତ୍ୱ ମଧ୍ୟ ଉପଲବ୍ଧି କରି ହୁଏନାହିଁ । ଠିକ୍ ଯେମିତି ଗଞ୍ଜେଇ ଆଖଡ଼ାରେ କୃଷ୍ଣ-କୀର୍ତ୍ତନ । ଶୋଇପଡ଼ିଲେ ଚିନ୍ତା ନାହିଁ, ଗାଉଥିଲେ ଗାଉ ଥା' । କିରାଣି ଭାଇ ଫାଇଲ ଲୁଚେଇ, ହାକିମ କାମ ନ କରିବା ପାଇଁ ନିୟମର ବାହାନା ନେଇ, ପୋଲିସ୍‌ବାଲା ବାଡ଼ି ହଲେଇ, କୌଣସି କାରଣରୁ ଶିକ୍ଷକ ପରୀକ୍ଷା ଖାତାରେ ଅଧିକ ନମ୍ବର ଦେଇ, ରାଜନୀତି ଲୋକେ ଟାଉଟର କରି ହୋଇଯାଆନ୍ତି ପାୱାର୍‌ଫୁଲ୍ । ସେମାନେ ଯଦି ଠିକ୍ ଓଲଟା କାମ କରନ୍ତେ—ଯାହା କରିବା କଥା—ହଲପ୍ କରି କହୁଛି, କାହାର ପାୱାର ଜଣାପଡ଼ନ୍ତାନି ।

ପାୱାର ଭାରି ଅଭାବ ଚିଜ । ଝାଳ ଗମ୍. ଗମ୍ ହୋଇ ବହି-ଯାଉଥିବ, ଶୁଖିଲା ମୁହଁରେ ହନୁହାଡ଼ ଦେଖାଯିବଣି, ମାତ୍ର ଏହି ବିରଳ ପଦାର୍ଥଟି ମୋଟେ ରୁ ମିଳୁନଥିବ । ଏହା କେଉଁଠି ମିଳିବା ସମ୍ଭାବନା ସେ ବିଷୟରେ ଖାସ୍ ପ୍ରତ୍ନତାତ୍ତ୍ୱିକ, ଐତିହାସିକ ବା ବୈଜ୍ଞାନିକ ସୂଚନା ନ

ଥିବାରୁ ବାତୁଳପ୍ରାୟ ଖୋଜୁଥିବା ଲୋକଟି କୌଣସି ଜାଗାକୁ ହେଲା କରି ଛାଡ଼ିଯିବା ପରେ ଗରହସ୍ତିଆର କାମ କଦାପି କରିବ ନାହିଁ ।

ଆମେ ଏବେ ଦେଖୁଛୁ ଥୋକେ ଲୋକ ପାଓ୍ୱାର୍ ନାହିଁ, ପାଓ୍ୱାର୍ ନାହିଁ ବୋଲି କୁହାଟ ଛାଡ଼ୁଛନ୍ତି ଓ ସେମାନଙ୍କ ବକ୍ତବ୍ୟ ହେଲା, କୁଆଡ଼େ ଏଇଥିପାଇଁ ସବୁ ବିଭ୍ରାଟ ହୋଇଯାଉଛି । ଏଇ ଯେମିତି ପୋଲିସ୍‌ବାଲା, ଥାନା ଭିତରେ ଅାଖିତାଡ଼ ପାଉଛନ୍ତି, 'ରେପ୍'କରି ପାରୁଛନ୍ତି ମାତ୍ର ସେମାନଙ୍କୁ ଯଦି ପଚରାଯାଏ, ହଇ ହୋ ବାବୁ, ଅପରାଧୀ କାହିଁ ଦଣ୍ଡ ନ ପାଇଲା ? ତତ୍‌କ୍ଷଣାତ୍ ଉତ୍ତର ମିଳିବ, ଆମର ପାଓ୍ୱାର୍ ନାହିଁ । କୌଣସି ଇଞ୍ଜିନିୟରିଂ ସଂସ୍ଥାର ଜଣେ ବାବୁଙ୍କୁ ଦେଖନ୍ତୁ । ତାଙ୍କ ଛଟକରେ ଆଖି ଖୋସି ହୋଇଯିବ । ବଡ଼ ବଡ଼ ସହରରେ ନାମୀ-ବେନାମୀ କୋଠାବାଡ଼ି ତ ମାମୁଲି କଥା । ମାତ୍ର ତାଙ୍କୁ ଯଦି ପଚରାଯାଏ, ତୁମ ଦାୟିତ୍ୱରେ କଲଭର୍ଟଟା କାହିଁକି ଏପର୍ଯ୍ୟନ୍ତ ହୋଇପାରିଲାନି ? ବାର ରକମ ପେଖନା ସହ ସେହି ଗୋଟିଏ ଉତ୍ତର, ପାଓ୍ୱାର୍ ନାହିଁ । ଏମିତି ଯେତେ ଖୋଜିବେ ଉଦାହରଣ ସେତେ ମିଳିବ । ଆଶ୍ଚର୍ଯ୍ୟ ଲାଗୁଛି, ଏ ପାଓ୍ୱାର୍‌ଗୁଡ଼ାକ ସବୁ ଗଲା କୁଆଡ଼େ ?

ବିଶେଷତଃ ଆମ ଦେଶରେ ସ୍ୱାଧୀନତା ଲାଭ ପରଠାରୁ ଆଜି-ପର୍ଯ୍ୟନ୍ତ ଗୋଟାଏ ପ୍ରକାର ଉତ୍କଟ ଅବସ୍ଥା ସୃଷ୍ଟି ହୋଇଛି । ଅସ୍ଥିରୁ ମଜ୍ଜା ଶୋଷିବା ପରି ଯେଉଁମାନେ କ୍ଷମତାକୁ ବିଭିନ୍ନ ପ୍ରକାରଭେଦରେ ଶୁଖି ସାରିଛନ୍ତି, ସେଇମାନେ ଏକ ଗହନ ଅରଣ୍ୟରେ ବ୍ୟାଧ ସାଜି ଅଣ୍ଟାଳି ହେଉଛନ୍ତି; କ୍ଷମତା (ପାବାର୍) ରହିଲା କେଉଁଠି !

ପୋଲିସ୍ କହୁଛି ଆମକୁ 'ପାବାର୍' ଦିଅ, ଆମେ ସବୁ ସାବାଡ଼୍ କରିଦେବୁ । ପ୍ରଶାସକ ଦଳଙ୍କର ସେଇ ଇଚ୍ଛା କିନ୍ତୁ 'ସାବାଡ଼୍' ପରି କ୍ରୂର ଭାଷା ସେମାନେ ତୁଣ୍ଡରେ ଧରିବେନି । ରାଜନୈତିକ ଦଳଗୁଡ଼ିକ ଦେଶ-ଗଠନ ଓ ସେବାରେ ଏତେ ବ୍ୟସ୍ତ ରହୁଛନ୍ତି ଯେ 'ପାବାର୍'ର ଚିନ୍ତା ମୋଟେ ସେମାନଙ୍କ ମୁଣ୍ଡରେ ପଶୁନାହିଁ ।

ଜନଗଣନାବାଲାଏ ହିସାବ କରି ବାରମ୍ବାର କହୁଛନ୍ତି ଯେ ଦେଶରେ କୃଷକ ସଂଖ୍ୟା କୁଆଡ଼େ ୮୫ ଶତାଂଶ । ତେଣୁ ଥୋକେ ଲୋକ କହୁଛନ୍ତି 'ପାୱାର୍' ସେଇଠି ରହିଯାଇଛି । କିନ୍ତୁ ମକରଧ୍ୱଜ ଯେ ଅଶରିରୀ, ତାଙ୍କ ପୂଜାପାଠ ହେବ କେମିତି ? ସେମାନେ ଯଦି ଅକସ୍ମାତ୍ ଶରୀର ନେଇ ଉଭା ହୁଅନ୍ତି ତାହେଲେ 'ପାୱାର୍' ନିଜେ ନରଖି 'ବ୍ରୋକର୍' ମାନଙ୍କ ହାତକୁ ଅର୍ପିଦେବେ କାହିଁକି ? ସେମିତି ଆହୁରି ଥୋଡ଼ାଏ କହନ୍ତି, କ୍ଷମତା ଶ୍ରମିକଙ୍କ ହାତକୁ ଆସିବା ଉଚିତ । ଶ୍ରମିକର ସଂଜ୍ଞା ଏବେ ଆଉ ଉତ୍ପାଦନକାରୀ ବ୍ୟକ୍ତି ଅର୍ଥରେ ବ୍ୟବହୃତ ହେଉ ନାହିଁ । ଯିଏ, ଯେତେ ବଡ଼ ହେଉ, ଯଦି ବେତନ ଆକାରରେ ରୋଜଗାର କରୁଛି, ସିଏ ଶ୍ରମିକ ବୋଲି ନାମିତ ହେବାକୁ ଶ୍ରେୟ ମଣୁଛି । ସେମାନଙ୍କ ସଂଖ୍ୟା ୩ ଶତାଂଶ ବି ନୁହେଁ । କିନ୍ତୁ ପ୍ରବକ୍ତାମାନଙ୍କର ଦାବି ହେଲା ଯେ ଏଇମାନେ ହେଉଛନ୍ତି ସମାଜର 'କ୍ରିମ୍' । ତା' ମାନେ ଆରିଷ୍ଟଟଲଙ୍କ 'ଅଲିଗାର୍କି' Oligarchy ! 'ଗଣତନ୍ତ୍ର ଏକ ମରୁଭୂମି', ତହିଁରେ 'ଓଏସିସ୍' ।

ଯୁକ୍ତରାଷ୍ଟ୍ର ଆମେରିକାରେ ରାଜନୈତିକ ଦଳ ଗଠନ ଆହୁରି ହୋଇନଥାଏ । ଜର୍ଜ ଓ୍ୱାସିଂଟନ୍ ଏପରି ଦଳ ଗଠନକୁ faction ବୋଲି କହି ପ୍ରବଳ ବିରୋଧ କରୁଥା'ନ୍ତି । ସେହି ସମୟରେ ଡେମୋକ୍ରାଟିକ୍ ରିପବ୍ଲିକାନ୍ ପାର୍ଟିର ପ୍ରତିଷ୍ଠାତା ଥୋମାସ୍ ଜେଫର୍ସନ୍ ମୁକ୍ତଭାବରେ ୧୭୮୯ରେ ଘୋଷଣା କରିଥିଲେ : If I could not go to heaven but with a party, I would not go there at all. ଆଜି ଦୂର ଅତୀତକୁ ଚାହିଁ ଅନୁମାନ କରି ହେଉଛି ଯେ ଜେଫର୍ସନ୍ ମହୋଦୟ ହୁଏତ ସେତିକିବେଳୁ ଜାଣିଥିଲେ ଆଗାମୀକାଲି ଯେଉଁ ପୃଥିବୀଟି ଆସିବ ସେଇଠି କ୍ଷମତାଯାକ ସବୁ ପାର୍ଟି ପାଖରେ ରହିଯିବ । ତାହା ହାତୀ ପାର୍ଟି ହେଉ ବା ଘୋଡ଼ା ପାର୍ଟି ହେଉ ।

ଆଜି ଯେଉଁମାନେ ଧନ୍ଦାଳି ହେଉଛନ୍ତି 'ପାୱାର୍' ଏଠି ଥାଇପାରେ ବା ସେଠି ଥାଇପାରେ ବୋଲି ନିଜେ ସେ ସମର୍ଥକମାନଙ୍କୁ ଭୂଆଁ ବୁଲାଉଛନ୍ତି । ସେମାନେ ଅନ୍ୟ କିଛି ଆଶ୍ରୟ ସନ୍ଧାନ ନ ପାଇବା ପର୍ଯ୍ୟନ୍ତ ଗୋଟିଏ ଗୋଟିଏ ପାର୍ଟି କାହିଁକି ଖୋଜି ନେଉନାହାନ୍ତି ବୁଝିହେଉନି ।

ବାସ୍ତବରେ କାହାର ପାବାର ନାହିଁ ଏହି ବିଷୟରେ ସଠିକ୍ ଅନୁସନ୍ଧାନ କରିବା ପାଇଁ । ନିକଟରେ ଗୋଟିଏ ଅନୁସନ୍ଧାନୀ ଦଳ ସାରା ଦେଶ ଭ୍ରମଣ କଲେ, ତଥ୍ୟ ସଂଗ୍ରହ କଲେ ଓ ସବୁ କଥାକୁ ତନ୍ନତନ୍ନ କରି ବିଶ୍ଳେଷଣ କରିଗଲେ । ଏ ଯାବତ୍ ସର୍ବଶେଷ ସିଦ୍ଧାନ୍ତରେ ସେମାନେ ଉପନୀତ ହୋଇଛନ୍ତି ଯେ ପୃଥିବୀରେ (ଭାରତବର୍ଷ ଅର୍ଥରେ) ମାତ୍ର ଦୁଇଟି ଜିନଷର 'ପାବାର୍' ନାହିଁ । ଗୋଟିଏ ହେଲା—କୁର୍ସି, ଅନ୍ୟଟି—କରେନ୍ସି ନୋଟ !



# ନୀଳ ପାଣି ନାଲି ଫୁଲ

ସୈନ୍ୟ ବିଭାଗରେ ଡାକ୍ତରଥିବା ଜଣେ ବନ୍ଧୁ ଥରେ କହିଲେ, 'ଦୁଃଖ ଲାଗୁଛି, ସକାଳୁ ସଞ୍ଜଯାଏ କେତେ ବୁଢ଼ା ବଳଙ୍କୁ ଆମେ ସାଲୁଟ୍ ମାରୁଛୁ ।' ମୁଁ ପଚାରିଲି, 'ଆପଣଙ୍କୁ ଯଦି କଷ୍ଟ ହେଉଛି, ନ ମାରିଲେ କ୍ଷତି କ'ଣ ?' 'ଶୃଙ୍ଖଳା ରହିବନି', ତାଙ୍କ ଉତ୍ତର । ଆମ ଆଲୋଚନାର ମର୍ମ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ୧୯୭୩ଠାରୁ ୭୫ ପର୍ଯ୍ୟନ୍ତ ଭାରତରେ ଥିବା ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରଦୂତ ଡାନିଏଲ୍ ପେଟ୍ରିକ୍ ମଏନିହାନ୍‌ଙ୍କର ଯେଉଁ ବିବାଦମାନ ପୁସ୍ତକ ପାଇଁ ପରବର୍ତ୍ତୀ ଭାରତୀୟ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ କ୍ଷତିପୂରଣ ଦାବି କରି ମୋକଦ୍ଦମା କରିବା ବିଷୟ ବହୁଚର୍ଚ୍ଚିତ ହୋଇଥିଲା, ତାହାଁର ଗୋଟିଏ ଉକ୍ତି ମନେପଡ଼ୁଛି : Hell hath no fury like ego bruised (ଅହଂଭାବ ଆହତ ହେଲେ ଆଚରଣ ଯେମିତି ଭୟଙ୍କର ହୋଇଉଠେ ତାହା ତୁଳନାରେ ନରକ ବି ଏତେ ଭୟାନକ ନୁହେଁ । )

ଅହଂଭାବ କ'ଣ ତାହା ବ୍ୟାଖ୍ୟା କରିବାକୁ ଏ ଲେଖକର ଜ୍ଞାନ ନାହିଁ । ତଥାପି ଏତିକି ଭାବି ହେଉଛି, 'ମୁଁ' ବୋଲି ଚିନ୍ତାକରି ପାରୁଥିବା ପ୍ରାଣୀଟି ତା ଅଭିଳଷିତ ସଂସାରରୁ ଅନ୍ତତଃ ଦାବିକରେ ଯେ ଆଉ କେହି ତାର ପାର୍ଥିବ ବା ବୌଦ୍ଧିକ ଗୁରୁତ୍ୱ ହ୍ରାସ ହେବା ପରି କୌଣସି ଉଦ୍ୟମ ନ କରନ୍ତୁ । କାରଣ ତାର ମନ ଏତେ ଛନକା ଯେ ଏଇ ଡର ତାକୁ ବେଶି ଡରକାଇ ଦିଏ । ଅନ୍ୟୂନ ଏଇଠି ତିନୋଟି କଥାର ସଂଘାତ ଆସୁଛି । ଏକ—ତଥାକଥିତ ପ୍ରାଣୀର ଆକାଂକ୍ଷା । ଦୁଇ—ନିଜକୁ ନିଜପଦରେ ରଖିବା ପାଇଁ ସେ ପ୍ରୟୋଗ କରୁଥିବା ଅଧିକାର । ତିନି—ଯେଉଁ ସରହଦଠାରୁ ତାର ତରକିବାର ଆଶଙ୍କା ରହିଛି, ସେଥିପାଇଁ ତାର କର୍ତ୍ତବ୍ୟ ।

ଦୁଃଖର କଥା ସେଷଟି ନାହିଁ, ବା ଯଦି ଅଛି, ତାହା କେବଳ 'ସ୍ପେଶାଲ ଅକେଜନ୍'ର ଭାଷଣ ପାଇଁ ସଂରକ୍ଷିତ ।

କ୍ୱଚିତ୍ ଖବରକାଗଜରେ ବିତର୍କର ଝଡ଼ ଦେଖିବାକୁ ମିଳେ ଯେ ଆମ ସମ୍ବିଧାନରେ ଯେମିତି 'ଫଣ୍ଡାମେଣ୍ଟାଲ ରାଇଟ୍' କଥାଟି ପ୍ରାଞ୍ଜଳଭାବେ ନାଗରିକଙ୍କ ହାତକୁ ସମର୍ପି ଦିଆଯାଇଛି, ସେମିତି 'ଫଣ୍ଡାମେଣ୍ଟାଲ ଡିଉଟି' କଥା ସନ୍ନିବେଶିତ ନହେଲା କାହିଁକି ? ଏହାର କାରଣ ସମ୍ଭବତଃ ଓ ବୋଧହୁଏ ସତ୍ୟ ଏହା ଯେ କବଳ-ମୁକ୍ତ ହେବାପାଇଁ ଯୁଝୁଁଥିବା ଗୋଟାଏ ଜାତି ଯେତେବେଳେ ସଂଗ୍ରାମରେ ରତଥିଲା, ସେତିକବେଳେ ସମ୍ବିଧାନର ଗର୍ଭ ସଞ୍ଚାରିତ ସମୟ । ପରାଧୀନତା ବିରୁଦ୍ଧରେ ଜାଗରଣର ଅବଚେତନ ସ୍ୱର ନିଶ୍ଚୟ ଅଧିକାର ହେବା କଥା । ତାହାହିଁ କର୍ତ୍ତାମାନଙ୍କ ସମଗ୍ର ଭାବନାକୁ ଆଚ୍ଛାଦିତ କରିଥିବ । ସେମାନଙ୍କ ଉତ୍ତରପୁରୁଷ ଯେ କଦାପି କର୍ତ୍ତବ୍ୟ-ବିମୁଖ ଓ ବିଶୃଙ୍ଖଳିତ ହେବେ, ଏ ଆଶଙ୍କା ସେମାନେ ଆଦୌ କରିପାରି ନଥିବେ । ମାତ୍ର ସେହି ଆଶଙ୍କା ହିଁ ଆଜି ଭୂତ ସାଜି ଆମ ସାମ୍ନାରେ ଉଭା । ଯେମିତି ସାପ ଧରିଛି ଚୁଚୁନ୍ଦ୍ରାକୁ । ନା ଗିଳିପାରୁଛି, ନା ଛାଡ଼ିପାରୁଛି । ବିଶୃଙ୍ଖଳା ଯଦି ସାଧାରଣ ଆଇନର ଫୌଜଦାରୀ ଦଫା ଛୁଉଁଛି ତା'ହେଲେ, ଅସମର୍ଥତା ବା କ୍ଷମତାର ଅନେକ ଖିଅଡ଼ା ବାଟ ସତ୍ତ୍ୱେ, କିଛି ହେଲେ ବିଧାନ ଅଛି । ବାକି ସମଗ୍ର ବୃତ୍ତିଟି କାହାଲାଗି ବିଷ ବା ଆଉ କାହାଲାଗି ପୀୟୂଷ ଜାଣିହେଉ ନାହିଁ ।

କାହାରିକୁ କର୍ତ୍ତବ୍ୟ ବା ଦାୟିତ୍ୱ କଥା ପଚାରିଯାଉ, ପାଟିରୁ ପ୍ରଶ୍ନ ସରି ନଥିବ ଆପଣଙ୍କୁ 'ବାଇପାସ୍ ଲାଇନ୍' ଦେଖାଇ ଦିଆଯିବ । ଆମେ ଗୋଟିଏ ରାଷ୍ଟ୍ରାୟତ୍ତ କାରଖାନାର 'ଦୁର୍ନୀତି ନିବାରଣ' ବିଭାଗ କଥା ଜାଣୁ । ଥରେ ସେହି ବିଭାଗର ଜଣେ ଭଦ୍ରଲୋକଙ୍କୁ ପଚାରିଗଲା, 'ମହାଶୟ, ଆପଣଙ୍କ ଅତୀତ ଚାକିରିର ଅତ୍ୟନ୍ତ ଅସ୍ପଷ୍ଟତା (bad antecedent) ସତ୍ତ୍ୱେ, ଏ ବିଭାଗକୁ ଆପଣ କେମିତି ଆସିପାରିଲେ ?' ଚଟାପଟ୍ ଉତ୍ତର ମିଳିଲା, 'କାହିଁ, ମୁଁ ଅମୁକ ସାହାବଙ୍କ ଲୋକ ନୁହେଁ କି ?' ପୁନଶ୍ଚ, ସେଇ ବିଭାଗରେ ଥିବା ଅନ୍ୟ ବାବୁମାନଙ୍କର ଲହଡ଼ି-ଗଣା ପାଓ୍ୱାର ଓ ଅଗାଦ୍ ଉପାୟରେ ଅର୍ଥ ଉପାର୍ଜନ କରିବାର ଏକ ଲମ୍ବା ତାଲିକା ଯେ ବଖାଣି ବସିଲେ । ତା'ପରେ ତାଙ୍କ ପ୍ରଶ୍ନ ଥିଲା 'କୁହନ୍ତୁ, ମୁଁ ଅପେକ୍ଷାକୃତ ଭଲ କି ନା ?'

ହଁ, ଏହି ଅପେକ୍ଷାକୃତ ତୁଳନାର ବ୍ୟାଜୋକ୍ତି ଆଜି ଦେଶଟା ସାରା ବ୍ୟାପିସାରିଛି । ଫମ୍ପା ଢୋଲ ପିଟାଯାଉଛି ଘୋଷଣା କରିବା ପାଇଁ— ସ୍ୱାଙ୍କ ତୁଳନାରେ ମୁଁ କମ୍ ଖ୍ରେର ନୁହେଁ କି ? ଅଦୃଶ୍ୟ ଭାବେ, କାନମୋଡ଼ ଦ'ଉଇଡ଼ନ ପକେଇ ଯାହାକୁ ନିଜନିଜ ଦାୟିତ୍ୱ କଥା ପଚାରିଯାଆନ୍ତା, ସେମାନେ ଆଗତୁରା ବାଇପାସ୍ ରାସ୍ତା ଯୋଗାଡ଼କରି ଠିଆହୋଇ ରହିଛନ୍ତି । ପୁନଶ୍ଚ, ଅହଂଭାବର ବିହ୍ନ ବି ଏପରି କ୍ଷେତ୍ରରେ କମ୍ ନୁହେଁ । ସାମଗ୍ରିକ ପରିପ୍ରେକ୍ଷୀକୁ ବିଚାର କଲେ ଆଜି ଆଦୌ ଆଶ୍ଚର୍ଯ୍ୟ ଲାଗୁନାହିଁ ଯେ ଦାୟିତ୍ୱରେ ଅବହେଳା, ଦୁରୁପଯୋଗ ତଥାପି ମର୍ଦ୍ଦାନପଣ ପାଇଁ କ୍ଷେତ୍ର କେତେ ବିଶାଳ ଓ ସଦା ସ୍ୱାଗତକାମୀ ।

ପାଠକଙ୍କୁ ମୋଟେ ବୋର୍ କରିବନି ତେଣୁ ଗୋଟିଏ ଗପ କହୁଛି । ସହରର ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ସ୍ତ୍ରୀ ଅଳ୍ପ ବୟସରେ ମରିଯା'ନ୍ତି । ଶ୍ମଶାନରେ ବହୁଲୋକ ରୁଣ୍ଡ । ସେଇଠି ଗୋଟିଏ ଅଦ୍ଭୁତ ଦୃଶ୍ୟ ଦେଖାଗଲା । ଜଣେ ଲୋକ ଛାତି ଫଟାଇ କାନ୍ଦୁଥାଏ । ପାଗଳଙ୍କ ପରି ଗଡ଼ି ଯାଉଥାଏ । ଆତ୍ମୀୟସ୍ୱଜନଙ୍କଠାରୁ ବେଶି । ସମସ୍ତେ ପରସ୍ପରକୁ ଚୁହାଁଚୁହିଁ ହେଲେ । କାରଣ ଲୋକଟିର ପରିଚୟ ଆଦୌ ଜଣାପଡ଼ୁ ନଥାଏ । ଯିଏ ଯେତେ ବୁଝାଇଲେ ବି ତା କାନ୍ଦ ମୋଟେ ବନ୍ଦ ହେଉ ନଥାଏ । ଶେଷରେ ଖୋଦ ମୃତଦାର ସେହି ଲୋକଟି ନିକଟକୁ ଆସିଲେ । ତଥାପି, ଉଭୟ ପରସ୍ପରକୁ ଚିହ୍ନି ନଥାନ୍ତି । ବାବୁଙ୍କର ବହୁ ଆଶ୍ୱାସନା ପରେ ବିଳାପ କରୁଥିବା ଲୋକଟି କହିଲା, 'ଏବେ ଆଉ କହି କିଛି ଲାଭ ନାହିଁ । ପୃଥିବୀ ପୃଷ୍ଠକୁ ଖସି ଆସିଥିବା ମେଘ ଅସରା ଆଉ ବଉଦ ହୋଇପାରିବନି । ଶୁଣନ୍ତୁ, ଯିଏ ମରିଗଲା ସେ ଥିଲା ମୋର ପ୍ରେମିକା ।' ଟିକିଏ ବିଚଳିତ ନହୋଇ ବାବୁ ଉତ୍ତର ଦେଲେ, 'କିଛି ବ୍ୟସ୍ତ ହୁଅନ, ମୁଁ ତାଙ୍କର ସ୍ୱାମୀ ଓ ତୁମକୁ ଭରସା ଦେଉଛି, ଖୁବ୍ ନିକଟରେ ଆଉଥରେ ବାହାହେବି ।'

ପ୍ରେମିକର ପ୍ରତିକ୍ରିୟା କ'ଣ ହେଲା ବା ଗପଟି କେତେ ସତ ତାହା ଏ ଲେଖକକୁ ଜଣାନାହିଁ । ମାତ୍ର ଆମ ଆଲୋଚନାର ପରିପ୍ରେକ୍ଷୀରେ ଏତିକି କହିବାକୁ ଇଚ୍ଛା ହେଉଛି ଯେ ଦୁର୍ଗନ୍ଧ ଓ ଦାୟିତ୍ୱହୀନତାର 'ପ୍ରଭଞ୍ଜନ୍' ଯେମିତି ଆମ ପାଖରେ ସବୁବେଳେ 'ରେଡ଼ିଡ଼ି' !



# ଛଳନାର ସ୍ୱର

ମଣିଷର ଚରିତ୍ରକୁ ଯଦି ପ୍ରିଜ୍‌ମ୍ ଜରିଆରେ ଭାଗ ଭାଗ କରି ଦେଖାଯାଇ ପାରନ୍ତା ତାହେଲେ ଅନ୍ୟୂନ ଗୁଟିଏ କଥା ସେଥିରୁ ବାହାରି ଆସନ୍ତା । ଏକ : ଜଣେ ସତକୁ ସତ ନିଜେ କ'ଣ । ଦୁଇ : ଅଥଚ, ସେ ନିଜ ବିଷୟରେ ଭାବେ କ'ଣ । ତିନି : ଜଗତ ସାମ୍ନାରେ କିସମ୍ କିସମ୍‌ର ମୁଖା ପିନ୍ଧି ନିଜକୁ ପ୍ରତିଭାତ କରାଇବା ପାଇଁ ସେ କପରି କୌଶଳୀ ଆଚରଣମାନ ଅବଲମ୍ବନ କରେ ଓ ସର୍ବଶେଷରେ ସବୁକୁ ମିଶାଇ ତାକୁ ସଭିଏଁ କେମିତି ତଉଲନ୍ତି । 'ସଭିଏଁ' ଭିତରୁ ଯେ କୌଣସି ଜଣକ 'ସେ' ହୋଇପାରେ ।

ଲଣ୍ଡନର 'ଗାର୍ଡିଅନ୍' ସମ୍ବାଦପତ୍ରକୁ ଉଦ୍ଧାର କରି ଆମ-ଦେଶର କେତେକ ପତ୍ରପତ୍ରିକା ନିକଟରେ ଗୋଟିଏ ଚମକପ୍ରଦ ଘଟଣା ପ୍ରକାଶ କରିଛନ୍ତି । ତାହା ହେଲା, କୁଆଡ଼େ ପୂର୍ବତନ ଫରାସୀ ରାଷ୍ଟ୍ରପତି ଭ୍ୟାଲେରି ଗିସ୍କାର୍ଡ଼ ଡ଼ି' ଷ୍ଟେଙ୍ଗ ତାଙ୍କ ଶାସନକାଳ ଭିତରେ ନିଜ ଦେଶର ସତର ନିୟୁତ ମହିଳାଙ୍କୁ 'ପ୍ରେମ' କରିଛନ୍ତି । କି ଫ୍ୟାନ୍‌ଟାଷ୍ଟିକ୍ ! 'ଷୋ'ଳ ସହସ୍ର ଗୋପ ନାରୀ/ମୋତେ ବରିଲେ ତପକରି । ମୁଁ ତାଙ୍କ ପୂରାଇଲି ଆଶ/ସେ ମୋର ଭକତ ବିଶ୍ୱାସ'—ଆମ ଓଡ଼ିଆ ଚିନ୍ତାରି ଭାଗବତ ମାତବରୀପଣକୁ ବି ଏ ସମ୍ବାଦ ଟପିଗଲା । ଭାଗବତରେ ଏହି ଉକ୍ତିକୁ ଭାବ ରୂପେ ବ୍ୟାଖ୍ୟା କରାଯାଏ; ବୋଧହୁଏ ଦୈହିକ ରୂପେ ନୁହେଁ । ମାତ୍ର ଡି'ଷ୍ଟେଙ୍ଗ୍‌ଙ୍କ କ୍ଷେତ୍ରରେ ଯାହା କୁହାଯାଉଛି ତାହା ତାଙ୍କ ଆତ୍ମସ୍ୱୀକାରୋକ୍ତି । ପଢ଼ିପିବା କି ଆଉ !

Ia fille (girl) allons (let us go) ବା beaute du diable (that overpowering beauty for the sake of which men fling everything away)—(ବନ୍ଧନୀ ଭିତରେ ଥିବା ଶବ୍ଦ ସନ୍ନିକଟ ଫରାସୀ ଶବ୍ଦର ଇଂରାଜୀ ଭାଷାନ୍ତର)---ଇତ୍ୟାଦି ଫରାସୀ ସଂସ୍କୃତି ସହିତ

ଯୋଡ଼ ହୋଇଥିବା ରେମାଣ୍ଟିକ୍ ଭାବାବେଗ ସମ୍ପର୍କରେ ସାରା ଜଗତ ଜାଣେ । ସାହିତ୍ୟ ଓ ସାହିତ୍ୟିକ ଦର୍ଶନରେ ଆମେ ଦେଖିବାକୁ ପାଉ ଗୋଟାଏ ପଟେ ଭିକ୍ଟର ହ୍ୟୁଗୋ, ଆଉ ପଟେ ଜାଁ ପଲ୍ ସାର୍ତ୍ରେ । ଏପରି ସଂଘାତ ଯେ କେବଳ ସେଇ ଦେଶରେ ବିଦ୍ୟମାନ ଓ ଆଉ କେଉଁଠି ନାହିଁ, ଏକଥା ନୁହେଁ । ତଥାପି ଫ୍ରାନ୍ସ ନାଁ ଶୁଣିଲେ କ୍ୱଚିତ୍ ଲୋକ ମନର କୁଳୁକୁଳିଆ ଲହଡ଼ିକୁ ରୋକି ପାରିବେ । ତେଣୁ ଏ ଆଲୋଚନା । ପାଠକ ଭାବ ନିଅନ୍ତୁ, ଯଷ୍ଟ ଲାଇକ୍ 'ଏନ୍ ଇଭିନିଂ ଇନ୍ ପ୍ୟାରିସ୍' ।

ଆମ ଅସଲ କଥାକୁ ଆସିବା । ସ୍ୱର ଯନ୍ତ୍ର ଛଳନାର ହୁଏ ତାହାର ପ୍ରତିଧ୍ୱନି କେତେ ଖରାପ, କେତେ କର୍କଶ ଓ କେତେ ଅପ୍ରିୟ ସେକଥା ସ୍ୱର ସ୍ରଷ୍ଟା ଆଦୌ ଜାଣିପାରନ୍ତିନି । ଯେମିତି ବାଥ୍‌ରୁମ୍ ସଙ୍ଗୀତଜ୍ଞ । ଗୀତ ଗାଉଥିବା ବେଳେ ନିଜକୁ ମୁକେଶ୍, ମହମ୍ମଦ ରଫି ବା କିଶୋର କୁମାର ଆଦିଙ୍କଠାରୁ ଟିକିଏ ହେଲେ ଊଣା ବୋଲି ଭାବନ୍ତି ନାହିଁ ।

ଆମ ଦେଶର ଗୋଟିଏ ପ୍ରମୁଖ ରାଜନୈତିକ ଦଳ ଦାଣ୍ଡି ଯାତ୍ରାର ଆୟୋଜନ କଲେ । ବିଚଳିତ ପ୍ରବାହରେ ଶରୀରର ସ୍ନାୟୁମଣ୍ଡଳ ଯେମିତି ବିପର୍ଯ୍ୟସ୍ତ ହୋଇପଡ଼େ, ଦେଶର କୋଣେ କୋଣେ ଗଗନ ପବନ କମ୍ପାଇ ଦିଆଗଲା । ଇତିହାସକୁ ସ୍ମରଣ କରିବାର ଗରଜ ଅବଶ୍ୟ ରହିବ । ବହୁବିଧ କାରଣ ଭିତରୁ ଗୋଟିଏ ହେଲା, ବାରମ୍ବାର 'ରିଭାଇଜ୍' ନକଲେ ଆମେ ପାଠ ଭୁଲିଯିବୁ । ତତ୍ପରେ ଭାଷଣର କେଉଁ ତରୀ ଧରି ଭବ-ସାଗରରୁ ଉଦ୍ଧାର ହେବୁ ଆମେମାନେ ? 'ପ୍ୟାସେଞ୍ଜର କ୍ୱାଲିଟି' ଭାଷଣ ପାଇଁ ଇତିହାସ ପରି ସୁନ୍ଦର ବିଷୟଟିଏ ଆଉ ବୋଧହୁଏ ଏ ଧରାରେ ନାହିଁ । ନଉକ୍ଲିୟର ଥିଓରି ବିଷୟରେ କହିଲେ ବକ୍ତା ଶ୍ରୋତାଙ୍କ ଅନେକଙ୍କ ପାଖରେ ଅବୋଧ ହୋଇପଡ଼େ ମାତ୍ର ଇତିହାସ କହିଲେ ଶ୍ରୋତା ଶୁଣୁଥିବେ, ବକ୍ତାଙ୍କୁ 'ଇଣ୍ଟେଲେକ୍‌ଚୁଆଲ୍' ବୋଲି କହୁଥିବେ, ଅଥଚ କିଛି ବୁଝିନଥିବେ । ଧର୍ମ ନାମକ ଅଫିମକୁ ଗୁଡ଼େଇଦେଲେ ଏପରି ନିରାପଦ କୃତିତ୍ୱ ଅର୍ଜନ କରିବା କ୍ଷେତ୍ରରେ ବୋଧହୁଏ ଆଉ କୌଣସି ପାଠରେ ନାହିଁ ।

ଘଟଣା ଇତିହାସରେ ବିନ୍ୟାସିତ ହେବାକୁ ଯେତେ ସମୟ ଲାଗେ, କୁହାଯାଏ ସେ ଇତିହାସ ଅପ ଇତିହାସ (anti-history)ରେ ପରିଣତ

ହେବାକୁ ତାହାଠାରୁ ଯଥେଷ୍ଟ କମ୍ ସମୟ ଲାଗେ । କାରଣ ଆମ ପ୍ରଥମ ପାରାଗ୍ରାଫ୍‌ର 'ସେ'ମାନେ ହିଁ ସେଥିପାଇଁ ଦାୟୀ । ଏବେ ଦେଖନ୍ତୁ, ମୌଲାନା ଆବୁଲ କାଲାମ୍ ଆଜାଦ୍‌ଙ୍କର ତିରଣ ପୃଷ୍ଠାର ଇତିହାସ ନାମକ ଜୀବନୀର କ'ଣ ପ୍ରଭାବ କରିବ ଜଣାନାହିଁ, ମାତ୍ର ଆମର କେତେକ ଧାଇଙ୍କ ଅଳୁଡ଼ି ସଜା ଆୟୋଜନ ଦେଖି ମନ ଚମ୍କୁଛି । ଆଜାଦ୍ ମଲେଣି କୋଉ କାଳରୁ କିନ୍ତୁ ମନରେ ଭୟ ଆସୁଛି ସତେକି ଆଉ ସେ କବର ଭିତରୁ ଉଠିଆସି ଅତୀତକୁ ବର୍ତ୍ତମାନ ପର୍ଯ୍ୟନ୍ତ ଟାଣିଆଣି ଆଉକିଛି ନୂଆ ଇତିହାସ ସୃଷ୍ଟି କରିପକାଇବେ କି ! ଜଣେ ଇଂରାଜୀ ଖବରକାଗଜ ସମ୍ପାଦକ ମହାଭାରତ ସମରର ସର୍ବଦର୍ଶୀ ବେଲ୍ଲାଳସେନ ପରି ଏଇ ବିଷୟରେ ଦିନାକେତେ କୋଳିକଗୁଡ଼ି ହୋଇ ସାରିଲେଣି । ଅମୁକ ଦିନ ରାତି ଏତେଟା ବେଳେ ନେହରୁ କ'ଣ କରିଥା'ନ୍ତେ...ଆଜାଦ୍ କ'ଣ କରିଥା'ନ୍ତେ...ଇତ୍ୟାଦି ଇତ୍ୟାଦି । ସ୍ୱାଭାବିକ ପ୍ରଶ୍ନ ହେଉଛି; ହଇ ହୋ ବାବୁ, ଇତିହାସ ସମ୍ପର୍କରେ ଅନ୍ଦାଜ୍ କରିବାକୁ ତୁମକୁ କେହି ଓକିଲତ୍‌-ନାମା ଦେଇଛି କି ? ଆଜାଦ୍ ଯାହା ଯାହା ବି ଲେଖିଥା'ନ୍ତୁ, ତାହା ଐତିହାସିକ ଦସ୍ତାବିଜ୍ ହୋଇପାରେ, ସମ୍ପୂର୍ଣ୍ଣ ଇତିହାସ ତ ନୁହେଁ । ତାହେଲେ ଏତେ ଲୋକ ଚମକୁଛନ୍ତି କାହିଁକି ? କାରଣ ହେଲା, ସେମାନେ ଭାବୁଛନ୍ତି ଯେ ସେଇମାନେ ବୋଧେ ଇତିହାସ 'ସୃଷ୍ଟି' କରିବେ । ଏହାହିଁ ଇତିହାସରୁ ଅପ୍‌-ଇତିହାସକୁ ଦୌଡ଼ିବାର କସରତ ।

ବ୍ୟକ୍ତିଗତ ଛଳନାରେ ଉପଭୋଗ କଲାପରି କେତେକ ମଜା ଦିଗ ଅଛି ଯାହା ସାମଗ୍ରିକ ବା ସାମଗ୍ରିକ ବଳୟକୁ ଛୁଇଁପାରୁଥିବା ବିଶେଷ ବ୍ୟକ୍ତିମାନଙ୍କ ଛଳନାରେ ଆଦୌ ନଥାଏ । ବରଂ କଥା ଓଲଟା ହୁଏ, ଘା' ବସିରହି ଯାଏ ।

ବ୍ୟକ୍ତିଗତ ଛଳନାକୁ ଆମେ ଅନେକ କ୍ଷେତ୍ରରେ 'ଜୋକ୍' ବୋଲି ଭାବୁ ଓ ଭୁଲିଯାଉ । ଯେମିତିକା ଗୋଟିଏ କଥା । ଜଣେ ଲୋକ ସାଙ୍ଗ ସହିତ 'ବାର୍'ରେ ବସି ଦମ ମାଲ୍ ମାରିସାରିଲାଣି । ଅସଲରେ ସେ ଗୋଟିଏ ମର୍ଯ୍ୟାଦାସମ୍ପନ୍ନ ଇଲାକାରେ ସୁନ୍ଦର ଘରଟିଏ ଭଡ଼ା ନେଇଥାଏ । ତା' ମନକୁ କ'ଣ ଆସିଲା କେଜାଣି, ସାଙ୍ଗକୁ ନେଇଗଲା ଘର ଦେଖାଇବାକୁ । 'ଏଇ ଘର ତିଆରି କରିବାକୁ ମୋତେ ଗୁରିବର୍ଷ

ଲାଗିଛି । ସାଙ୍ଗ କହନ୍ତି, 'କି ସୁନ୍ଦର ଘର ସତେ' ! 'ବର୍ମା ଟିକ୍, ମେହେଗାନି ସବୁ ସ୍ମଗଲ କରି ଆଣିଛି' । 'ଏ ଟେଲିଫୋନ୍ ମୋର, ଲଣ୍ଡନ ଡଆର୍' । ସବୁ ମୋର, ସବୁ ମୁଁ କରିଛି, ଏମିତି ଘୁଞାଣି ମାରି ମାରି ଭିତରକୁ ଯାଉଥାଏ । ତା' ସାଙ୍ଗଟି ଯେତେ କଥା ଦେଖୁଥାଏ ସବୁକୁ ପ୍ରଶଂସା କରୁଥାଏ, ଯୁା' ମନ ଆହୁରି ଆହୁରି ଉଦ୍‌ବେଳିତ ହେଉଥାଏ । ସହଜେ ତ ନିଶା ଘାରିଛି । ଏମିତି ଯାଉ ଯାଉ ଦେଖିଲା ଘର ଭିତରେ ସୁନ୍ଦରୀ ଯୁବତୀଟିଏ ଅର୍ଦ୍ଧ ଉଲଗ୍ନ ଅବସ୍ଥାରେ ଶୋଇଛି । ଲୋକଟି କହିଲା, 'ସି, ଦି ପାଏଡ୍ ବିଉଟି, ସିଏ ମୋ ସ୍ତ୍ରୀ' ।

ସାଙ୍ଗ ପଚାରିଲା, 'ତାଙ୍କ ପାଖରେ ଶୋଇଛି ସିଏ, ସିଏ କିଏ ?'

'ମୁଁ ନିଜେ ।'

ସାଙ୍ଗଟି ତାକୁ ହଲେଇ ଦେଇ ପଚାରିଲା, 'ତାହେଲେ ତୁ କିଏ ?

ଗାଲୁଆ ବାବୁଜଣକ ଅଚେତ ହୋଇ ସେଇଠି ପଡ଼ିଗଲା ।

ଇଏ ବି ଥିଲା ଗୋଟିଏ ପ୍ରକାର ଛଳନାର ସ୍ୱର, ମାତ୍ର ଅନ୍ୟ ଛଳନାରୁ ଏଇ ମଜା ମିଳିବ କି ? ମିଳୁଛି କି ?



# ସ୍ୱାତ ଅଇନା

ସବୁଥିରୁ ବଞ୍ଚିତକରି କେଉଁ ଯଶବାନା ଉଡ଼ାଇବ ହେ/କଉଶଳ କରି ଯାହା ଉପାର୍ଜିଛୁ/କାହାର ତାକତ, ଛଡ଼ାଇବ ହେ ? ଅପଭ୍ରଂଶ ବ୍ୟତିରେକ, ପ୍ରାପ୍ତ ମଧ୍ୟଯୁଗୀୟ ଭାରତୀୟ ଭାଷାଗୁଡ଼ିକରେ ପ୍ରାର୍ଥନା ଏହିପରି ଆକୁଳ ବିକଳ ଆତୁର ଭାବ ବହନକରି ପକାଉଥିଲା । ବୋଧହୁଏ ତାହାର କାରଣ ଥିଲା ଏଇଆ ଯେ ଠାକୁର ନାମକ କୌଣସି ଶକ୍ତିକୁ ଯେ ମଣିଷ ସାଧାରଣ ଭାବେ ପ୍ରଚଣ୍ଡ ବିଶ୍ୱାସ କରୁଥିଲା, କେବଳ ସେତିକି ନୁହେଁ, ତା'ର ଅନ୍ୟଗତି ନଥିଲା ।

ଆଜି କିନ୍ତୁ ଇଏ ଆମର ପ୍ରାର୍ଥନା ନୁହେଁ, ଚ୍ୟାଲେଞ୍ଜ୍ । ଧର୍ମ ନିରପେକ୍ଷ ରାଷ୍ଟ୍ରରେ ଗଣତନ୍ତ୍ର ଆମ ଠାକୁର । କସମ୍ କସମ୍ ଛକ୍‌ବାକରେ ତାକୁ ଯେତେବେଳେ ଆମେ ସଜାଇ ବସୁ ତାହା ଆମକୁ ନାଗାର୍ଜୁନ, ଗଜଉଦ୍ଧାରଣ, ବାଙ୍କଚୂଡ଼ ବା ବଡ଼ସିଂହାର ବେଶଠାରୁ ଅଧିକ ଲୋଭନୀୟ ଦେଖାଯାଏ । ଏଇଠି ଆଇନ ଆମର ଧର୍ମଗ୍ରନ୍ଥ ଓ ସେଇଆକୁ ନାନାବିଧ ପ୍ରକାର ଇସ୍ତମାଲ୍‌କରି ଯେଉଁ ଚଉପାଢ଼ି ଉପରେ ମୁଁ ଆସନ ଜମେଇ ବସିଛୁ, ସେଠାରୁ କିଏ ମୋତେ ହଟାଇ ଯଶବାନା ଅର୍ଜନ ପାଇଁ ଆସ୍ପର୍ଦ୍ଧା କରୁଛୁ, ସେ ପଦାକୁ ବାହାରିଆସୁ !

ସମୁଦାୟ ନାଟକର ପ୍ରଚ୍ଛଦସଜ୍ଜା ଏଇଆ । ବିରୋଧୀଦଳ ନେତା କହିଛନ୍ତି ସେମାନେ କୁଆଡ଼େ ଯଦି ଶାସନକୁ ଆସନ୍ତି ତାହେଲେ ଅପ-ଉପାର୍ଜିତ ସମ୍ପତ୍ତି ସବୁ ବାଜ୍ୟାପ୍ତ କରିଦେବେ । ଆଉ ଦି' ପାହୁଣ୍ଡ ଆଗେଇ ଯାଇ ଯଦି କହିଥାନ୍ତେ—'ଯାହା ବାଜ୍ୟାପ୍ତ କରିବୁ ସବୁ ଗରିବଙ୍କୁ ବାଣ୍ଟିଦେବୁ', ତାହେଲେ କଥାଟା କେଡ଼େ ମଧୁ-ରୁଚିର ହୋଇଥା'ନ୍ତା । ଓଃ, ସାମ୍ୟବାଦଟା କେତେ ବଡ଼ ବଉଦ, କେତେ ବର୍ଷାରୁ ଗ୍ରୀଷ୍ମର ଏ ଧରିତ୍ରୀକୁ ଶୀତଳ କରି ନଦେବଟି ସତେ ! ଅପ-ଉପାର୍ଜିତ ଶବ୍ଦଟିକୁ ଅଣ୍ଡରଲାଇନ୍ କରିବାକୁ ଇଚ୍ଛା ହେଉଛୁ କାରଣ ଅର୍ଜନ ସହିତ

ରପ ମିଶିଛି (ତୁଳନା—ଉପନଦୀ) ଓ ସବୁ ମିଶି ଅପ ହୋଇଯାଇଛନ୍ତି । ରାଜନୈତିକ ବିଚକ୍ଷଣତା ବୋଲି ଆମେ ଏଇଆକୁ ନିଶ୍ଚୟ କହିବା, ଜଗତ ବାଃ ବାଃ କରିବ କାରଣ ସଠିକ୍ ସମୟରେ ସଠିକ୍ କଥାଟି ସଠିକ୍ ବ୍ୟକ୍ତିଙ୍କ ମୁଣ୍ଡରେ ପଶିଛି । ଅସୁନ୍ଦର ଅତୀତକୁ ଅହରହ ମନେପକାଇ ଆଉ କାହାରି ବ୍ୟକ୍ତିତ୍ୱକୁ ଅସୁରର ରୂପକଳ୍ପ ଦେଇ ଶିହରି ଉଠିବା ଯାହା, ତାହା ବିଷ୍ଠା ଘାଣ୍ଟିବା ସହିତ ସମାନ ବୋଲି ବଡ଼ପୁରୁଷମାନେ କହିଛନ୍ତି । ତେଣୁ, ପଞ୍ଜାବର ପ୍ରତାପ ସିଂ କାଇରୋଁଙ୍କ ସମସାମୟିକ ଘଟଣାବଳୀ ଯେଉଁ ଦେଉଳର ମୁଖଶାଳା, ସେ ଆଲୋଚନାରୁ ଆମେ ନିବୃତ୍ତ ହେଲୁ ।

ବିବାହର ଅନେକ ବର୍ଷପରେ ଗୋଟିଏ ସ୍ତ୍ରୀ କହୁଛି ତା ସ୍ୱାମୀକୁ : ହଇମ, ଆମେ ଯେତେବେଳେ ବାହା ହୋଇଥିଲେ, ମୋତେ କୋଳରେ ବସାଇ କେତେ କୋମଳ ମଧୁର ସ୍ୱରରେ ତୁମେ ମୋ ପ୍ରାଣ-ବୀଣାର ତନ୍ତ୍ରୀକୁ ଝଙ୍କାରିତ କରିଦେଉଥିଲ, ମନେ ପଡ଼ୁନି ? ସେ ସପନ—ସଙ୍ଗୀତ ଆଜି ଗଲା କୁଆଡ଼େ ?

ସ୍ୱାମୀ : ସବୁ ମନେଅଛି । ସେ କଥା କ'ଣ ଭୁଲି ହୁଏ ? ହେଲେ ତୁମ ଅର୍କେଷ୍ଟ୍ରାର ଶବ୍ଦ ଏଥି କେତେ ବର୍ଷ ଭିତରେ ଏତେ ବଢ଼ିଯାଇଛି ଯେ ତାହାରି ନିନାଦ ତଳେ ସ୍ୱପ୍ନ—ସଙ୍ଗୀତର ମୃଦୁ ମୂର୍ଚ୍ଛନା ଲୁଚି ଲୁଚି ହଜିଗଲାଣି । ଅରଣ୍ୟରେ ବାତୁଳ ବ୍ୟାଧପରି କାହିଁକି ଖୋଜି ବୁଲିବ ? ପାଇବନି ତ ଜାଣେ ।

ଜନତାଙ୍କ ସହିତ, ଆପେକ୍ଷିକ ହେଲେ ମଧ୍ୟ ରାଜନୈତିକ ଦଳ-ଗୁଡ଼ିକର ମାୟାବନ୍ଧନ ସ୍ଥାପିତ ହୋଇଯାଏ । ଜନତା ସାଧାରଣତଃ ନାନାବାଦ୍ୟ ଗୀତ ଶୁଣିବାକୁ ଚାହାଁନ୍ତି । ଶୁଣାଇବାକୁ ଚାହାଁନ୍ତି । କିନ୍ତୁ ଯାହା ଦେଖାଯାଉଛି ଅର୍କେଷ୍ଟ୍ରା ଶବ୍ଦରେ ତୁଆ ଉଠିପଡ଼ୁଛନ୍ତି ।

ନାଁ ଶୁଣିଲେ ସାଧାରଣ ଲୋକେ ଚମକି ପଡ଼ୁଥିବା ଓ ଖବରକାଗଜ-ବାଲାଏ ଘର 'ଗମ୍ଭୀର ତଥ୍ୟ' ପାଇବାପରି ଫେଣେଇ ଫେଣେଇ ଲେଖୁଥିବା ଗୋଟିଏ ସରକାରୀ ତଦାରଖ ସଂସ୍ଥା ଦ୍ୱାରା ଗତ କେତେମାସ ତଳେ ଜଣଙ୍କ ଘର 'ରେଡ଼୍' କରାଗଲା । ଅଭିଯୋଗ, ହିସାବ ବହିର୍ଭୂତ ଆୟ । ଅନ୍ୟାର୍ଥେ ଅପ-ଉପାର୍ଜନ । ଆଜିକାଲି ଯୁଗରେ ଗୀତା ବର୍ଣ୍ଣିତ 'ସ୍ଥିତପ୍ରଜ୍ଞ'

ବ୍ୟକ୍ତି ମିଳିବା ନିହାତି ଅସମ୍ଭବ । 'ରେଡ୍‌' ହେଉଥିବା ବେଳେ ଯାହାର କଣ୍ଠପାଣିକୁ ଉହବସ ମିଳିବା ଆଦୌ ଉଚିତ ହୋଇ ନଥା'ନ୍ତା, ତାଙ୍କ ସ୍ଥିତପ୍ରଜ୍ଞତା ଦେଖି ଦେଖଣାହାର ଚକିତ ହୋଇଯାଇଥିଲେ ।

ଓ୍ୱାରେଣ୍ଟ୍ ଦେଖିଲାପରେ ବାବୁ ହୁଇସ୍କି ବୋତଲ ଧରି ଡ୍ରଇଂରୁମ୍‌ରେ ସେଣ୍ଟର ଟେବୁଲ୍ ଉପରେ ଗୋଡ଼ ଲମ୍ବେଇ ବସିଗଲେ । ଘରର ଚାକରକୁ କହିଲେ—ଏମାନେ ଯାହା ଦେଖିବାକୁ କହୁଛନ୍ତି, ସବୁ ଖୋଲି ଦେ, ସବୁ ଦେଖେଇ ଦେ । ଅନେଇଥିବୁ, ଏମାନେ ବି ମୋଠୁଁ କମ୍ ନୁହଁନ୍ତି ।

ପ୍ରାୟ ତିନି ଚାରି ଘଣ୍ଟା ପରେ ସବୁ କାମ ସରିଲା । ସିଜର୍ ଲିଷ୍ଟ ଓ ଷ୍ଟେଟ୍‌ମେଣ୍ଟର ବେଳ ଆସିଲା । ବାବୁ କହିଲେ, ଛି ଛି ଛି, କିଛି ପାଇନ । ଲେଖ, ମୋର ଘାଜିଆବାଦ୍ ପ୍ଲଟ୍ । ସେଇଠି ଅଣୀ ମସିହାରେ ତିରିଶ ଲକ୍ଷ ଟଙ୍କାର କୋଠା । ଅମୁକ ଅମୁକ ଅମୁକ ସାଲ୍‌ରେ ବିଭିନ୍ନ କମ୍ପାନୀରେ ଏତେ ଏତେ ଟଙ୍କାର ସେୟାର୍ । ଅମୁକ ବ୍ୟାଙ୍କ୍ ଲକର୍ ନମ୍ବର ଏତେ, ଇତ୍ୟାଦି । ସେମାନଙ୍କ ଭିତରୁ ଜଣେ ନିରୀକ୍ଷଣ ଅଫିସର ସବୁ ଟିପି ପକାଉଥା'ନ୍ତି । ଦୁଏତ ଭାବୁଥା'ନ୍ତି, ବାବୁ ନିଶା ଧାପରେ ପ୍ରଳାପ କରୁଥାଇପାରନ୍ତି ।

କିନ୍ତୁ ଘଟଣା ତାହା ନଥିଲା । ଦସ୍ତଖତ କଲାବେଳେ ବାବୁ କହିଲେ, ତୁମେ ମୋର ଯାହା କରିବାର କଥା ମୋତେ ଖବର ଦେବଟି ?

ପରବର୍ତ୍ତୀ କଥା କ'ଣ ଘଟିଲା ଜଣାନାହିଁ ମାତ୍ର ଏହି ସମ୍ବାଦ ଖବରକାଗଜଗୁଡ଼ିକରେ ବହୁତ ତୁର୍ମ୍ବିତୋଫାନ୍ ସହକାରେ ପ୍ରକାଶ ହୋଇଥିଲେ ମଧ୍ୟ ଶୁଣିବାକୁ ମିଳିଲା ଯେ ବାବୁଙ୍କ ବିରୁଦ୍ଧରେ ଉକ୍ତ ତଦାରଖ ସଂସ୍ଥା ଦ୍ୱାରା ଚାର୍ଜସିଟ୍ ଦାଖଲ କରାଯାଇପାରିଲା ନାହିଁ ।

ବାବୁ ଏ ଲେଖକକୁ କହିଥିଲେ—ସମ୍ପତ୍ତି ସ୍ୱ-ଉପାର୍ଜିତ । ବେଆଇନ୍ ? ମାଇଁ ଫୁଟ୍, ଆଇନ୍ ସବୁବେଳେ ଗଣତାନ୍ତ୍ରିକ ।

ବିରୋଧୀଦଳ ନେତାଙ୍କ ଇଚ୍ଛା ସାର୍ଥକ ହେଉ କିନ୍ତୁ ତାହା ଯଦି ଖାଲି ଅର୍କେଷ୍ଟ୍ରା ବଜେଇବା ଲାଗି ହୋଇଥାଏ, ତାହେଲେ କଥା ତ ଏକଦମ୍ ଓଲମ୍ବଲମ୍ । କହିବା କାହାକୁ ?



# ଭୁସ୍‌ପଣ୍ଡିତ

ପ୍ରକାର ଭେଦରେ ସ୍କୋଲ୍ ବା ବିଶ୍ୱବିଦ୍ୟାଳୟର ପଣ୍ଡିତ କେତେ କିସମ୍‌ର ତାହାର କୌଣସି ସମ୍ପୂର୍ଣ୍ଣ କାଟ୍‌ଲଗ୍ ନମିଳୁଥିଲେ ମଧ୍ୟ ଭୁସ୍‌ପଣ୍ଡିତ ନାମକ ଆପ୍ତ-ସମ୍ବୋଧନ ବା ସାମାନ୍ୟ କ୍ରୋଧକଥନ ଆମ ଭାଷାରେ ସ୍ୱୀକୃତି ଲାଭ କରିସାରିଛି । କହିବା ବ୍ୟକ୍ତି ବିଶେଷ ଚିନ୍ତିତ ହବାର ନାହିଁ ଓ ଯାହା ପାଇଁ ଉଦ୍ଦିଷ୍ଟ ହୁଏ, ମାତ୍ର ଯଦି ଲାଇନ୍ ନ ହୁଡ଼େ, ସେ ବିଶେଷ ବିଗଡ଼ନ୍ତି ନାହିଁ । ସରକାରୀ ଉପାଧି ପଦ୍ମଶ୍ରୀ ଆଦି ପରି । ଅବଶ୍ୟ କେତେକ ଲୋକ ନମାନି ବ୍ୟବହାର କରି ପକାଉଛନ୍ତି ଯେ, ମାତ୍ର ଦାତାଙ୍କ ନିର୍ଦ୍ଧାରଣ ଅନୁଯାୟୀ, ମିଳିବା ହଜିବା ଗୋଟାଏ କଥା । ଭୁସ୍‌ପଣ୍ଡିତ କ୍ଷେତ୍ରରେ କହିବା ଲୋକ, ଶୁଣିବା ଲୋକ ଭୁଲିଯାଆନ୍ତି ।

ଆମ ଭାଷାରେ ଗୋଟିଏ ଢଗ ଅଛି । ତାହା ହେଲା : ମାଛ ଧଇଲେ କି ହେବ ବଇଷିମ/କାଳି ବୋଳି ହେଲେ ହେବ କରଣ (ଜାତି ନୁହେଁ, ନବସିଦ୍ଧା ଅର୍ଥରେ) ତାଳି ମାରିଲେ କି ପୂଜା ସରିଯାଏ/ଗାଳିରେ କି କେବେ ହୁଏ ମରଣ ? ତେଣୁ ଏ ପଣ୍ଡିତମାନେ ଖାସ୍ ଅର୍ଥରେ 'ପଣ୍ଡ୍-ଅ-ଆ-ଇତ', ଅର୍ଥାତ୍ ଶିକ୍ଷଣ ଧୀ ସମ୍ପନ୍ନ ବୋଲି ଆଭିଧାନିକ ଅର୍ଥରେ ଗଣାଯାଆନ୍ତି ନାହିଁ । ବୋଧହୁଏ, ବଢ଼ିପାଣି ବନ୍ଧଭାଙ୍ଗି ଭୁସ୍‌କରି ଗାଁ ଗଣ୍ଡା ଉଚ୍ଛନ୍ନ କରିଦେଉଥିବା ପରି କାହାର ମୁଣ୍ଡର ଅଗ୍ରନ୍ଥିକ ବୁଦ୍ଧି ବା ଚିନ୍ତାହୀନ ମନ୍ତବ୍ୟ ସକାଶେ ଆମ ଚଳନ୍ତି ଭାଷାକାର-ମାନେ ଏଇଭଳିଆ ପଦବାଟିଏ ସୃଷ୍ଟି କରିଛନ୍ତି ।

ଥରେ ଜଣେ ରାଜନୈତିକ ପ୍ରାର୍ଥୀ ଅଳ୍ପଦିନ ଆଗରୁ ଥିବା ନିର୍ବାଚନରେ କେତେ ଭୋଟ୍ ପାଇବେ ତାଙ୍କର ଏକ ମୋଟାମୋଟି ହିସାବ ଏ ଲେଖକକୁ ଶୁଣାଉଥା'ନ୍ତି । ଅମୁକ ଜାଗାରେ ଏତେ ହଜାର ଦିଆଗଲା, ଭୋଟ ଏତେ ହଜାର । ଅମୁକ ମାର୍ଫତରେ ଏତେ ହଜାର ଦିଆଗଲା, ଏତେ ହଜାର ଭୋଟ୍ 'ଆସିଓଡ଼ି' । ଏମିତି ସେ ତାଲିକା ଲମ୍ବେଇ ଲମ୍ବେଇ ଚାଲିଥାନ୍ତି । ଏକକ, ଦଶକ ବା ଶତକ ସବୁ ତ୍ୟାଗ କରି ଖାଲି

ହଜାରଗୁଡ଼ିକ ମନେ ମନେ ମୁଁ ଗଣି ଯାଉଥାଏ । କିଛି ସମୟ ପରେ ମୋ ଗଣିତ ମୋତେ ଏମିତି ଏକ ସଂଖ୍ୟା କହିଲା, ମୁଁ ପ୍ରାର୍ଥୀଙ୍କୁ କହିଲି, ଆଜ୍ଞା ଆପଣ ବହୁ ହଜାର ଖର୍ଚ୍ଚ କରି ଯାହା ପାଇବେ ବୋଲି ହିସାବ କରୁଛନ୍ତି ସେ ସଂଖ୍ୟା ତ ଭୋଟର ଲିଷ୍ଟରୁ ବେଶୀ ହୋଇଗଲାଣି । ପ୍ରାର୍ଥୀ ସାମାନ୍ୟ ଅପ୍ରସ୍ତୁତ ହେଲେ ମାତ୍ର କହିଲେ, ନା କୋଉଠି ବୋଧେ କାଲ୍‌କୁଲେସନ୍ ମିଷ୍ଟେକ୍ ହୋଇଯାଇଛି । ନିର୍ବାଚନ ପରେ ପ୍ରାର୍ଥୀ ନାରେ ନାରେ ସଙ୍ଗୀତ ଗାଉଛନ୍ତି । ସେତେବେଳେ କହିନାହିଁ କାରଣ ଲାଇନ୍ ଛୁଡ଼ିଯାଇଥାନ୍ତା । ବଡ଼ଲୋକ କି ନା । କିନ୍ତୁ ଏଇ ଏକ ଭୁସ୍‌ପଣ୍ଡିତିଆ ହିସାବ ।

ଏ ପର୍ଯ୍ୟନ୍ତ ଆମ ଆଲୋଚନାକୁ 'ଲାଇଟର୍ ଭେନ୍'ରେ ଆଗେଇ ନେଉଥିଲୁ କିନ୍ତୁ ଏପରି କେତେକ କଥା ଘଟୁଛି ଯେ ଭୁସ୍‌ପଣ୍ଡିତମାନେ ପୃଥିବୀ ଆଚ୍ଛାଦନ କରି ସତ ପାଣ୍ଡିତ୍ୟ ଜାହିର କରୁଥିବାରୁ ଜନ-ଜୀବନ ସମସ୍ୟା ଏତେ ପ୍ରବଳ ଅପ୍ରକାର ରୂପ ଧରୁଛି ଯେ, ଏ କଥାଟିକୁ ହାଲୁକା ଭାବେ ଉଡ଼ାଇଦେବା ସମ୍ଭବ ହେଉନାହିଁ । କେତୋଟି ଉଦାହରଣ :

ଜଣେ ଅଧ୍ୟାପକ କହିଲେ—କପି ପ୍ରିଭେନ୍‌ସନ୍ ଆକ୍ଟ ଦ୍ୱାରା ଆମକୁ ଭାରି ସୁବିଧା ହେଲା । ଏଣିକି ଯାହାକୁ ଇଚ୍ଛା ତାକୁ ଆମେ ଟାଇଟ୍ କରିଦେବୁ ।

ସପ୍ଲାଇ ଅଫିସର କହିଲେ—ମନ୍ତ୍ରୀ କହିଛନ୍ତି, ଆମ ବିଭାଗରେ ଦୁର୍ନୀତି ନାହିଁ । ଆଉ କୋଉ ଶ···କେତେ କହିଲେ ଆମର କ'ଣ ଯାଏ ?

ବସ୍‌ରେ ଖୁଦ ପକାଇବାକୁ ଜାଗା ନଥାଏ ମାତ୍ର କଣ୍ଡକ୍ଟରମାନଙ୍କ ବ୍ୟାଗ୍ ଖାଲି । ସରକାର ବିଧାନସଭାରେ ବିଭାଗୀୟ କ୍ଷତିର କୈଫିୟତ୍ ଦେଲେ । ମନ୍ତ୍ରୀ ଯାହା ଖୋଜୁଥିଲା···

ବିକ୍ରୀକର ମାମଲାରେ ବ୍ୟବସାୟୀମାନଙ୍କ ସଦାବେଳେ ଦୁଇଟା ଖାତା ଗୁଡ଼ିଏ । ଏକଥା କିଏ ନ ଜାଣେ ? ଗୋଟିଏ ସତ ଓ ଅନ୍ୟଟି ସରକାରଙ୍କ ନିକଟରେ ଦାଖଲ ହେଉଥିବା ମିଛ ହିସାବ ଖାତା । ଆମେ ଏପରି ଉଦାହରଣ ଜାଣୁ ଯେଉଁଠି ବିଭାଗୀୟ ଲୋକଙ୍କ ପାଖରେ ଏକ

ନମ୍ବର ଖାତା ପହଞ୍ଚାଇ ଦେଲେ ସେମାନେ ଆଇନାନୁମୋଦିତ ରୂପେ ଦ'ନମ୍ବରୀ କରି ତାହା ଦାଖଲ କରାଇବା ପାଇଁ ବ୍ୟବସାୟୀଙ୍କୁ ଫେରାଇ ଦିଅନ୍ତି । ବ୍ୟବସାୟୀ ମାତ୍ରା (Volume of trade) ଓ ଟିକସ ହାର ବଢ଼ିଥିବା ଯୋଗୁ ସରକାରୀ ଆୟ ବଢ଼ିଯାଉଛି । ଏ କଥା କହି ସରକାର ତୃପ୍ତ, ଶୁଣି ଜନତା ତୃପ୍ତ । ଏ କ୍ଷେତ୍ରରେ କହୁଥିବା ଓ ଶୁଣୁଥିବା ଲୋକଙ୍କୁ ଭୁସ୍‌ପଣ୍ଡିତ କହିବା । ଅସଲ ପଣ୍ଡିତମାନେ ପଦାରେ ପଡ଼ିଲେନି ।

ଏମିତି ଯେତେ ଖୋଜିବା ସେତେ ମିଳିବ । ମାତ୍ର ଏବେ ଗୋଟାଏ ନୂଆ କଥା ଶୁଣିବାକୁ ମିଳିଲା ଯେ, ତାହା କାହିଁକି ବ୍ୟତିକ୍ରମ ପରି ଲାଗୁଛି । ରାଜ୍ୟର ପୋଲିସ ମୁଖ୍ୟ ନିକଟରେ କହିଛନ୍ତି ଯେ ପୋଲିସ-ବାଲାଏ ଜନସାଧାରଣଙ୍କ ପ୍ରତି ଉଚିତ ଓ ସୌଜନ୍ୟପୂର୍ଣ୍ଣ ବ୍ୟବହାର ଦେଖାଉନାହାନ୍ତି । ଆଶା କରୁଛୁ ଯେ ଭଦ୍ରବ୍ୟକ୍ତିଙ୍କ ମନ ଭିତରେ ଥିବା ମଣିଷଟି ଏକଥା କହିଛି । କ'ଣ ହେବ ନହେବ ଅଲଗା କଥା, ଖୁସି ଲାଗିବନି ?

ସବୁଠାରୁ ନିନ୍ଦିତ ବିଭାଗଟି କେବଳ ଏଇ କଥାଟି ପାଇଁ ଆମ ଆଲୋଚନାର ଆକ୍ଷେପରୁ ରିବେଟ୍ ଦିଆଗଲା କାମରେ କ'ଣ ହେଉଛି ଦେଖାଯାଉ ।



# ଅଜେୟ ଅପରାହ୍ଣ

ଆମ ସଂସ୍କୃତି ଓ ଆମ ସହିତ ମିଳିମିଶି ଥିବା ଅନେକ ଧର୍ମରେ ଭିକ୍ଷାକୁ ମଣିଷର ପ୍ରାମାଣିକ ଆଚରଣ (Certified conduct) ରୂପେ ସମାଜ ମାନି ନେଇଛି ।

ତହିଁର ଆଉ ଯାହା ମହାମହିମ କାରଣ ଥାଉନା କାହିଁକି, ଥୋକେ ଅଥବା ପୁଣ୍ୟ କେମନ୍ତେ ଅର୍ଜନ୍ତେ ?

କିନ୍ତୁ ଆଜକାଲି ସହରୀ ଭିକ୍ଷା ଗଣ୍ଡଗୋଳିଆ ହୋଇଗଲାଣି । ପାଞ୍ଚ ପଇସି, ଦଶ ପଇସି, ଏମିତିକି ସୁକିଏଣି ବି ମିଳୁନି । ଆଠଣି ଦେବାକୁ ଦାତାପଣର ବହପ କୁଳେଇଉନି । ଏଇ ହେଲା ଆଂଶିକ ପୃଷ୍ଠଭୂମି । ଯାହା ଲେଖିବାକୁ ଯାଉଛି ତାହା ଗପ ନୁହେଁ । ମନରେ ଆଲୋଡ଼ନ ସୃଷ୍ଟିକରି ପାରିଥିବା ଗୋଟିଏ ଚରିତ୍ର—ଖାର ସିଂହ । ଅନୁପସ୍ଥିତି ଯୋଗୁ କେତେ ଦିନ ବ୍ୟବଧାନରେ ଫେରି ଶୁଣିଲି ସେ ମରିଯାଇଛି ।

ଦୟାକରି କେହି ଭାବିବା ଉଚିତ ନୁହେଁ ଯେ ଖାର ସିଂହର ମୃତ୍ୟୁ ସମ୍ବାଦ ଟି.ଭି., ରେଡ଼ିଓ ବା ଏପରିକି କୌଣସି ସ୍ଥାନୀୟ ଖବରକାଗଜରେ ମଧ୍ୟ ପ୍ରଚାରିତ ହୋଇଥିବ । ହେବା କଥା ନୁହେଁ ବି । ପରିଚୟହୀନ ଅତି ନଗଣ୍ୟ, ଅପାଙ୍‌କ୍ତେୟ ଲୋକଟେ ସେ ଥିଲା । କେବଳ ଏତିକି କରିଥିଲା, ମଲାବେଳେ ତା ପୁଟୁଳାରୁ ପ୍ରାୟ ଦୁଇଶହ ଟଙ୍କା ବାହାରିଥିଲା—ଯାହା ତାହାର ଦାହ ଖର୍ଚ୍ଚରେ ଲାଗିଥିଲା ।

ଦୁଇ ଗୋଡ଼ ପଙ୍ଗୁ । ଫିତା ଲଗା ଖଡ଼ମ ମାଡ଼ି ହାତରେ ଗୁଳୁଥିଲା ସେ । ଯେଉଁପରି ମେକ୍‌ଅପ୍ ନେଇ ଥୋଡ଼େ ଲୋକ ଭିକାରି ସାଜନ୍ତି ତହିଁରୁ ବଳି ବିକୃତ ରୂପ ପରମ କରୁଣାମୟ ପ୍ରଭୁ ତାକୁ ଦେଇଥିଲେ ।

କିନ୍ତୁ ଅନେକ ପ୍ରତାରଣା, ପରାମର୍ଶ ସେ ଏଡ଼ି ଦେଇଥିଲା । କଦାପି ଭିକ ମାଗି ନଥିଲା ।

ଆମ ସହରରେ ଅନେକେ ତାକୁ ଅନେକ ବର୍ଷରୁ ଦେଖି ଆସୁଥିବେ । କଏ କାହିଁକି ନାଁ ଦେଇଥିବା ବା ? ନହାଣ, ମୁଗୁର, ବାଉସି ଆଦି ସାଜ ସରଞ୍ଜାମର ବ୍ୟାଗ୍ ଖଣ୍ଡିଏ ତା'ର ସର୍ବସ୍ୱ । ଗ୍ରେଷ୍ଟ କେର୍‌ଓ୍ୱାଲ୍‌ଟିଏ ପକାଇ ମାର୍କେଟ୍‌ର ଗୋଟିଏ କୋଣରେ ବସିଥାଏ ସେ । ବଜାରରେ କାହାର କେମିତି ଭୁଟୁକା ତୁଟିକି ବଡ଼େଇ କାମ ପଡ଼ିଲେ ବ୍ୟାଗ୍‌ଟିକୁ ବେକରେ ଝୁଲାଇ ହାତରେ ଘୁରେ ସେଠାକୁ । ଫେରିଆସି ନିଜ ଜାଗାରେ ବସିଯାଏ । ତା' ବାଟ ଦେଇ ଅତିକ୍ରମ କରୁଥିବା ଲୋକଙ୍କ ଭିତରୁ ଯଦି କେହି କେବେ ଦୟା ଦେଖାଇ କିଛି ପଇସା ତା' କେର୍‌ପାଲ୍‌କୁ ପକାଇ ଦେଉଥିଲେ, ଦାତାଙ୍କ ଅହଂ ଭାବକୁ ଆହତ ନକରି ବିନମ୍ରଭାବେ ସେ କହୁଥିଲା, "ବାବୁଜି, ମେଁ ଭିକାରି ନେହିଁ ହୁଁ, ଇ ପଇସା ଫେଁସା ଲେ ଲିଜୟେ ।" ଫେରାଇ ଦେଉଥିଲା । ଚଳନ୍ତି ମଣିଷଙ୍କ ଭାଷାରେ, ଲୋକଟାର ଅଭିଳାଷ ନାହିଁ ଯେମିତି ।

ତା'ର ସ୍ମୃତିରୁ ବାଲ୍ୟ ଭିତରେ ମାତ୍ର ଗୋଟିଏ ଘଟଣା ଘଟିଥିଲା । ପୂର୍ବରୁ ବହୁତ ଦିନୁ ଦେଖୁଥିଲେ ମଧ୍ୟ ସେଇଦିନ ତାକୁ ଚିହ୍ନିଥିଲି । ତା' ଜୀବନ ବିଷୟରେ ତା'ର ଠାରୁ ଶୁଣିଥିଲି । ଆଜକୁ କାହିଁ କୋଡ଼ିଏ ବର୍ଷ ତଳର କଥା । ଦିନେ ମାର୍କେଟ୍‌ର କେତେକ ଦୋକାନୀ, ଲୋକ ଲୁଣ୍ଡ ହୋଇ ଦେଖୁଥିବା ଢଙ୍ଗରେ ତାକୁ ପରିହାସ କରୁଥା'ନ୍ତି । କଏ କେମିତି ବିଧାଏ ଚେଟାଏ ମାରିଦେଉଥାଏ । କରେ ବାବୁ କଥା କ'ଣ ? ସେହି ମାର୍କେଟ୍‌ରେ ରହୁଥିବା କୌଣସି ଏକ ରୂପୋପଜୀବିନୀ ସହ ସେ ଶୃଙ୍ଗାର—ସମ୍ଭୋଗ କରିଥିଲା ଓ କେତେକ ତଥାକଥିତ ମାନ୍ୟବାନ୍‌ମାନଙ୍କ ଦ୍ୱାରା ଉଭୟ ଧରା ପଡ଼ିଯାଇଥିଲେ ।

ନାରୀଟିକୁ କେହି ଅକଟେଇ ପାରିଲେ ନାହିଁ । କାରଣ ସେ ଚ୍ୟାଲେଞ୍ଜ କଲା :-ଯେତେ ଲୋକ ପାଟିକରୁଛ କଏ ମୋ ସହିତ··· । ସେ ତା' କାନ ହଲେଇ ଗୁଳିଗଲା । କେବଳ ରହିଗଲା ବୀର ସିଂହ । ଜୀବନରେ ଥରକ ପାଇଁ ଗୋଟିଏ ଅଭିଳାଷ କରିଥିଲା । ସମାଜକୁ କି କୈଫିୟତ୍ ଦେବ ?

ମାନ୍ୟବାନ୍‌ମାନେ ତାକୁ ଟେକି, ଘୋଷାରି ନେଇ ଥାନାରେ ଥୋଇଦେଲେ । ଅଭିଯୋଗ ମାରାତ୍ମକ, କେଜାଣି କାହିଁକି ମୋହ ମୁଗ୍‌ଧ

ସ୍ତବେ ମୁଁ ବ ଚାଣି ହେଇ ଗ୍ଲଲଗଲି ଥାନାକୁ । ଥାନାବାବୁ ଥିଲେ ମୋର ବାଲ୍ୟବନ୍ଧୁ । ଚୁପ୍ ହୋଇ ପାଖରେ ବସି ଶୀର ସିଂହ ବରୁଦ୍ଧରେ ଜନତା ଦ୍ୱାରା ଦାଖଲ କରାଯାଉଥିବା ଗୁର୍ଜସିଟ୍ ଶୁଣୁଥାଏ । ଶୁଣୁଥିବା କଥାକୁ ସତ ବୋଲି ବିଶ୍ୱାସ କଲେ, ସେଇ ମଣିଷମାନଙ୍କୁ ଧର୍ମ-ନକଡର ଧାରକ ବୋଲି ହିଁ କୁହାଯିବ ।

ପୋଲିସବାଲ୍ଙ୍କ ଭାଷା ତ ସବୁବେଳେ ଅଲଗା । ମୋ ବନ୍ଧୁ କେତେ ଲୋକଙ୍କୁ କେତେ କଥା କହିସାରି, ସେମାନଙ୍କ ଭିତରେ ଯିଏ ନେତା କସମ୍ବର ଜଣାପଡ଼ୁଥିଲା ତାକୁ କହିଲେ, "ହଇବେ ଶ... ସେଇ ମାଇକନା ପରି ଥରେ ତୋର ନାଁରେ କମ୍ପ୍ଲେନ୍ କରଥିଲା । ତୁ ତାକୁ ପଇସା ଦେଇ ନଥିଲୁ । ଭାଗ ସବ୍ ।"

ରହିଗଲା କେବଳ ଶୀର ସିଂହ, ଥାନାରେ ଥାନାବାବୁ ଓ ତାଙ୍କର ବନ୍ଧୁ ହିସାବରେ ମୁଁ । ପଞ୍ଜାବ ଶରଣାର୍ଥୀ ଶୀର ସିଂହର ଜୀବନ କାହାଣୀ ଶୁଣିଲି । କେମିତି ଭାରତକୁ ଆସିଲା, କେମିତି ଆମ ସହରକୁ ଆସିଲା । ସେ ଯେତେ ଯାହା କହିଥିଲା ତାହାର ଢଙ୍ଗ ଭିନ୍ନ ଥିଲା । କିନ୍ତୁ ମୋଟାମୋଟି ତାତ୍ତ୍ୱିକ ଭାବେ ତାହାକୁ ରୂପ ଦେଲେ ଏଇଆ ହେବ । ମୋ ରୂପ ଜଗତ ଘୃଣାକରେ । ସମସ୍ତେ ମୋତେ ଭିକାରି ହେବାକୁ ପରାମର୍ଶ ଦେଇଥିଲେ । ପରାଙ୍ଗ ପୁଷ୍ଟ ଲୋକମାନେ ଦାନ କି ଭିକ୍ଷା ଦେବେ, ତେଣୁ ମୁଁ ଭିକ୍ଷାକୁ ଘୃଣାକରେ, ମୋ ନିଜ ମନକୁ ମୁଁ ଅସୀମ ଶ୍ରଦ୍ଧା କରେ । ଏ ଇଚ୍ଛା ମନରେ କାହିଁ ଫୁଟି ଉଠିଲା ଜାଣେନା ।

ମୋ ବନ୍ଧୁ, ଥାନାବାବୁଙ୍କ ମନ ହଲଚଲ ହୋଇଯାଇଥିଲା । ଶୀର ସିଂହ ଖଡ଼ମ ନଥିବା ଖାଲି ହାତରେ ଗ୍ଲଲି ଗ୍ଲଲି ପଳାଇଥିଲା ।

ଦାସୀଙ୍କୁ ସୁନ୍ଦର ନାଚ/ଯୋଗୀଙ୍କୁ ସୁନ୍ଦର ମଠ/କେଳାଙ୍କୁ ସୁନ୍ଦର ହଟଚମଟ/ରାଜାଙ୍କୁ ସୁନ୍ଦର ଭାଟ/ଗୁରୁଙ୍କୁ ସୁନ୍ଦର ଗୃଟ/ଚୋରଙ୍କୁ ସୁନ୍ଦର କାଟ/ସୁନାଗୋଷ୍ଠ ପାଇଁ ପାଟ ସୁନ୍ଦର/ପ୍ରୀତିକୁ ସୁନ୍ଦର ହଟ ।

'ପୃଥିବୀର ଏତେ ସୁନ୍ଦର ଭିତରେ ତୁ କିଛି ନଥିଲୁରେ ଶୀର ସିଂହ । ତୋ' ପାଖରେ ଯାହା ସୁନ୍ଦର ଥିଲା ସେଇଆକୁ ମୁଁ ସଲାମ୍ କରୁଛି । ଦୟାକରି ଗ୍ରହଣ କରିବୁରେ'—!



# କସରତ୍

ପିମ୍ପୁଡ଼ିଠାରୁ ପୋଲିସ୍ ଡି. ଜି. ପର୍ଯ୍ୟନ୍ତ, ଏ ଦ୍ରବ୍ୟଟି କାହାର ନାହିଁ ? କଥା ଏତିକି, ନ ଦେଖେଇହେଲେ ମୋଟେ ଜଣାପଡ଼େନି । ଜଗତ ତା'ର ସ୍ୱାଭାବିକ ନିସ୍ପୃହ ଗତିରେ ଚାଲୁଥାଏ । କେଉଁ ମାନସିକ ଦୈନ୍ୟ ଯୋଗୁ ମଣିଷ କସରତ ପରି ଏକ ନକାରାତ୍ମକ ଆବେଗର ବଶବର୍ତ୍ତୀ ହୋଇପଡ଼େ ଅଥବା ଉଦ୍ଦେଶ୍ୟର ଏକ ସମ୍ପୂର୍ଣ୍ଣ ଭିନ୍ନରୂପା ଖୋଳପା ଭିତରେ ନିଜକୁ ଲୁଚାଇରଖି ଏପରି ଆଚରଣ ସୃଷ୍ଟିକରେ ଓ ନିଜେ ଚାଣିହୋଇ ଅପରକୁ ଦହଗଞ୍ଜ କରୁଥାଏ, ଏହା ନିଶ୍ଚୟ ମନସ୍ତାତ୍ତ୍ୱିକ ଚର୍ଚ୍ଚାର ଏକ ବୌଦ୍ଧିକ ଇଲାକା । ଏତେ ଗହନ ଚାଷକୁ ଯିବା ଦରକାର ନାହିଁ, ବାରି ହେବାପରି ଗୋଟିଏ କଥା ହେଲା—ଊଣା ମନ ଭରଣା ପାଇଁ ଯେତେବେଳେ ଆମେ ନିଜେ ନିଜେ ଲଘୁରୂପ ସୃଷ୍ଟି କରିପକାଉ ତାହାହିଁ ହୁଏ କସରତ ପ୍ରଦର୍ଶନର ଶିଳ୍ପ-ବିକାଶ । ଯଦି କେହି ଏପରି କରୁଥା'ନ୍ତି, ସ୍ୱୀକାର କରିବା ତ ଆଦୌ ସମ୍ଭବ ନୁହେଁ, କେବଳ ଭାବନ୍ତୁ—ନୁହେଁ କି ?

'ନାଲ୍‌ଏକ୍ କା ବର୍ଗ' ମୋର ପାଓ୍ୱାର ଅଛି କି ନାହିଁ 'ଦେଖ୍‌ନେ ଚାହତା ?'—ଏହି ମୁକୁଳା ଭାବ ଯାହାକୁ ନାଇଁ ତାକୁ ଗ୍ରାସ କରିଯାଉଛି । ଗଣତାନ୍ତ୍ରିକ ମୁଖବନ୍ଧ, 'ସେବା'ର ଠିକ୍ ଓଲଟା ।

ଗୋଟିଏ ମଜା ଘଟଣା ମନେପଡ଼ୁଛି । ଜଣେ ବାବୁ କଟକରେ ଘର ଖଣ୍ଡିଏ କଲେ । ସବୁ କଥା ସରିଗଲା । ବିଦ୍ୟୁତ୍ ସଂଯୋଗ ପାଇଁ ଦୌଡ଼ ଦୌଡ଼ି ନୟାନ୍ତ । ପ୍ରାୟ ଚାରିମାସ ବିତିଗଲା । ଏହି ସମସ୍ତ ଭିତରେ ଯେଉଁ କର୍ତ୍ତାଙ୍କ ସହିତ ସେ ଦିନ୍ ଦେଖା କରୁଥିଲେ ଓ ବିଭିନ୍ନ ପ୍ରକାର ବାହାନା ପେଖନା ଶୁଣୁଥିଲେ, ପରିଶେଷରେ ସେ କହିଲେ "ଆମେ କ'ଣ କରିବୁ ? ମିଟର୍ ପରା ନାହିଁ ।"

"ଆଜ୍ଞା ଦୁଇଲକ୍ଷ ଟଙ୍କା ଖର୍ଚ୍ଚ କରି ଘରଟିଏ କଲି । ଭଡ଼ା ଲାଗିଥିଲେ ପାଞ୍ଚ ଛ' ହଜାର ଟଙ୍କା ଏତେବେଳକୁ ପାଇସାରନ୍ତିଣି । ଏଇ କଥା କହିଥିଲେ ମୁଁ କ'ଣ ବଜାରରୁ ମିଟର୍‌ଟିଏ କିଣି ଆଣି ପାରିନଥାନ୍ତି ।"

"ନା' ରୁଲ୍ ପରମିଟ୍ କରୁନ ।"

ଶେଷକୁ କଥା ହେଲା ଏଇଆ ଯେ ଦୁ' ଲକ୍ଷ ଟଙ୍କା ଖର୍ଚ୍ଚ କରିଥିବା ଲୋକ କ'ଣ ଗୃହ ପାଣି ପାଇଁ ଦୁଇହଜାର ଟଙ୍କା ଦେଇପାରୁନ ? ବାବୁ ବଜାରରୁ ମିଟର୍ କିଣି ଗୃହ ପାଣି ଖର୍ଚ୍ଚ ଦେଇ ନିଜ ଘରକୁ ବିଦ୍ୟୁତ୍ ସଂଯୋଗ ନେଲେ । ଘରଭଡ଼ା ଲାଗିଲା ।

ପୂର୍ବ କଥାଟି ଏଇଠି ସରିଲାନି । ଇଲେକ୍ଟ୍ରିକ୍ କର୍ତ୍ତାଙ୍କର ଗୋଟିଏ ବେନାମୀ ହୋଟେଲ ତିଆରି ସରିଥାଏ । ସାର୍ଟିଫିକେଟ୍ ଓ ବାର୍ ଲାଇସେନ୍ସ ପାଇବାପାଇଁ ସବୁ ମହଲରେ ସବୁ କାମ ସାରିଦେଇଥାନ୍ତି । ଯେଉଁଠୁ ଅସଲ କାଗଜ ମିଳିବ ସେଇଠି ଯାଇ ଦେଖିଲା ବେଳକୁ ପୂର୍ବୋକ୍ତ ଘରବାବୁ ଜଣକ ସେଠିକା ଗୁର୍ଜ୍ଜରେ । ଏଥର ଏ ବାବୁ ଦୌଡ଼ ଦୌଡ଼ ନସ୍ୟାନ୍ତ । ଗୋଟିଏ ମାତ୍ର କୈଫିୟତ୍ "ଫାଇଲ୍ ମିଳୁନ ।" ଇଏ ତ ଆଉ ମିଟର୍ ନୁହେଁ ଯେ, ବଜାରରୁ କିଣିଆଣି ହେବ ? ବିରକ୍ତ ହୋଇ ଇଲେକ୍ଟ୍ରିକ୍ ବାବୁ କହିଲେ, "ତିରିଶ ଲକ୍ଷ ଟଙ୍କା ଖର୍ଚ୍ଚ କରିସାରିଲିଣି, କ'ଣ ଖେଳଘର ପଡ଼ିଛି, କେତେଦିନ ଆଉ ଦୌଡ଼ୁଥିବି ?"

ସହଜ ଉତ୍ତର ଆସିଲା, "ଆଜ୍ଞା ଗୃହ ପାଣି ପାଇଁ ତିରିଶ ହଜାର ଖର୍ଚ୍ଚ କରିଦିଅନ୍ତୁ । ଫାଇଲ୍ ଖୋଜି ବାହାର କରିଦେବା ।"

ବାବୁଙ୍କର ପଞ୍ଚମ ଶ୍ରେଣୀ ଅଙ୍କ ମନେପଡ଼ିଗଲା । ଦୁଇ ଲକ୍ଷକୁ ଦୁଇ ହଜାର, ତିରିଶ ଲକ୍ଷକୁ ତିରିଶ ହଜାର । ଶତକଡ଼ା ହିସାବ ଏକଦମ୍ ଠିକ୍ । ଉଭୟଙ୍କ ଆଚରଣ ସମୀଚୀନ ନୁହେଁ, ମାତ୍ର ଶେଷୋକ୍ତ କଥାଟି ଉଚିତ ପ୍ରତିବାଦ ପରିସ୍ଥ ଲାଗୁଛି ।

ଇଏ ଥିଲା ଅର୍ଥନୈତିକ ଲଘୁରୂପ ପରିସ୍ଥିତି । ଏକା କଥା ଅଣ-ଅର୍ଥନୈତିକ ଇଲାକାରେ ବି ଘଟିପାରେ । ଆମ ଗରିବ ଦେଶରେ ଅନେକ ସାମ୍ବାଦିକ ସାଇକେଲ ଚଢ଼ିବାକୁ ପାଆନ୍ତିନ, ଦରମାପତ୍ର କଥା ନ କହିଲେ ଚଳିବ । କିନ୍ତୁ ସେଇ ଭିତରେ କେତେକ ଅଛନ୍ତି, ଯାହାଙ୍କୁ କୁହାଯାଏ 'ରେପ୍ଟାରେଷ୍ଟ-ଅଫ୍-ଦି-ରେପ୍ଟାର ।'

ନିକଟରେ ଗୋଟିଏ ଘଟଣା ଘଟିଛି । ଯେ କୌଣସି ସରକାରୀ କାର୍ଯ୍ୟକ୍ରମକୁ ଗାଡ଼ି ପଠା ନ ଗଲେ ସାମ୍ବାଦିକମାନେ ଯାଆନ୍ତି ନାହିଁ ।

ଏ ଅଭିଜ୍ଞତା ଲେଖକ ରହୁଥିବା ସହରର କଥା । ଏ ସବୁ ମାମଲାରେ ଯେଉଁ ବିଭାଗ ଦ୍ୱାରା ଶଙ୍ଖ ହୁଳହୁଳୀ ଶବ୍ଦ ସୃଷ୍ଟି କରାଯିବା କଥା, ନାଁ ନ କହିଲେ ବି ପାଠକେ ବୁଝିସାରିବେଣି ।

ସେହି ବିଭାଗର କର୍ତ୍ତା ଜଣେ ସାମ୍ବାଦିକଙ୍କୁ କହିଲେ—ଆଜ୍ଞା, ଆପଣଙ୍କ ନିବାସରେ ଏତେଟା ବେଳେ ଗାଡ଼ି ପହଞ୍ଚିବା କୌଣସି ଯାନ୍ତ୍ରିକତ୍ରୁଟି ଯୋଗୁ ଠିକ୍ ସମୟରେ ଗାଡ଼ିଟି ପହଞ୍ଚି ପାରିନଥିଲା ବୋଲି ଶୁଣୁଛି । ସାମ୍ବାଦିକ ମହୋଦୟ ସମ୍ବାଦ ସଂଗ୍ରହ କାର୍ଯ୍ୟ ଛାଡ଼ିଦେଇ ପାରିଲେ ମାତ୍ର ତା' ପଛକୁ ଥିବା 'ଡିନର୍' ବେଳକୁ ଆସି ହାଜର ହୋଇଗଲେ । ଗାଡ଼ି କାହିଁକି ଠିକ୍ ସମୟରେ ନ ପହଞ୍ଚିଲା, ସରକାର କେତେ ଦୁର୍ନୀତିଗ୍ରସ୍ତ ହୋଇସାରିଲାଣି, ସରକାରୀ ଅଫିସରଗୁଡ଼ାକ ମଣିଷ ମାନୁନାହାନ୍ତି ଆଦି ଅଭିଯୋଗ କରି ଇଂଲିଶ୍‌ରେ ଗାଳିଦେଲେ । ଅନ୍ୟ ପ୍ରଭାବରେ ଏପରି ଅସମ୍ଭବ ଆଚରଣ ଦେଖି ଅନ୍ୟମାନଙ୍କୁ ଲାଜ ମାଡ଼ୁଥାଏ ।

ସେଇଠି ଉପସ୍ଥିତ ଥିବା ବଡ଼ହାକିମ, ଦୋଷୀ ପରି ମୁହଁ ଫୁଲେଇ କାନ୍ଦୁଥିବା ହାକିମଙ୍କୁ ଆଡ଼ୁଆଳକୁ ଡାକି କହିଦେଲେ, ତୁମେ ବ୍ୟସ୍ତ ହୁଅନା, ୟାଙ୍କ ଲେଖା ପୃଥିବୀର କୌଣସି କାଗଜରେ ବାହାରେ ନାହିଁ । ଏଣିକି ୟାଙ୍କ ପାଖକୁ ଗାଡ଼ି ନ ପଠାଇଲେ ଚଳିବ ।

କିନ୍ତୁ ଆମ ବିହିପ ଟାଣ, କାରଣ ଆମ ହାତରେ କଲମ ଅଛି । ଆମେ ଆଉ କେଉଁ ଢଙ୍ଗରେ ଖେଞ୍ଚି ଦେଇପାରୁ । ନାଲ୍ଏକ୍, ଦେଖିନେ ଗୁରୁତା ? ଏପରି ଭାବ ଲଘୁଗୁପ ବା ଗୁରୁଗୁପ—ପାଠକେ ବିଚାର କରନ୍ତୁ ।

□ □

# ଅନ୍ୟ ଯୁଗ ଯୁଗାନ୍ତର

ବିଶିଷ୍ଟ ଅର୍ଥନୀତିଜ୍ଞ ଜାଓଫର୍ Geoffrey (Crowther)ଙ୍କର ଗୋଟିଏ ଉକ୍ତି : "Every branch of knowledge has its fundamental discovery. In mechanics it is the wheel, in science fire, in politics vote. Similarly, in economics...money is the essential, on which all the rest is based".

ଏହି ଉକ୍ତିଟିକୁ ଏଇଥି ସକାଶେ ଉଦ୍ଧାର କରିବାକୁ ହେଲା ଯେ ଜାଓଫର୍ ସାହାବ ଏବେ କୋଉ ପୁରୁଣା କାଳର ଲୋକ କି ତାଙ୍କ ଚିନ୍ତାରେ ଖ୍ରେଟ୍ କେବଳ ରାଜମାତ୍ରର ନବରତ୍ନ ମୁଦ୍ରିକା ବୋଲି ସେ ଭାବିଦେଲେ । 'Means to an end' ବୋଲି ଯାହା କୁହାଯାଏ, ଖ୍ରେଟ୍ ଏବେ 'end' ନୁହେଁ—ଅସଂଖ୍ୟ ଭିତରୁ ତାହା ଗୋଟାଏ 'means' ହୋଇଯାଇଲାଣି । ସେ ଅର୍ଥନୀତି ବର୍ଣ୍ଣନା କରୁ କରୁ ଖ୍ରେଟ୍ କଥା କାହିଁକି କହିବାକୁ ଯାଉଥିଲେ ? ବୋଧେ ଭାବିଥିବେ, ତାଙ୍କ କହିଥିବା ଉଦାହରଣ ଲୋକେ ସହଜରେ ବୁଝିପିବେ ବୋଲି । କିନ୍ତୁ ଯୁଗ ଯେ ଇଲେକ୍‌ଟ୍ରୋନିକ୍ ସ୍ପିଡ଼୍‌ରେ ଧାବମାନ ! ଠାକୁରେ କରିଛନ୍ତି ସେ ନାହାନ୍ତି, ନ ହେଲେ ଏବକାର କଥା ଯଦି ଫେଣେଇ ଫେଣେଇ କହି ପକାଇଥା'ନ୍ତେ ତାହା ଅଲବତ୍ ଆମ ପାଇଁ ବେଧ ବୁଜୁକାବତ୍ ନେଣ୍ଟା ହୋଇ ଇତିହାସ ସାଜି ଆମର ଉତ୍ତର ପୁରୁଷଙ୍କୁ ଛୁଗୁଲେଉଥା'ନ୍ତା ।

କାଳର ପ୍ରଖର ଗତିରେ ସବୁକଥା ଓଲମ୍ବଲମ୍ ହୋଇଯାଏ । ସ୍ୱାଭାବିକ ମଧ୍ୟ । ପ୍ରାଚୀନ-ପ୍ରସ୍ତର ଯୁଗରେ ଯେଉଁ ମଣିଷ ପଥରକୁ ଘଷି ଘଷି ଅସ୍ତ୍ର ତିଆରି କରି ପଶୁଶିକାର କରୁଥିଲା ଓ ତାକୁ ସେମିତି କଞ୍ଚା ଖାଇଯାଉଥିଲା, ତା' ପାଇଁ 'ମନି'ର କି ଅର୍ଥ ଥିଲା ?

ଯୁଗର ପରିବର୍ତ୍ତନ ସହିତ ଚିନ୍ତନର ପରିବର୍ତ୍ତନ ହୋଇଥାଏ । ମାତ୍ର ଉଭୟର ତାଳ—ମାସା ଚବିଶ କ୍ୟାରେଟ୍ ବା ଟଙ୍କାରେ ଷୋ'ଳଣାରୁ, ଷୋ'ଳଣା ଏକଥା କେହି ଗ୍ୟାରେଣ୍ଟି ଦେଇ କହିପାରିବେନି । କେତେବେଳେ

ଇଏ ଆଗକୁ ଗ୍ଳଲ ଯାଉଥାଏ ତ ଆଉ କେତେବେଳେ ସିଏ । ଯାହେଉ, ଝଣାଝଣି ହୋଇ ଗ୍ଳଲୁଥା'ନ୍ତି ।

ଥରେ ଜଣେ ବନ୍ଧୁଙ୍କ ଘରେ ପହଞ୍ଚି ଯାହା ଶୁଣିଛୁ, ତାହା ମୋତେ ଲପରେ ଲାଗିଥିବ, ସେଇ କଥାର ବଣ୍ଟର ପାଇଁ ପାଠକମାନଙ୍କ ନିକଟରେ ସମ୍ପୂର୍ଣ୍ଣ ବୃତ୍ତାନ୍ତ ବର୍ଣ୍ଣନା କରିଦେଉଛୁ ।

ପହଞ୍ଚି ପହଞ୍ଚି ବନ୍ଧୁ-ପତ୍ନୀ କହିଲେ—"ସ୍ୱାଙ୍କୁ ଟିକେ କହିଦେଲ, ସେ ବୁଲ୍‌ଟୁ କଥାରେ ହଁ ମାରିଦିଅନ୍ତୁ ।"

ବୁଲ୍‌ଟୁ ତାଙ୍କ ପୁଅ । ବୟସ ଦଶବର୍ଷ ଭିତରେ । ଇଂଲିଶ୍-ମିଡ଼ିଅମ୍ ସ୍କୁଲ୍‌ରେ ପଢ଼େ । ସେ କ'ଣ ପାଇଁ ଜିଗର କରିଛି ବା ମୋ ବନ୍ଧୁ କେଉଁ କଥାରେ ହଁ ମାରିଦେଲେ ସବୁ ସମସ୍ୟାର ସମାଧାନ ହୋଇଯିବ ସେକଥା ନଶୁଣି ନବୁଝି ମୁଁ କାହିଁକି ବା ତାଙ୍କୁ ହଁ ମାରିବାକୁ ପ୍ରବର୍ତ୍ତାଇ ଥା'ନ୍ତି ? ତେଣୁ ଭୁନହୋଇ ବାପ-ପୁଅଙ୍କ ପାଖରେ ଯାଇ ବସିପଡ଼ିଲି ।

ପୁଅ କହୁଥାଏ, ଭାରତରେ ସମୁଦାୟ ତିନୋଟି ଗାନ୍ଧୀ । ଜଣେ କଙ୍ଗ୍ରେସ୍ ଗାନ୍ଧୀ (ଆଟେନ୍‌ବରୋଙ୍କ 'ଗାନ୍ଧୀ' ଚଳଚ୍ଚିତ୍ରର ବେନ୍ କଙ୍ଗ୍ସ୍‌ଲେ), ପ୍ରଧାନମନ୍ତ୍ରୀ ଥିଲେ ସିଏ ଇନ୍ଦିରା ଗାନ୍ଧୀ ଓ ରାଜୀବ ଗାନ୍ଧୀ । ବାପ ବୁଝେଇ ବୁଝେଇ ନୟାନ୍ତ ହେଲେଣି ଯେ କଙ୍ଗ୍ସ୍‌ଲେ ମହାତ୍ମା ଗାନ୍ଧୀଙ୍କ ଭୂମିକାରେ ଅଭିନୟ କରିଥିଲେ । ଅସଲ ମହାତ୍ମା ଗାନ୍ଧୀ ଆମର ସ୍ୱାଧୀନତା ଆଣିଛନ୍ତି । କୁଳାଙ୍ଗାର, ତାଙ୍କୁ ଚିହ୍ନିବନି ? ଇତିହାସ ଭୁଲିଯିବ ?

ବୁଲ୍‌ଟୁ ଦୋହରାଇ ଦୋହରାଇ ପଗ୍ଳରୁଥାଏ, ମହାତ୍ମା ଗାନ୍ଧୀ ବୋଲି ଯାହାକୁ କହୁଚ ସିଏ କୋଉ ପୋଷ୍ଟରେ ଥିଲେ ?

ବନ୍ଧୁଙ୍କ କୁଳ-ଲକ୍ଷଣ ବୁଲ୍‌ଟୁକୁ ମୁଁ ଯେମିତି ଜାଣେ, ସେ ତଗଲଟିଏ ସତ କିନ୍ତୁ ଖୁବ୍ ବୁଦ୍ଧିଆ । ବାପା ଯେତେବେଳେ ତାକୁ ଇତିହାସ କଥା କହି ଗାଳିଦେଲେ ସେ ଏମିତି ଗୋଟିଏ ଅଭିନବ ପ୍ରଶ୍ନ କଲା ଯେ ଦେଖଣାହାର ଭାବେ ବସିଥିବା ମୁଁ ବି ଭେବଲା ହୋଇଗଲି । ତା'ର ପ୍ରଶ୍ନ ଥିଲା, 'ଲିଜେଣ୍ଡ' 'ଏପିକ୍'ରେ ପରିଣତ ହେବାକୁ କେତେ

ସମୟ ଲାଗେ ? ଗତବର୍ଷ ଇତିହାସ ବହିରେ ଅଉରଙ୍ଗଜେବ୍‌ଙ୍କୁ ଜଣେ କ୍ରୂର ଓ ହିନ୍ଦୁ-ବିରୋଧୀ ରାଜା ବୋଲି ଆମକୁ ପଢ଼ା ଯାଇଥିଲା; ମାତ୍ର ଏ ବର୍ଷ ବହିଟିରେ ସେ ଜଣେ ଅତ୍ୟନ୍ତ ଧର୍ମପରାୟଣ, ଦାନୀ ଓ ଧର୍ମନିରପେକ୍ଷ ରାଜା ଥିଲେ ବୋଲି ବର୍ଣ୍ଣନା କରାଯାଇଛି । ଏତିକ କହୁ କହୁ ସେ ଦୁଇଟି ଯାକ ଇତିହାସ ବହି ର୍‍ୟାକ୍‌ରୁ ଟାଣିଆଣିଲା ।

ଲଢ଼େଇରେ ଭୂଷାଭୂଷି ହେଉଥିବା ଦୁଇ ଷଣ୍ଢଙ୍କ ଭିତରୁ ଆପାତ ପରାଜୟ ଆଶଙ୍କା କରି ଗୋଟିଏ ଯେମିତି ସେଇ ଭିତରେ ପଛଆଡ଼ୁ ଆ ପଳାଇଯିବା ପାଇଁ ଟେରେଇ ଟେରେଇ ବାଟର ନକ୍‌ସା ଖୋଜୁଥାଏ, ବାପାଙ୍କ ଅବସ୍ଥା ପାଖାପାଖି ସେଇ କାଟରେ ପହଞ୍ଚିଗଲାଣି । ସେ ଭ୍ରୁକୁଞ୍ଚିଟାଏ ପକାଇ କହିଲେ, "ସେ ବହିଫହି କଥା ଛାଡ଼ । ତା'ହେଲେ ଅରୁଣ ଗୋଭିଲ୍ କ'ଣ ରାମଚନ୍ଦ୍ର ?"

ବୁଲ୍‌ଟୁ ତହିଁ ଆରେକ । ସେ କହିଲା, "ତୁମ ଗାନ୍ଧୀ ତାହେଲେ ରାମଚନ୍ଦ୍ରଙ୍କ ପରି ପୁରାଣର କଳ୍ପନା, ନା ? ଏମିତିକା ଗପ ଲେଖାରେ ଯେତେ ଗାନ୍ଧୀ ବାହାରିବେ, ଆମେ କ'ଣ ସମସ୍ତଙ୍କୁ ପୂଜା କରୁଥିବା ?"

ବାପାଙ୍କ ଅକଲଗୁଡ଼ୁମ୍ । ସେ ଆଉ ଗୋଟେ ଲାଇନ୍ ଧରି କହିଲେ, "ବକ୍‌ବକ୍ କରନା, ଅକ୍ଟୋବର ଦୁଇ ତାରିଖରେ ଯେଉଁ ଗାନ୍ଧୀ ଜୟନ୍ତୀ ହେଉଛି ତାକୁ ଏଣିକ ଗ୍ରାଭିମତ ଦେଖିବୁ ଟି.ଭି.ରେ ।"

ବୁଲ୍‌ଟୁ କହିଲା, "ଟି.ଭି.ରେ ଯେମିତି ରାମନବମୀ ଆମେ ଦେଖୁନୁ କି ?"

ଅସହାୟ ବାପା ଛଥିପଟରେ ପଚାରିଲେ, "ହଇରେ, ତୁମ ଇସ୍କୁଲ୍‌ରେ ସାର୍ ବା ମିସ୍‌ମାନେ କ'ଣ ଗାନ୍ଧୀଙ୍କ ବିଷୟରେ ତୁମମାନଙ୍କୁ କିଛି କହୁନାହାନ୍ତି ?"

"ହଁ କହୁଛନ୍ତି । ରାଜୀବ ଗାନ୍ଧୀଙ୍କ କଥା କହନ୍ତି । କେବେ କେମିତି ଇନ୍ଦିରା ଗାନ୍ଧୀଙ୍କ କଥା କହନ୍ତି । ଟି.ଭି.ରେ ରାଜୀବ ଗାନ୍ଧୀ ସବୁବେଳେ ଇନ୍ଦିରା ଗାନ୍ଧୀ ଓ ଜବାହରଲାଲ ନେହରୁଙ୍କ କଥା କହୁଥିବା ଆମେ ଶୁଣୁଛୁ । ଆଉ କୋଉ ଗାନ୍ଧୀ କଥା କେହି ତ କୋଉଦିନ କହନ୍ତିନି ।

ସିନେମା ଗାନ୍ଧୀକୁ ମୁଁ ମନେରଖିଛୁ, ସେଥିପାଇଁ ମୁଁ କହିଦେଲି ଗାନ୍ଧୀ ତିନଜଣ'', ଏହା ଥିଲା ବୁଲ୍‌ଟୁର ଉତ୍ତର ।

ଏହି କଥୋପକଥନ ଶୁଣି ମୁଁ କେତେକ ପରିମାଣରେ ବିସ୍ମିତ ଓ ସବୁଠାରୁ ବେଶି ଆମୋଦିତ ହୋଇପଡ଼ିଥିଲି । ଠିକେ ସନ୍ଦେହ ହେଲା, ବୁଲ୍‌ଟୁ ଜାଣିସିଆଣା ଭାବେ ବଦମାସି କରୁନାହିଁ ତ ? ମୁଁ ତାକୁ ପଚାରିଲି, ''ଆଚ୍ଛା କହିଲୁ ୧୯୪୭ ପୂର୍ବରୁ ଭାରତକୁ କିଏ ଶାସନ କରୁଥିଲେ ?''

''ଇଂରେଜମାନେ ।''

''ସେମାନେ କେମିତି ଗଲେ ?''

''ରାଜୀବ ଗାନ୍ଧୀଙ୍କ ପୂର୍ବପୁରୁଷ ସେମାନଙ୍କୁ ତଡ଼ିଦେଲେ ।''

''କିଛି ଆନ୍ଦୋଳନ, ସଂଗ୍ରାମ, ଯୁଦ୍ଧ ବା ବଡ଼ଧରଣର ଘଟଣା ହୋଇଥିଲା କି ?''

''ଲବଣ ସତ୍ୟାଗ୍ରହ, ଦାଣ୍ଡି ଯାତ୍ରା, ଅହିଂସା ଆନ୍ଦୋଳନ ଆଦି ହୋଇଥିଲା ବୋଲି ବହିରେ ଲେଖା ଅଛି ।''

''କାହା ନେତୃତ୍ୱରେ ?''

''ଲବଣ ସତ୍ୟାଗ୍ରହ ଓ ଦାଣ୍ଡି ଯାତ୍ରା ଏବେ ରାଜୀବ ଗାନ୍ଧୀ କଲେ । ଅହିଂସା ଆନ୍ଦୋଳନ କ'ଣ ଆମେ କେହି ଜାଣିପାରୁନାହୁଁ,'' ଏହା ଥିଲା ତା'ର ଉତ୍ତର ।

''ପୃଥିବୀକୁ ମହାତ୍ମାଗାନ୍ଧୀ ପ୍ରଥମ ବାଟ ଦେଖାଇଥିଲେ ଯେ ଅହିଂସା ଉପାୟ ଅବଲମ୍ବନ କରି ମଧ୍ୟ ଆନ୍ଦୋଳନ କରାଯାଇପାରେ ବୋଲି । ସେ ଆମ ଜାତିର ପିତା'', ମୁଁ କହିଲି ।

ଦେଶକୁ ଜାତି ବୋଲି କହି, ହିଂସାକୁ ଅହିଂସା ବୋଲି କହି ଆମେମାନେ କୁଆଡ଼େ ପିଲାଙ୍କ ମନକୁ ଅବୁଝା ଓ ଅଡ଼ୁଆତଡ଼ୁଆ କରି ଦେଉଛୁ—ଏହିପରି ଏକ ଅଭିଯୋଗ ସହକାରେ ବୁଲ୍‌ଟୁ କହିଲା, ''ଅଙ୍କଲ୍, ବୋଧହୁଏ ବୟସରେ ବଡ଼ ହୋଇଗଲେ ମଣିଷ ସବୁକଥା ଜାଣିର

କରିବାକୁ ଇଚ୍ଛା କରେ ଓ ନିଜ ସୁବିଧା ପାଇଁ ସେ ଯାହା କୁହେ ତାହାକୁ ସତ ବୋଲି ବିଶ୍ୱାସ କରାଇବା ପାଇଁ ତୁଆମାନଙ୍କୁ ଯେ ବାଧ୍ୟ କରେ ।"

ବାପା ଆଉ ବୋଧେ ସହିପାରିଲେନି । ନିଜ ସିଟ୍‌ରୁ ଉଠିଆସି ବୁଲ୍‌ଟିକୁ ଜୋର୍‌ରେ ଚଟକଣିଟାଏ ମାରିଲେ । ତା'ପରେ ଅବସ୍ଥା ସମ୍ପୂର୍ଣ୍ଣ ବଦଳିଗଲା । ଅହିଂସା କ'ଣ ଜାଣିବାକୁ ଗୃହୁଁ ଥିବା ପିଲାଟି ତା' ପୂର୍ବ-ପୁରୁଷଙ୍କ ଅସହାୟତାର ଶିକାର ହୋଇଗଲା । ହାଉଦର୍ ସାହେବ ଯଦି ଏବେ ତାଙ୍କ ତତ୍ତ୍ୱ ଲେଖିଥା'ନ୍ତେ ତାହାଁରେ ସେ ଶେଷଆଡ଼କୁ ଏମିତି କିଛି କଥା ଯୋଡ଼ିଥା'ନ୍ତେ ଯାହାର ଅର୍ଥ ହୋଇଥା'ନ୍ତା, କ୍ଷମତା ଓ ପ୍ରଭୁର 'On which all the rest is based' ।

କାନ୍ଦୁଥିବା ବୁଲ୍‌ଟିକୁ ନିଜ ଗାଡ଼ିରେ ବସାଇ ନେଇଗଲି ଆଇସ୍‌କ୍ରିମ୍ ଖୁଆଇବାକୁ । ପଛରୁ ବାପା କହୁଥା'ନ୍ତି—ବାଜେ ପିଲାଟା, ଅବାଧ୍ୟ ପିଲାଟା !

ବାଜେ ବା ଅବାଧ୍ୟ କିଏ ?



# ହାତୀଦାନ୍ତ

ଶାମ୍ ପେଟ୍ରୋଡ୍ରାଙ୍କୁ ଧନ୍ୟବାଦ । କେବଳ ଗାନ୍ଧୀବାଦର ଇଲେକ୍‌ଟ୍ରୋନିକ୍ ବ୍ୟାଖ୍ୟା କରିଛନ୍ତି ବୋଲି ନୁହେଁ, ବରଂ ତଦ୍ୱାରା ସେ ଯୁଗର ପରିବର୍ତ୍ତନ ସମ୍ପର୍କରେ ସୂଚନା ଦେଇ ଜନସାଧାରଣଙ୍କୁ ସଚେତନ କରାଇଦେଇଛନ୍ତି—ହୁସିଆର୍ ହୋଇ ଯା', ଏକବିଂଶ ଶତାବ୍ଦୀ ଆସୁଛି !

ଆମ ଏ ଧରାଧାମ ଯେତେ ପ୍ରକାର ଅଲୌକିକ, 'ବା-ବା-ରେ-ଆଲୁଅ' ପରି ଚମତ୍କାରିତାରେ ପହଞ୍ଚୁଛି କଦାପି ସବୁ ଆକସ୍ମିକ ନୁହେଁ । ଜୀବନ ଯେଉଁ ଯୁଗରୁ ଆରମ୍ଭ ହୋଇଥିବ, ସାରା ପୃଥିବୀର ମଣିଷଗୁଡ଼ାକ ସେଇଦିନୁ ସାଧନାରତ ହୋଇପଡ଼ିଥିବେ : ସେମାନେ ନିଶ୍ଚୟ କିଛି ଉଦ୍ଭାବନ କରିବେ, କିଛି ଆବିଷ୍କାର କରିବେ । ଆଜି ଯାହା ନୂଆ କାଲି ପୁରୁଣା ହେବ, ଆମେ ତାକୁ ତ୍ୟାଗ କରିବୁ । ଇଏ ଏକ ନିତ୍ୟନୈମିତ୍ତିକ ପ୍ରକ୍ରିୟା । ସବୁଦିନେ ଚାଲୁଥିବ ।

ଇଟା ଉପରେ ଇଟା ବା ପଥର ଉପରେ ପଥର ଲଦାହୋଇ ତିଆରି ହୋଇଥିବା ଇମାରତକୁ ଆମେ ପ୍ରଶଂସା କରୁ । କଦାପି ମୂଳଦୁଆକୁ ନୁହେଁ । ହଁ, ଯଦି କେବେ କାଳର ପ୍ରବାହ ଯୋଗୁ ଇତିହାସ ସହ ଇମାରତ ଧ୍ୱଂସ ହୋଇଯାଏ, ପ୍ରତ୍ନତାତ୍ତ୍ୱିକ ସନ୍ଦର୍ଭ ଲେଖାଯାଏ ମୂଳଦୁଆ ଉପରେ । ପର୍ଜନ୍ୟର ନିନାଦ ସୃଷ୍ଟି କରାଯାଏ ଆମେ ପାଇଗଲୁ ହୋ ! ସବୁ ଉଦ୍ଭାବନ ଭବିଷ୍ୟତରେ ମଣିଷ ଜାତି ପାଇଁ ଯେ ମଙ୍ଗଳମୟ ହୁଏ, ଏମିତି କୌଣସି ଗ୍ୟାରେଣ୍ଟି ନାହିଁ । ଏ କଥାର ଅସଂଖ୍ୟ ପ୍ରମାଣ ଅଛି—ମାଙ୍କଡ଼ ହାତରେ ବନ୍ଧୁବାର ଶାଳଗ୍ରାମ ପଡ଼ିଛି ।

ଶାମ୍‌ଙ୍କ ଇଲାକାକୁ ଆସିବା । ଅନେକ ସହର ପରି ଆମ ସହରରେ ଟେଲିଫୋନ୍ ଲଟେରୀ ଟିକେଟ୍ ପରି, ସମ୍ପୂର୍ଣ୍ଣ ଅକସ୍ମାତିଆ କଥା । କେଜାଣି ହୁଏତ 'ଏ-ଫିଉ-ଫର୍ଚୁନେଟ୍' କୋଉଠି ଥାଇପାରନ୍ତି ବା

ସେଇ କିସମ୍‌ର ବଡ଼ ବଡ଼ ସହର କୋଉଠି ଥାଇପାରେ, ଆମ ଓଡ଼ିଶାରେ ନାହିଁ । ମୋତେ ଯଦି ଜଣେ ପ୍ରମାଣିତ ଅହାର ଆସ୍ପର୍ଦ୍ଧା-ସମ୍ପନ୍ନ ବ୍ୟକ୍ତିଙ୍କୁ ଖୋଜିବାକୁ କୁହାଯାଏ, ମୁଁ ଅନାୟାସରେ ଏପରି ଜଣେ ବାବୁଙ୍କୁ ଖୋଜିବୁଲିବି ଯିଏ ରିସିଭର୍ ଉଠାଇବା ପୂର୍ବରୁ ଭରସା ସହ ରହିପାରୁଥିବେ, 'ମୁଁ ନିଶ୍ଚୟ ଲାଇନ୍ ପାଇଯିବି' ।

ଆପଣ ଅଭିଯୋଗ କରନ୍ତୁ ବା ରିମାଇଣ୍ଡର୍ ଦିଅନ୍ତୁ, ଯଦି ସେ ପଟରେ କେହି ପ୍ରିୟ ସହକାରୀ ବାବୁ ମଧ୍ୟ ଥା'ନ୍ତି, ତାହେଲେ ଡି. ବି., ସିଲେକ୍ଟର, କେବୁଲ୍ କ୍ୟାରିଅର୍, ଆର୍ଥାଙ୍ଗ୍ ଆଦି କେତେକ କଥା ଆଶ୍ୱାସନା ଢଙ୍ଗରେ ଶୁଣିବେ । ଯାହାକୁ ଇଂରାଜୀରେ କୁହାଯାଏ 'ଜାର୍‌ଗନ୍' ( ଅର୍ଥ ଥିବା ଅବୋଧ୍ୟ ଭାଷା ) । ସାଧାରଣ ଲୋକଙ୍କର ଏତେକଥା ବୁଝିବାକୁ ଜ୍ଞାନ ଥିଲେ ତ ? ଏହା ସହିତ ଆଉ ଗୋଟିଏ କଥା ଆସୁଛି । ଖୋଷଣି ଖୋଲି ଯେଉଁ ପଇସା ଦିଆଯାଉଛି ତାହା ତ ଜ୍ଞାନ-ଟିଉସନ୍ ପାଇଁ ଦିଆଯାଉ ନାହିଁ । ଦିଆଯାଉଛି ସେବା ପାଇଁ । ସେଲୁନ୍‌ବାଲା କୁଆ ଝୁମ୍ପି ଲି ପରି ବାଳ କାଟିସାରି, କୈଫିୟତ ସ୍ୱରୂପ ଯଦି ଏହିପରି କିଛି 'ଜାର୍‌ଗନ୍' ବ୍ୟବହାର କରେ, ପଇସା ନଦେବା ତ ଅତି ସାଧାରଣ କଥା, ଆମେ ତାକୁ ମାଫ୍ କରିବା କି ?

ଟେଲିଫୋନ୍ ମାମଲାରେ ସରକାର ହେଉଛନ୍ତି ମେରି ଖୁଣ୍ଟ । ପୂଜମାପୂ ଗ୍ରାହକଗଣ ଯୋଚ୍ଚହୋଇଥିବା ବଳଦ । ହଲ୍‌ଚଲ୍ ହେବାର ଜୁ ନାହିଁ । 'ରୁକାଓ୍ୱଟ୍ କେ ଲିଏ ଖେଦ୍ ହେ' ପରି ଗୋଟାଏ କିଛି କହିଦେଲେ କାମ ସରେ ।

ଏ ଲେଖକ ଦିନକର ଅଭିଜ୍ଞତା ବର୍ଣ୍ଣନା କରୁଛି । ଟେଲିଫୋନ୍ ପରି ନୀରସ ଯନ୍ତ୍ରରୁ ସେଦିନ ଅସୀମ ସରସତା ମିଳିଥିଲା ମୋତେ । ମିଳିଥିଲା ବା ଅବଚେତନ ଭାବେ ମୁଁ ସମଗ୍ର ଘଟଣାରୁ ସରସତା 'ସଂଗ୍ରହ' କରିଥିଲି, ଏଥିରୁ କେଉଁଟି ଠିକ୍, ତାହା କହିପାରିବି ନାହିଁ । କିନ୍ତୁ ବିଶ୍ୱାସ ଲାଗୁଛି, ମୁଁ ଯେଉଁ ଅନୁଭୂତିକୁ ସରସତା ବୋଲି ବିଚାରିନେଲି, ୧୮୭୬ରେ ଟେଲିଫୋନ୍ ଉଦ୍ଭାବନ ବେଳେ ଆଲେକ୍‌ଜାଣ୍ଡ୍ରର୍ ଗ୍ରାହମ ବେଲ୍ ଯଦି ସମାନ ଅବସ୍ଥାର ସମ୍ମୁଖୀନ ହୋଇଥା'ନ୍ତେ ତାହେଲେ ହୁଏତ ସେ ତାଙ୍କ

‘ପ୍ରୋଜେକ୍ଟ’ ସମୂଳେ ବନ୍ଦ କରିଦେଇଥା’ନ୍ତେ ଅଥବା ପେଟ୍ରୋଭ୍ରାଙ୍କ ପରି ଟେଲିଗ୍ରାଫ୍‌ର ଆଉ କିଛି ଗୁଣ ବଖାଣିଥା’ନ୍ତେ । ଫଳ ସ୍ୱରୂପ, ଏ ପୃଥିବୀ ଟେଲିଫୋନ୍ କ’ଣ ସେକଥା ଆଉ ହୁଏତ ଜାଣିବାକୁ ପାଇ ନ ଥା’ନ୍ତା ।

କଥାଟି ଥିଲା ଏହିପରି । ନିଜ ଟେଲିଫୋନ୍‌ର ରିସିଭର୍ ଉଠାଇ ଉଠାଉ ଗୋଟିଏ ନାରୀ କଣ୍ଠରୁ ଶୁଣାଗଲା, “ସେଦିନ ଆମ ଯିବା କଥା କେମିତି ବୋଉ ଜାଣିଗଲା ।” ଏ କଥା ଶୁଣି ମୋ ମନରେ ଏମିତି ଏକ ଭାବ ଉଦ୍ରେକ ହେଲା ଯାହା ବୟସ ଓ ସୌଜନ୍ୟ ଦୃଷ୍ଟିରୁ ନ ହେବା ଉଚିତ ଥିଲା । ଝିଅଟି ରିସିଭର୍ ମାଉଥ୍‌ପିସ୍‌ରେ ହାତ ମାଡ଼ିବସିଲି । ଉଦ୍ଦେଶ୍ୟ, ଆହୁରି ଶୁଣେ । ମନର ଜୁଆରକୁ କୋଉ ବୟସର ବାଲିବନ୍ଧ ଅଟକାଇପାରେ ଯେ !

ଆହୁରି କେତେ ପ୍ରେମାଳାପ ଶୁଣିଲି । ଆନ୍ତରିକତାର ପେଟରି ଭିତରୁ ଅଭିମାନ ସବୁ ଉକୁଟି ଉଠୁଥାଏ ଯେମିତି । କଥୋପକଥନରୁ ପାତ୍ରପାତ୍ରୀଙ୍କ ପରିଚୟର ଟେର୍ ପାଉ ନଥାଏ । କେବଳ ଏତିକି ସୂଚନା ମିଳିଲା ଯେ ଉଭୟ ପରସ୍ପର ପ୍ରେମରେ ଲିପ୍ତ । ପୁଣି ଆଉ ଦିନକର ‘ଆପଏଣ୍ଟମେଣ୍ଟ’ ହୋଇଗଲା । ଭେଟିବା ସ୍ଥାନରୁ ଗନ୍ତବ୍ୟ ସ୍ଥାନ ଓ ସମୟ ତଥା ଆନୁଷଙ୍ଗିକ କୌଶଳମାନ ନିର୍ଦ୍ଧାରଣ ହୋଇଗଲା ।

ତା’ପରେ ଟେଲିଫୋନ୍‌ରେ ଆଉ ଗୋଟିଏ କଣ୍ଠସ୍ୱର ‘ପଶିଗଲା’ । ଏମିତି ଜଣେ ପରେ ଜଣେ ‘ପଶିବାକୁ’ ଲାଗିଲେ । ଶୁଣୁଥିବା ଅବସ୍ଥା ମୋତେ କୌଣସି ପ୍ରକାର ବଜାରଠାରୁ ନିଆର ଲାଗିଲା ନାହିଁ । ସେ ପର୍ଯ୍ୟନ୍ତ ସ୍ଥିରଚିତ୍ତରେ ପ୍ରେମାଳାପ ଶୁଣୁଥିବା ବାତୁଳ ମନଟି ଏଣିକି ଟେଲିଫୋନ୍ ଉପରେ ପ୍ରଚଣ୍ଡଭାବେ ଚିଡ଼ିଗଲା । କାହିଁକି ଚିଡ଼ିଗଲି, ଫ୍ରଏଡ୍ ମନେ ପଡ଼ିଲେ । ତାଙ୍କ ‘ଥିଓରୀ ଅଫ୍ ଏକ୍ସକ୍ଲୁସନ୍’ ମୋ ପାଇଁ କଡ଼ାକଡ଼ି ଭାବେ ‘ଫିଟ୍’ ନକରୁଥିଲେ ମଧ୍ୟ, ପ୍ରେମାଳାପର ଏକମାତ୍ର ଶ୍ରୋତା ଥିଲି, ତେଣୁ ଅନ୍ୟମାନଙ୍କ ଅନୁପ୍ରବେଶର ଈର୍ଷା ବୋଧହୁଏ ମୋ ମନକୁ ଘାରିଥିବ ।

ଯାହାହେଉ, ଟେଲିଫୋନ୍ ସକାଶେ ବିଂଶ ଶତାବ୍ଦୀରେ ଗ୍ରାହକମାନେ ଯାହା ଦହଗଞ୍ଜ ହେଲେଣି ତାହାକୁ ଜବ୍ୟୁର ଯନ୍ତ୍ରଣା

ବୋଲି ଭାବିନେବାକୁ ହେବ । ଆଗାମୀ କାଲିଟି ସୁଖଦ ହେଉ । ପେଟ୍ରୋଡ଼ା ସାହାବ କିଛି କରନ୍ତୁ । ଯଦି କିଛି ନକରି ପାରୁଛନ୍ତି ତାହେଲେ ଅନ୍ତତଃ ପ୍ରଧାନମନ୍ତ୍ରୀଙ୍କୁ ପରାମର୍ଶ ଦିଅନ୍ତୁ ଯେ ଟେଲିଫୋନ୍‌କୁ ଅର୍ଥ ମନ୍ତ୍ରଣାଳୟ ଅଧୀନକୁ ନେଇନଆଯାଉ । କାରଣ ଗତ ବଜେଟ୍‌ରେ ଖେଳଣା ଉପରୁ ଟିକସ୍ କମାଇ ଦିଆଯାଇଛି ।

ଆମେ ଦେଖୁଥିବା ହାଣ୍ଡିଦାନ୍ତରେ ହାଣ୍ଡି କ'ଣ କାହାକୁ କାମୁଡ଼ି ପାରେ ? ସେମିତି ଟେବୁଲ ଉପରେ ଟେଲିଫୋନ୍‌ଗୁଡ଼ିକ ଦେଖେଇହେଲା ପରି 'ଷ୍ଟାଟସ୍ ସିମ୍ବଲ୍' ଧରି ପଡ଼ିରହିଥା'ନ୍ତି କେବଳ ଏକବିଂଶ ଶତାବ୍ଦୀର ଅପେକ୍ଷାରେ ।



# ଗ୍ରାମଶିଆଳ

ହିଂସ୍ର ପଶୁଗୁଡ଼ାଙ୍କୁ ନିପାତ କରିବାକୁ ଜନପଦରେ ଆଜି ବନ୍ଧୁକ ଫୁଟୁଛି । ଗୁରିଆଡ଼େ ହୁଲିଆ ଜାରି । ସେଗୁଡ଼ାକ ସବୁବେଳେ ଲୁଚି ରହି ମଣିଷ ବଂଶ ଲୋପ କରିଦେବାକୁ ସତେ ଯେମିତି ଉଦ୍ୟମରତ । ହଜାର ହଜାର ଗୁଡ଼ୁମ୍-ଡ଼ୋ'ରେ କାଁ ଭାଁ ଯଦି ଗୋଟାଏ ଅଧେ କୋଉଠି ମରି ଯାଉଛନ୍ତି, ଆମ ଖବରକାଗଜବାଲାଙ୍କର କଚେ-ପୋ'-ବାର୍ । ଲେ-କେଟେ-ଲିବ, ଅନୁସନ୍ଧାନ, ବିବରଣୀ, ଫଟୋ । ଏତେ କଥା କୋଉଠି ଥୋଇବା ?

ସମସ୍ତେ ସ୍ତମ୍ଭୀଭୂତ ହୋଇପଡ଼ୁଛନ୍ତି ଓ ଅଭିଯୋଗ କରୁଛନ୍ତି — ଗ୍ରାମଶିଆଳଗୁଡ଼ାକ ଲୁଚି ଲୁଚି ଆକ୍ରମଣ କରୁଛନ୍ତି କିଆଁ ? ସେମାନେ 'ହୋମୋ ସାପିଏନ୍' ନୁହଁନ୍ତି; ସୁତରାଂ ମୋ କ୍ଷାତକୁଟୁମ୍ବ ହେବା ସମ୍ଭବ ନୁହେଁ ଅଥବା ମୁଁ ସେମାନଙ୍କଠାରୁ କୌଣସି 'କିକ୍‌ବ୍ୟାକ୍' ପାଇନାହିଁ । ତଥାପି ପକ୍ଷ ସମର୍ଥନ କରି ଏତିକି କହିବି — ସେମାନେ ବା କରନ୍ତେ କ'ଣ ? ଯେଉଁ ବଡ଼ ଶିଆଳଗୁଡ଼ାକ ନିର୍ଭୟ ହୋଇ ଖୋଲାଖୋଲି ଭାବେ ରାହାଜାନି, ଲୁଣ୍ଠନ ଓ ବ୍ୟଭିଚାର କରୁଛନ୍ତି ସେମାନଙ୍କ ବଂଶ ଲୋପ କରିବାକୁ ଗ୍ରାମଶିଆଳଗୁଡ଼ାକ ଲାଗିପଡ଼ିଛନ୍ତି । ସାଧାରଣ ଜ୍ଞାନର ଦଫା ନାହିଁ, ଯଦି ଥା'ନ୍ତା, ଅନ୍ତତଃ ଗୋଟିଏ ଦଫାରେ ସେମାନଙ୍କୁ ଦାୟୀ କରାଯା'ନ୍ତା ଯେ ଅବୋଧ ପଶୁଗୁଡ଼ାକ ବାଛବିଚାର କରିପାରୁ ନାହାନ୍ତି ଅର୍ଥାତ୍, ଆମ ମଣିଷ-ଆଇନ୍ କହିବ Indiscriminate.

ପରିବେଶ ସୁରକ୍ଷାର ଅସଲ ଉଦ୍ଦେଶ୍ୟ ହେଲା ଆମ ମଣିଷ ଜାତିର ସୁରକ୍ଷା ପାଇଁ ଏକ ଫର୍ଦ୍ଦମିଆଦି ଖସଡ଼ା ପ୍ରସ୍ତୁତ କରିବା । ଏଥିଯୋଗୁ ଅଗ୍ରାଧିକାର ଭିତ୍ତିରେ କେତେକ ନ କରିବା କଥା ଆମେ କରିଯାଉଛୁ । କିନ୍ତୁ ଗୋଟିଏ କଥା ପ୍ରତି କେହି ନିଘା ଦେଇନାହାନ୍ତି — ଆମ ଚତୁଃପାର୍ଶ୍ୱରେ ରହୁଥିବା ଜୀବଜନ୍ତୁ ଆମ ପ୍ରତି କିପରି ଆଚରଣ ପ୍ରଦର୍ଶନ କରିବା

ଆବଶ୍ୟକ ଯେଉଁ ବିଷୟରେ ସେମାନଙ୍କୁ ଉପଯୁକ୍ତ ଟ୍ରେନିଂ ଦେବାପାଇଁ ଇନ୍‌ଷ୍ଟିଚ୍ୟୁଟ୍‌ମାନ ସବୁଠାରୁ ଆଗେ ଖୋଲିବା ଦରକାର ଥିଲା । ତାହା କରାଯାଇଥିଲେ ରାମଶିଆଳଗୁଡ଼ାକ ଆମ ଶିଆଳଙ୍କ ପରି କେତେକାଂଶରେ ଉନ୍ନତ ହୋଇସାରନ୍ତେଣି । ଏବେ ଆମକୁ ଏତେ ହନ୍ତସନ୍ତ ହେବାକୁ ପଡ଼ୁନଥା'ନ୍ତା । ଜାନ୍ତବ ଗରଜରେ ହେଲେ ମଧ୍ୟ ସେମାନେ ବାଛି ବାଛି ଖାଉଥା'ନ୍ତେ ଏବଂ ଆଇନାନୁମୋଦିତ ଭାବେ ଆମ ଶିଆଳମାନେ ଛବକାଟି ଜଗତକୁ କଇଁଫୁଲିଆ କୈଫିୟତ ସହ ସବୁକଥା ବୁଝାଇ ଦେଇ ପାରୁଥା'ନ୍ତେ । ତଥାକଥିତ ଶିଆଳମାନେ ଧୂର୍ତ୍ତ ନ ହୋଇ କଦାପି ଗରିବମାନେ ଧୂର୍ତ୍ତ ହୋଇପାରିବେ କି ? ଛୁଆଟିଏ ମରିଯାଉଥିଲେ 'ମାଣିକ-ପୂରିଲା ସେରିକ-ପୂରିଲା' କୋହରେ କେବଳ ମା'ଟି କାନ୍ଦୁଥାନ୍ତା ।

ସାମ୍ପ୍ରତିକ ଘଟଣାବଳୀ ଭିତରୁ ରାଜ୍ୟରେ ବେଶି ଚହଳ ପକାଇଥିବା ଦୁଇଟି ହେଲା ରାମଶିଆଳ ଓ ପ୍ରଶ୍ନପତ୍ର ଲିକ୍ । ପ୍ରଥମଟି ସନ୍ତ୍ରାସବାଦୀ କାର୍ଯ୍ୟକ୍ରମ ପରି ହେଲେ ଦ୍ୱିତୀୟଟି ସ୍ୱଳ୍ପନାଶୀ ସାଇନାଇଡ୍ । କାରଣ ଦ୍ୱିତୀୟଟି ଟ୍ରେନିଂ ପାଇଥିବା ଆମ ଶିଆଳମାନଙ୍କ ଦ୍ୱାରା ସଙ୍ଗଠିତ ହେଉଛି । ମରଣକୁ ଥିଲେ ଥିଲେ ଛୁଇଁବ ମାତ୍ର ଅଲବତ୍ ଛୁଇଁବ । ନା କେହି ଶୁଣିପାରୁଥିବେ କାଳର ଗର୍ଜନ, ନା କେହି ଦେଖିପାରୁଥିବେ ରୋଳର ଉପସ୍ଥିତି ।

ଗଣତନ୍ତ୍ର ଗୋଟାଏ ଚଳନ୍ତି-ଫିରନ୍ତି ନାଁ ହୋଇସାରିଲାଣି । ଶୁଣିଲେ ଆଉ ଉନ୍ମାଦନା ଜାଗୁନି ଅବଶ୍ୟ । ଆଜକୁ ଶହେ ବର୍ଷ ତଳେ ଏହି ନାଁଟି ସହିତ କେତେ ଭାବାବେଶ ଯୋଡ଼ି ନ ହୋଇ ଯାଉଥିବ ସତେ ! ଗଣତନ୍ତ୍ରରେ ଖାଦ୍ୟ-ଖାଦକ ରହିବେ ନାହିଁ, ନିଗ୍ରହକାରୀ-ନିଗୃହୀତ ରହିବେ ନାହିଁ, ଚତୁର-ଅଚତୁରଙ୍କ ବୁଦ୍ଧି ଖେଳ ଲୋପ ପାଇଯିବ ଏପରି କଳ୍ପନା ସ୍ୱପ୍ନ-ବିଳାସ ହୋଇପାରେ ମାତ୍ର ଗଣତନ୍ତ୍ରର ସ୍ରଷ୍ଟା କର୍ତ୍ତାଗଣ ଏତେଦୂରଯାଏ କଦାପି ଭାବି ନ ଥିବେ । ଏଇ ପ୍ରସଙ୍ଗରେ ଫୋଷ୍ଟରଙ୍କ 'two cheers' କଥାଟି ଆପେ ଆପେ ମନକୁ ଆସିଯାଉଛି । କଠୋର ସତ୍ୟର ଚରମ ଦିଗମାନଙ୍କଠାରୁ ଦୂରେଇ ରହିବା ପାଇଁ ଏହା ମାତ୍ର ଏକ ମଧ୍ୟମ ବ୍ୟବସ୍ଥା ।

ତେଣୁ, ଧୀଯମନ୍ତ ଗ୍ରେର ତସ୍କରମାନେ କ୍ଷମତା ନାମକ ଏକ ଦ୍ରବ୍ୟ ପଦାର୍ଥକୁ ଭାଲ ରୂପେ ପ୍ରୟୋଗ କରି ଏ ଗଣତନ୍ତ୍ରରେ ରହିବା ଯେତିକି ସତ୍ୟ, ସେମାନଙ୍କ ଅପକର୍ମ ଯୋଗୁ ନିର୍ଦ୍ଦୋଷ ଅଗଣନ ହନ୍ତସନ୍ତ ହେଉଥିବା ମଧ୍ୟ ସେତିକି ସତ୍ୟ । ଏମିତି ଅବସ୍ଥା ଯେ, ଗ୍ରେରକୁ ହଜୁର ନ କହିଲେ ମାନହାନି ମକଦ୍ଦମା ।

ଏପରି ସଙ୍ଗିନ୍ ଅବସ୍ଥାର ପ୍ରତିକାର ବିଷୟରେ କୌଣସି ପ୍ରକାର ଆଲୋକପାତ କରିବା ଏ ଅର୍ବାଚୀନ ଲେଖକର ତାକତ୍ ବାହାରେ । ତଥାପି ବର୍ତ୍ତମାନ କିଛି ବ୍ୟବସ୍ଥା ଯେତେବେଳେ ମନକୁ ପଇଠୁ ନାହିଁ, ସାପ-ଚୂଚୁନ୍ଦ୍ରା ଉପାଖ୍ୟାନ ପରି ଘଟଣା ଆମ ଶିଆଳମାନଙ୍କୁ ଠିକେ ଚେକ୍ କରନ୍ତା । ଅର୍ଥାତ୍, ଗ୍ରେର ଗ୍ରେରେନ୍ ଯୋଜୟେତ୍ ।

ଆମ ସହରରେ ନିକଟରେ ଘଟିଥିବା ଗୋଟିଏ ଘଟଣା । ପାଠକେ ଏହାକୁ ଆମ ଆଲୋଚ୍ୟ ଜାଗାରେ ଫିଟ୍ କରି ପାରନ୍ତି । କଥାଟି ହେଲା, ଆମର ଏଠି ଗୋଟିଏ ସରକାରୀ ମ୍ୟୁନିସିପାଲିଟି ଅଛି । କର୍ମଚାରୀମାନେ ସେଠି ଦରମା ପାଆନ୍ତି ନାହିଁ ପଇସା ଅଭାବରୁ । ହଠାତ୍‌ହଠାତ୍ କର୍ତ୍ତୃପକ୍ଷ ଜନତାଙ୍କ 'ସେବା' କରିବାକୁ ବ୍ୟାଙ୍କ୍‌ରୁ ଉଧାର କରି ବସ୍ କିଣିଦେଲେ । କିଣିବାର 'କିକ୍‌ବ୍ୟାକ୍' ଛଡ଼ା ଡ୍ରାଇଭର, କଣ୍ଡକ୍ଟରମାନଙ୍କୁ ଚାକିରିରେ ରଖିବା ପାଇଁ ହଜାର ହଜାର ଟଙ୍କା କାରବାର ହେବା କଥା ଶୁଣାଗଲା । ଟଙ୍କା ନେଇଥିବା ଲୋକ କଦାପି ମାନେ କି ? ତେଣୁ ସେମାନେ ତୁଳସୀପତ୍ର ଛୁଇଁ ଅଭିଯୋଗକୁ ଅସତ୍ୟ ବୋଲି ହଲପ କରିଥା'ନ୍ତି ।

ଏପରି ଚାକିରି କରିଥିବା ଜଣଙ୍କୁ ଥରେ ପଚାରିଲି "ହଇହୋ ବାବୁ, ତମ ଋସପତ୍ ଟଙ୍କା ଉଠାଇବାକୁ ତୁମକୁ କେତେ କାଳ ଲାଗିବ ?"

"ପ୍ରଭୁ ଇଚ୍ଛା କଲେ ଦ' ଦିନରେ", ବାଳକଟି ଟେକ୍‌ଟୋକ୍ ଜବାବ୍ ଦେଲା ।

ସତକୁ ସତ, ପ୍ରଭୁ ଜରୁରୀ ବାଞ୍ଛା ପାଇବା ପରି ତତ୍‌କ୍ଷଣାତ୍ ଇଚ୍ଛା କରିଦେଲେ । ବିଭାଗର ଅଧିକାରୀ ପୋଲିସ୍ ନିକଟରେ ଏଫ୍.ଆଇ.ଆର୍.

ଦେଲେ ଯେ, ବସ୍‌ର 'ଷ୍ଟେପ୍‌ନି' କୋଉଠି ପଡ଼ିଯାଇଛି । ଯଦି ଯେମିତି ସୁଟ୍‌କେ ବା ଅଧ୍ଲାଟିଏ । ଦୁଇଟି ଚୋରିଡିନ ବାଜିଛି କି ନା, ଲୋକଟି ପୋଲିସ୍ ନିକଟରେ ପ୍ରକାଶ କରିଦେଲା—ଏପରି କଥା ତାକୁ କିଏ ଶିଖାଇଥିଲା, କୋଉଠି ବନ୍ଦୀ ହୋଇଛି, ପୁଣି କାହାର କେତେ ଇତ୍ୟାଦି । ତୁରନ୍ତ 'ଷ୍ଟେପନି'ଟି ସେଇ ଜାଗାରୁ 'ସିଜ୍' କରି ନିଆଗଲା । ପରିଣତି ଏଇଆ ହେଲା, ଛ' ହଜାର ଟଙ୍କାରେ ଯେଉଁ ଦୋକାନୀ ଗୋଟିଏ ମାଲ୍ କିଣିଥିଲା ସେ ଦାବିକଲା ଯେ ସେ ହଜାରେ ଟଙ୍କା ଅଧିକା ନେବ କାରଣ ସେତେବେଳକୁ ଆଠ-ଦଶ ଦିନ ଧରି ତା' 'ମନି ବ୍ଲକ୍' ହୋଇଥାଏ । ଅସଙ୍ଗତକୁ ସଙ୍ଗତ କରିବାପାଇଁ ପୋଲିସ୍ ନେଲା ଡିନି । ପରିଶେଷରେ ରେକର୍ଡ଼ କହିଲା ଯେ, 'ଷ୍ଟେପନି' କଦାପି ହଜି ନଥିଲା ବା ଏଫ୍.ଆଇ.ଆର୍. କଦାପି ଦିଆଯାଇ ନ ଥିଲା । ଛକାପଞ୍ଝାରେ ବଂଚି-ରହୁଥିବା ଏଇ ଆମ ଶିଆଳମାନଙ୍କ କରାମତି ଦେଖନ୍ତୁ । ବାଜିମାରି କହିବି, ଆଉ ଯାହା ନୂତନ ଉପାୟ ଉଦ୍ଭାବନ କରାଯାଇପାରେ ବରଂ, ବସ୍‌ରୁ 'ଷ୍ଟେପ୍‌ନି' ଆଉ ଗଳିପଡ଼ିବ ନାହିଁ । ସେହିପରି ପ୍ରଶ୍ନପତ୍ର ଲିକ୍ ପାଇଁ ନୂଆ ବାଟ ଆଉ କିଛି ବାହାର କରାଯିବ ପଛେ ମାତ୍ର ଯେଉଁବାଟେ ଲିକ୍ ହୋଇଛି ସେବାଟେ ଆଉ ଥରେ ହେବାର ନାହିଁ । କାରଣ ଆମ ଶିଆଳ-ଗୁଡ଼ାକ ଭାରି ସତର୍କ ।

ପୂର୍ବରୁ କୁହାଯାଇଥିବା ପରିବେଶ ସୁରକ୍ଷା ଓ ଟ୍ରେନିଂ ଇନ୍‌ଷ୍ଟିଚ୍ୟୁଟ୍ କଥା ଗୁରୁତ୍ୱପୂର୍ଣ୍ଣ ଭାବେ ବିଚାର କରାଯାଉ । ତଦ୍ଵାରା ରାମଶିଆଳମାନେ ସେମାନଙ୍କ 'ମୋଡ଼ସ୍ ଅପରେଣ୍ଡି' ଓ 'ସିଷ୍ଟମ୍ ଅପରେସନ୍'ର ଢଙ୍ଗ ବଦଳେଇବେ ବୋଲି ଆମେ ଅନ୍ତତଃ ସାଧୁ ଆଶା ପୋଷଣ କରୁଛୁ ।



# ଦଶକୁମାର ଚରିତ

ପ୍ରତ୍ୟେକଙ୍କର ଜଣେ ଜଣେ ଆଈମା' ଅବଶ୍ୟ ଥିବେ ବୋଲି ଧରି-ନିଆଯାଉ । କାଳର ଖେଳରେ ହୁଏତ ସେ ସ୍ୱର୍ଗାରୋହଣ କରି ଅନେକ ତାରକା ସାଙ୍ଗରେ ମିଶି ଆକାଶରେ ଆଉ ଗୋଟିଏ ତାରା ହୋଇଯାଇ ପାରିଥା'ନ୍ତି, ବଡ଼ କଥା ନୁହେଁ । ସେମିତି ଧରିନିଆଯାଉ, ଆଜି ସିଏ ଯେଉଁ ଅବସ୍ଥାରେ ଥା'ନ୍ତୁ ନା କାହିଁକି, ପ୍ରକୃତିର ନିୟମ ଅନୁଯାୟୀ ସେ ନିଶ୍ଚୟ ଶୈଶବର ବନ୍ଧ-ବଗୁଲିଆ ପାହାଚଗୁଡ଼ିକରେ ଧାଁ-ଧପଡ଼ କରି ହିଁ ଥିବେ । ବଗୁଲିଆମିକୁ ପ୍ରତିହତ କରିବା ପାଇଁ ଆଈମା' ଅଲବତ୍ ତାଙ୍କ ତୂଣୀରରୁ ଅନେକ ଶର ଗୁଣ୍ଡିଥିବେ । କାଳ୍ପନିକ ରାଜକୁମାର ରାଜକୁମାରୀଗଣଙ୍କ ପ୍ରେମକାହାଣୀ, କ୍ଲେଶ, ବିରହ, ଯନ୍ତ୍ରଣା ଓ ପରିଶେଷରେ ମିଳନ ଅଥବା ମୃତ୍ୟୁ ଇତ୍ୟାଦି ବଖାଣି ବଖାଣି ସମସ୍ତଙ୍କୁ ସବୁ ଆଈମା'ମାନେ ମୋହାଚ୍ଛନ୍ନ କରାଇ ଦେଇଥିବେ ବି । ପରାଜିତ ଯୋଦ୍ଧାଗଣ ଶୋଇପଡ଼ିଥିବେ ଆଗାମୀ କାଲିର ସକାଳ ପର୍ଯ୍ୟନ୍ତ ।

ସୁଖର କଥା, ଏପରି ମହାସମରରେ ବିଜୟ-ପରାଜୟର ଉନ୍ମାଦ ବା ଗ୍ଲାନି ଭବିଷ୍ୟତ ପାଇଁ ଟାଣି ହୋଇଯାଏ ନାହିଁ । ସେହି ମୋହାଚ୍ଛନ୍ନ ସମର ଭୂମିରୁ ଆମେ କେତେ ବାଟ ଦୂରକୁ ଆସିଛୁ ବା ? ପ୍ରେମରେ ଯେପରି ନାୟକ-ନାୟିକାଙ୍କ ବିବାହ, ବିରହ, ବ୍ୟୁତ୍ପାତ ବ୍ୟଞ୍ଜିତ ଉପସଂହାର ପାଇଁ ସାଧାରଣତଃ ଲେଖକମାନଙ୍କୁ ଆଉ କିଛି ବାଟ ମିଳେନା, ସେମିତି ଅନ୍ୟାୟର ପ୍ରତିବାଦ କରିବାକୁ ଯାଇ "ସତ୍ୟମେବ ଜୟତେ" ପରି ଅଭୟ-କବଚ ଧାରଣ କରି ଆମେମାନେ ନାହିଁରେ ଠେଲି ଦେଇ ଶୋଇଯାଉ । ପ୍ରଚଳିତ ବିଶ୍ୱାସ ଯେ ସମ୍ପୂର୍ଣ୍ଣ ଅସାର, ଏଇ କଥା ଅସଂଖ୍ୟ ଘଟଣା ଜରିଆରେ ବାରମ୍ବାର ପ୍ରମାଣିତ ହେଉଥିଲେ ମଧ୍ୟ ଆମମାନଙ୍କ ଅକଲ ଉଦୟ ହେବାର ଆଶା ଅତ୍ୟନ୍ତ କ୍ଷୀଣ । ଦିଗ୍‌ବଳୟଠାରୁ ଆହୁରି ଦୂରରେ ଥିବା ଝିଲମିଲିଆ ସ୍ୱପ୍ନ ଆମକୁ

ଝାଣିନଏ—ସତେ କି ମର୍ତ୍ତ୍ୟ ପାତାଳ ଫୁଟା ମହାଦେବଙ୍କ ପରି ଆପେ ଆପେ ଭୂଇଁକୁ ମେଲିକରି ଉଭା ହୋଇପଡ଼ିବ !

ଆମେ ଜଣେ ଆପେକ୍ଷିକ ଭାବେ ବିଖ୍ୟାତ ବ୍ୟକ୍ତିଙ୍କ ନାଁ ଜାଣୁ—ବାବୁ ମଦନାନନ୍ଦ ଚୌଧୁରୀ । ଗ୍ରାମୀଣ ଭାବେ ଖ୍ୟାତ କୌଣସି ଏକ ଘନବନ୍ଧୁ ଚୌଧୁରୀଙ୍କ ପୁଅ ହୋଇଥିଲେ ମଧ୍ୟ ତାଙ୍କ ପ୍ରତି ଭୁକ୍ଷା ଡାକରା 'ଘନା-ପୁଅ-ମଦନା' ହଠାତ୍ କପରି 'ମଦନାନନ୍ଦ ବାବୁ'ରେ ପରିଣତ ହେଲା ସେ ବିଷୟରେ ସେ ନିଜେ କହନ୍ତି ।

ତାଙ୍କ ଜୀବନର ଟର୍ଣ୍ଣିଂ ପଏଣ୍ଟ ଆସିବା ପୂର୍ବରୁ ସେ ଜଣେ ସାଧାରଣ ଲୋଫର୍ ଥିଲେ । ନିଜ ଗାଁର ସହାର୍ଥୀମାନଙ୍କୁ ଥରେ ସଙ୍ଗଠିତ କରି ସେ ଯାଇଥିଲେ ବ୍ଲକ୍ ଅଫିସରଙ୍କ କରୁଣା ଭିକ୍ଷା କରିବାକୁ । ହଜୁର୍, ଆମ ଗାଁରେ ଟିଉବଓଏଲ୍‌ଟିଏ ଦିଆଯାଉ । ସେଦିନ ତାଙ୍କର ଯାଗଯୋଗ ଖରାପ ଥିଲା । ଆଦବକାଇଦା ଜଣା ନଥିବା ମଦନାନନ୍ଦ ତାଙ୍କ ଦଳ ସହିତ ଯେତେବେଳେ ଯୁବକ ବି.ଡି.ଓ.ଙ୍କ ଅଫିସକୁ ପଶିଗଲେ ସେତେବେଳେ ସେମାନେ ଦେଖିଲେ ହାକିମ ଜଣେ ସୁଦର୍ଶନା ଯୁବତୀଙ୍କ ସହିତ ଖିଲଖିଲିଆ ହସଖୁସିରେ ମଗ୍ନ । ଏମାନେ ଭାବି ପକେଇଲେ, ମୌସୁମୀ ବାୟୁ ଭୁସ୍ ଭୁସ୍ ବର୍ଷା ଅଜାଡ଼ିଦେବ । ମାତ୍ର ଶୁଣିଲେ, ଗାସ୍‌କେଲସ ଗେଟ୍‌ଆଉଟ୍ ।

ସେତେବେଳେ ମଦନାନନ୍ଦ ଭାବିଥିଲେ ଯୁବକ ବି.ଡି.ଓ. ହିଁ ସବୁଠାରୁ କ୍ଷମତାସମ୍ପନ୍ନ ବ୍ୟକ୍ତି ଓ ଶ୍ରେଷ୍ଠ ପ୍ରଶାସକ । ଆଜି ସେପରି ଚିନ୍ତା କରିବାର ଆବଶ୍ୟକତା ନାହିଁ । ଘନା-ପୁଅ-ମଦନା କପରି ମଦନାନନ୍ଦ ବାବୁ ହେଲେ ଓ ସେଇଥିଯୋଗୁ ତାଙ୍କ ଚିନ୍ତା କପରି ପରିବର୍ତ୍ତନଶୀଳ ହୋଇପଡ଼ିଲା, ଏହା ହିଁ ଆଧୁନିକ ଦଶକୁମାର ଚରିତର ଏକ କାଳ୍ପନିକ କାହାଣୀ ।

ସେ କହନ୍ତି, ଦରଳ ତତ୍ତ୍ୱଟିଏ ନଜାଣି କେତେ ସମସ୍ୟ ବରବାଦ୍ କରି ଦେଇଥିଲି । ଏଗୁଡ଼ାକ କେହି ଶ୍ରେଷ୍ଠ କୁହନ୍ତି । ଅପରର ପଣ୍ଡିତକାନ ତଳେ ଅଭୟ ଆଶ୍ରା ନ ପାଇଲେ କାହାରି ବହପ ଟିକିଏ ହେଲେ ବି ଦେଖାଯାଏ ନାହିଁ । ଯାତରୁ କଣି ବାଘ-ମୁଖା ପିନ୍ଧି, ଶିଖିଥିବା ହେଣ୍ଟାଳ

ଘୁଡ଼ୁ ଥିବା ଯୋଗୁ ଖାଳିଟାରେ ଲୋକଗୁଡ଼ାକ ଏମାନଙ୍କୁ ଡରନ୍ତି । ଟିକିଏ ସାହସ କରି ମାଡ଼ିବସିଲେ ମୁଖାତଳୁ ଦେଖାଯାଏ ଭୟୁକାତର ଚଗଲି ଶିଶୁର ମୁହଁ ।

ଅର୍ଥଶାସ୍ତ୍ରରେ 'ଅପ୍‌ଟିମମ୍ ଇଉଟିଲାଇଜେସନ୍' ଟିରେ ଜୀବନର ଅନେକ ତଥ୍ୟରୁ ଗୋଟିଏକୁ ମଦନାନନ୍ଦ ବିଶ୍ୱାସ କରନ୍ତି । ତାହା ହେଲା, ଯଦି ସୁଯୋଗ ଥାଏ ଏକଦମ୍ ବଡ଼ଟିକୁ ତେଲମାରି ରଖିଥା'ନ୍ତୁ । ପୋଲ ଉପରେ ଠିଆହୋଇ ଦେଖିବେ ବାକିସବୁ ପଶୁଛନ୍ତି, ଖସୁଛନ୍ତି ।

ମଦନାନନ୍ଦ ବାବୁଙ୍କୁ ଥରେ ପଚାରିଲି, "ବଡ଼ କିଏ ?"

ସେ କହିଲେ, "ହେଃ, କାହାରିକୁ ପର୍ମାନେଣ୍ଟ ବୋଲି ବଡ଼ ଜ୍ଞାନ କରିବା ଏକ ମାନ୍ଧାତା ଅମଳର ଚିନ୍ତା । ନିମକହାରାମି ନାମକ ଶବ୍ଦ ଏପର୍ଯ୍ୟନ୍ତ ଚଳିଆସୁଛି । ହେଲେ, କେହି ଭାବୁନାହାନ୍ତି ଯେ ତାହା ଗୋଟେ ପ୍ରକାର ଦରବାରି ପ୍ରତିଶ୍ରୁତି । ନିମକ୍ କାହାରି ନୁହେଁ, ତେଣୁ କାହାରି ପାଖରେ ସଚ୍ଚା ହେବା ଆବଶ୍ୟକ ନାହିଁ ।"

ମୁଁ—"ଯାହାକୁ ତେଲ୍ ମାରିଲେ ସ୍ୱାର୍ଥ ସାଧନ ହେବ ବୋଲି କହିଲେ ତାଙ୍କ ପ୍ରତି ତାହେଲେ ବଶମ୍ୱଦ ରହିବା ଉଚିତ ନୁହେଁ ?"

ସେ—"ରିଲେଟିଭ୍" ଅର୍ଥାତ୍ ଆପେକ୍ଷିକ । ବଶମ୍ୱଦ ନାମକ ଶବ୍ଦଟି ପାଇଁ ଗୋଟିଏ ପ୍ରାଣୀ ପ୍ରଭୁ ସୃଷ୍ଟି କରିଛନ୍ତି, କୁକୁର । ଯାହାକୁ ବଡ଼ ବୋଲି ମୁଁ କହୁଛି, ସେ ଗୋଟିଏ ପାହାଚ । ସେ ଜଣେ ବା ଏକାଧିକ ହୋଇପାରନ୍ତି । ସେ ପୋଲିସ୍ ହୋଇପାରନ୍ତି, ସମ୍ପାଦକ ହୋଇପାରନ୍ତି, ଷ୍ଟେର ବା ମନ୍ତ୍ରୀ ହୋଇପାରନ୍ତି । ସେ ନିଜକୁ ନିଜ ଆସନରେ ଅଧିରୂଢ଼ କରାଇ ପାରୁଥିବା ପର୍ଯ୍ୟନ୍ତ ଆମେ ତାଙ୍କ ସମର୍ଥକ । ସେ କାହା ପଣତ ତଳେ ଆଶ୍ରାନେଇ ନିଜ ଆସନ ସୁରକ୍ଷିତ କରୁଛନ୍ତି ଆମର ସେଥିରେ ମୁଣ୍ଡ ଖେଳେଇବା ଦରକାର ନାହିଁ ।"

ଇତି, ଏକ ରାଜକୁମାର ଚରିତ ।

ଗୋଟିଏ ଗୀତ ମନେପଡ଼ୁଛି, "କୁଳରେ କାଟିଲି ଲାଉ/ମୋ କରମକୁ ବୁଢ଼ା ଘଇତା/ଯୋକାଇ ଦେବ କି ଆଉ ?" ନା, ତା' କାହିଁ କରିବା ? ତେଣୁ, ଜାକଜୁକି ହୋଇ ଶୋଉ !



# ହଜିଗଲେ ମନ ଥରେ...

ଅବାସ୍ତବତାକୁ ଆବୋର ନେଇ ଆମେ ବେଳେବେଳେ ନିଜ ମନ ସାଙ୍ଗରେ ନିଜେ ଲୁଚକାଳି ଖେଳୁ । ଅତି ନିରାପଦ । ମାନସିକ ଆଲୋଡ଼ନ ବ୍ୟଥା, ସଂଘର୍ଷରୁ ମୁକ୍ତି ମିଳେ ତତ୍କାଳ । ପିଲାଙ୍କୁ ଯେମିତି ଆମେ ବହଲାଇ କହୁ : ବଣକୁ ଯିବୁ ? କୋଳି ଖାଇବୁ ? ବାଘ ଆସିଲେ ଡରିବୁନି ? ଦୁଇଟି ପ୍ରଥମ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ପିଲାଟି ମନରେ ଉନ୍ମାଦ ସୃଷ୍ଟି ହୋଇଯାଏ ଓ ଶେଷ ପ୍ରଶ୍ନରେ ଦାମ୍ଭିକତା । ଟିକଏ ତା' ଆଖିକୁ ଫୁଙ୍କି ଦେଉ, ଚମକି ପଡ଼େ ସେ । ବଣ ନଥାଏ, କୋଳି ନଥାଏ ବା ଅକସ୍ମାତ୍ ଆବିର୍ଭାବ ହେବାପାଇଁ ବାଘ ବି ନଥାଏ ।

ଇଂଲଣ୍ଡ ଇତିହାସର ଗୋଟିଏ ଘଟଣା ବଖାନ କରିବାକୁ ଇଚ୍ଛା ହେଉଛି । ବିପ୍ଲବ ପରେ ୧୬୪୯ ରେ ରାଜା ଚାର୍ଲସ୍-୧ଙ୍କୁ ଫାଶୀ ଦିଆଗଲା । ଜଣେ ସାଧାରଣ ବ୍ୟକ୍ତି ଅଲିଭର୍ କ୍ରମୱେଲ୍ (Oliver Cromwell, 1599—1658) ନିଜକୁ ଲର୍ଡ-ପ୍ରୋଟେକ୍ଟର ରୂପେ ଘୋଷଣା କରି ଏକଚ୍ଛତ୍ରବାଦୀ ଶାସନ ଚଳାଇଲେ । ତାଙ୍କୁ ଐତିହାସିକମାନେ ପାଗଳ ବୋଲି ବର୍ଣ୍ଣନା କରିଛନ୍ତି । ଥରେ ସେ କ'ଣ କଲେ ନା, ପାର୍ଲାମେଣ୍ଟରେ ଗରମାଗରମ ଆଲୋଚନାରେ ଏତେ ବେଶି ଉତ୍କ୍ଷିପ୍ତ ହୋଇପଡ଼ିଲେ ଯେ, ମାନ୍ୟବର ସଭ୍ୟମାନଙ୍କୁ ଭିତରେ ରଖି ପାର୍ଲାମେଣ୍ଟ ହଲ୍‌କୁ ବାହାରୁ ତାଲା ପକାଇ ଚାବି ପକେଟରେ ରଖି ଘର୍ । ମାତ୍ର ଏହି ପାଗଳବ୍ୟକ୍ତିଙ୍କ ସପକ୍ଷରେ ପଦେ କହିବାର ଅଛି । ଜଣେ କଳାକାର ଯେତେବେଳେ ତାଙ୍କ ଚିତ୍ର ଆଙ୍କିବାକୁ ଆସିଲେ, ସେ କଡ଼ାକଡ଼ି ନିର୍ଦ୍ଦେଶ ଦେଇଥିଲେ "ଏମିତି ଆଙ୍କ, ଯେମିତି ମୋ ଚିତ୍ର ମୋରି ପରି ଦେଖାଯିବ । ଝାଲୁଡ଼ି, କଳାଦାଗ ବା ଦେହ ମୁହଁରେ ମୋର ଯେତେ ଅପ୍ରକାଶିଆ ଜିନିଷ ରହିଛି ସବୁ ଯେମିତି ଦୃଶ୍ୟମାନ ହୁଏ । ନ ହେଲେ, ତୁମ ଭାଗ୍ୟରେ କ'ଣ ଅଛି ବୁଝିପାରୁଥିବ ।"

ଏ କଥା ସେ କାହିଁକି କହୁଥିଲେ ? ପୃଥିବୀଟା ସାରା ନିଜ ସମେତ ଦେବଦେବୀଙ୍କୁ ଯେନତେନପ୍ରକାରେଣ ମିଛର ପୃଷ୍ଠ ଦେଇ ଲୋଭନୀୟ ଭାବେ ପ୍ରତିଭାତ କରାଇବାକୁ ଉଦ୍ୟମରତ ରହୁଥିବାବେଳେ ଏପରି ଆଚରଣକୁ ନିଶ୍ଚୟ ବିଲକ୍ଷଣ କୁହାଯିବ ଏବଂ ନିମଓଏଲ୍ ସାହାବ ପ୍ରାପ୍ୟ ଆଇଡିଆ କରିଥିବେ ଯେ କଳାକାର, କବି, ଲେଖକ ଇତ୍ୟାଦି 'ସ୍ରଷ୍ଟା' ନାମ ଅର୍ଜନ କରିଥିବା ଲୋକଗୁଡ଼ାକ କ୍ଷମତାକୁ ତେଲ ମାରିବା ପାଇଁ ମିଛମାନ ଅନାୟାସରେ ଯୋଡ଼ିଦେଇ ପାରନ୍ତି । ଅନାସକ୍ତ ପରି ପ୍ରତୀୟମାନ ହେଉଥିବା ନିଜ ପସରାରୁ ଯେହେତୁ 'କଷ୍ଟମ' ବାଲାଙ୍କୁ 'ଡିସ୍‌କ୍ଲୋଜ' କରିବା ପରି କିଛି ନଥାଏ, ସେମାନେ ତେଲମରା କାମଟି ସୁରୁଖୁରୁରେ କରି ଧରାପଡ଼ନ୍ତି ନାହିଁ ।

ଅନ୍ତତଃ ନିମଓଏଲଙ୍କ ଜୀବନୀ ଏହିପରି ମାନସିକ ଆଚରଣର ପ୍ରତିବାଦରେ କିଛି ଶିକ୍ଷା ଦେଉଛି ।

'ପି.ଆର୍.-କନ୍‌ସେପ୍‌ଟ' ଏବେ ଏକ ବୈଷୟିକ କଳା । ଶିକ୍ଷା ଦିଆଯାଉଛି ଲୋକ ସମ୍ପର୍କ କିପରି ରଖାଯିବ । ଏହି ବୃତ୍ତିକୁ ଜୀବିକା ଉପାର୍ଜନ ପାଇଁ ଆଦରି ନେଇଥିବା ନରନାରୀଗଣ ଇଂଜିନିୟର, ଡାକ୍ତର, ଶ୍ରମିକ, ପ୍ରଶାସକ ଆଦିଙ୍କ ପରି ଗୋଷ୍ଠୀଭୁକ୍ତ । ସରକାରୀ, ବେସରକାରୀ, ଅର୍ଦ୍ଧସରକାରୀ ପ୍ରତ୍ୟେକ ସଂସ୍ଥା ଗଣତନ୍ତ୍ରକୁ ସମ୍ମାନ ଦେଖାଇବାପାଇଁ ଲୋକସମ୍ପର୍କ ରକ୍ଷା କରିବାକୁ ଏତେ ବେଶି ଉଦ୍‌ବିଗ୍ନ ହୋଇପଡ଼ୁଛନ୍ତି ଯେ, ଅସଲ କେଉଁ ସକାଶେ କର୍ମୀମାନଙ୍କ ଦାନାପାଣି ତାହା ସେମାନେ ଭୁଲିଯାଉଛନ୍ତି । ଏକଥା ହେବା ମଧ୍ୟ ସ୍ୱାଭାବିକ କାରଣ ସମସ୍ତେ କଦାପି ନିମଓଏଲ୍ ହୋଇପାରିବେନି ।

ଖାଉଟିଦ୍ରବ୍ୟ ପ୍ରଚୁର ନିମନ୍ତେ ବିଜ୍ଞାପନ ସଂସ୍ଥା (advertise-agency) ଓ ଲୋକସମ୍ପର୍କ ସଂସ୍ଥାଗୁଡ଼ିକର କାର୍ଯ୍ୟ ପରିସର ଏକଦମ୍ ଅଲଗା । କୌଣସି କ୍ଷେତ୍ରରେ, ପାଠ ଅନୁଯାୟୀ, ସମାନତା ଦେଖା ନ ଯିବା କଥା । ପାଠକଙ୍କ ଭିତରୁ ଯେଉଁମାନଙ୍କର ଅନୁଭୂତି ଥିବ, ଟିକିଏ ଆଖିବୁଜି ଭାବିଲେ ଜାଣିପାରିବେ ଯେ, ଦୁଇଟିର ବ୍ୟବଧାନ କ୍ଷେତ୍ର ଧୀରେ ଧୀରେ ସଙ୍କୁଚିତ ହେବାରେ ଲାଗିଛି । ଖୁବ୍ ନିକଟରେ ଦିନ ଆସିବ, ଉଭୟ ସଂସ୍ଥା ବାରିହୋଇ ନ ପାରୁଥିବାପରି ଏକାକାର ହୋଇଯାଇଥିବେ ।

ଗୋଟିଏ ପୁରସ୍କାର ବିତରଣୀ ସଭାରେ ପୁରସ୍କାର ନେଉଥିବା ଲୋକଟି ମନ୍ତ୍ରୀଙ୍କଠାରୁ କାହିଁକି ସୁଦର୍ଶନ ଦେଖାଗଲା ଏବଂ ସେହି ଫଟୋ ସମ୍ବାଦପତ୍ରରେ ପ୍ରକାଶିତ ହେବାପରେ, ଉପରୋକ୍ତ ଅଭିଯୋଗ ଅନୁଯାୟୀ ଫଟୋଗ୍ରାଫରର ସମଗ୍ର କଣ୍ଟ୍ରାକ୍ଟ ପେମେଣ୍ଟ ବନ୍ଦକରି ଦିଆଗଲା । ଏହା ସାତ-ଆଠ ବର୍ଷ ତଳର କଥା । ଫଟୋଗ୍ରାଫର୍‌ର ବିନୀତ କୈଫିୟତ ହଜୁର୍ କ୍ୟାମେରା କେମିତି ମିଛ କରିପାରିଥା'ନ୍ତା ? ଜଣିାଙ୍କର ରୋଷ, ଏପରି ମାରାତ୍ମକ ସତ୍ୟକୁ ତୁମେ ନ ଲୁଚାଇଲ କିଆଁ ? ଲେଖକ ଆରବିଟ୍ରେଟର ନଥିଲା ତେଣୁ ଫଟୋଗ୍ରାଫର କିପରି ତା' ପାଉଣା ପାଇଲା ସେ କଥା କହିବାକୁ ଭାଜନ ନୁହେଁ । ଯେଉଁ ଫଟୋଗ୍ରାଫରକୁ ନିଜେ ଡାକି ଅର୍ଡ଼ର ଦେଇଥିବେ, କର୍ତ୍ତା କଦାପି ସ୍ୱଇଚ୍ଛାରେ ତା'ର ହାନି ଘଟାଇବାକୁ ଉଦ୍ୟମ କରି ନ ଥିବେ । କାଳା ନିଷ୍ଟୟ ବିଭିନ୍ନ ବାୟୁମଣ୍ଡଳ ଭେଦକରି ସ୍ୱର୍ଗରୁ ହିଁ ଆସିଥିବ । ପ୍ରଶ୍ନ କୌଣସି ବ୍ୟକ୍ତିବିଶେଷଙ୍କର ନୁହେଁ—ଏହା ଆଚରଣ ଏବଂ ବୃତ୍ତିକୁ ଛୁଉଁଛି ।

ଲେଡ଼ିଜ୍ ସୋ'ରେ ସବୁଠୁଁ ବଡ଼ଙ୍କ ସ୍ତ୍ରୀ ଯଦି ଥା'ନ୍ତି, ଚିଲ୍‌ଡ୍ରେନ୍ ସୋ'ରେ ସବୁଠୁଁ ବଡ଼ଙ୍କ ଝିଆ ଯଦି ଥା'ନ୍ତି, ଏପରିକି ପପ୍-ସୋ'ରେ ସବୁଠୁ ବଡ଼ଙ୍କ କୁକୁର ନିଜର ସଦୟ ଉପସ୍ଥିତି ଯଦି ପ୍ରଦାନ କରିଥାଏ, ବିନା ବ୍ୟତିକ୍ରମରେ ଆମେ ଦେଖିବାକୁ ପାଉ ପି. ଆର୍. ବାଲଙ୍କ ଭିଡିଓ କ୍ୟାମେରା କେବଳ ଧ୍ରୁବତାରାକୁ ଅନେଇ ଘୂରୁଥିବ ।

'ରସକଲ୍ଲୋଳ'ରେ ଘନକୃଷ୍ଣ କହିଛନ୍ତି; କବି ଯା' କରେ ମୂର୍ଖକୁ ସ୍ତୁତି/ଏଥିରୁ ବଡ଼ ନାହିଁ ବିପତ୍ତି/ଏଥିକୁ ପ୍ରଭୃତି/ଗୁଡ଼ତରେ କାତି ମାରିବା ଭଲ ଯେ । ଯାହା ଦେଖାଯାଉଛି, କେତେକ କ୍ଷେତ୍ରରେ କବି ବା ଲେଖକଗୁଡ଼ିକ ବର୍ତ୍ତନଭୋଗୀ ପି. ଆର୍. ବାଲଙ୍କ ପରି କ୍ଷମତାକୁ ଗୋଡ଼େଇ ଗୋଡ଼େଇ ତେଲମାରିବା ନିମନ୍ତେ ବିବିଧ କୌଶଳ ଅବଲମ୍ବନ କରୁଛନ୍ତି । ଏପରି ଆଚରଣ ଯଦି ସବଂକ୍ଷ ପ୍ରକଟିତ ହୁଏ, ଲେଖକପଣିଆ କଦାପି ସ୍ୱାଧୀନ ପେଷା ହୋଇ ରହିପାରିବ ନାହିଁ, କୌଣସି ଡିଙ୍ଗବାଗ ଆବୋରି ତାହା କ୍ଷମତା ଅଧୀନରେ ଆଉ ଗୋଟିଏ ଡିପାର୍ଟମେଣ୍ଟ ହୋଇଯିବ ।

ତା'ପରେ ନା ଥିବ ବଣ, ନା ଥିବ କୋଳି, ନା ଥିବ ବାଘ ।



# ଭୁରୁସୁଙ୍ଗ ପତ୍ର

ଗନ୍ଧାପୂନେଲିଁରେ ଭଣଜା-ଭାଣିଜୀମାନେ ଆବିର୍ଭାବ ହୋଇ-ପଡ଼ୁଥିବା ଯୋଗୁ ସେମାନଙ୍କ ଅଳିଅଳ ଡାକ ସହିତ ଯେମିତି ମାଇଁଗୁଡ଼ିଙ୍କୁ ଇତସ୍ତତଃ କରିପକାଏ । ତେଣୁ ପ୍ରଚଳିତ ବିଶ୍ୱାସ ଅନୁଯାୟୀ ଆମେ ଧରି ନେଇଛୁ ମାଇଁଗୁଡ଼ିକ ଭାରି ଭଲ ଓ ଭଣଜା-ଭାଣିଜୀ ଲୁବ୍ଧ--ଲୋଲୁପ । ଯାହା ଆଲୋଚନା କରିବାକୁ ଯାଉଛୁ ସେଥିରେ ସତରେ ଭଣଜା-ଭାଣିଜୀ-ମାଇଁ କେହି ନାହାନ୍ତି । ଗନ୍ଧାପନେଇଁ ବି ନାହିଁ । କିନ୍ତୁ ହଁ, ଜହ୍ନରାତି, ଉଆଁସ ରାତିର ଅର୍ଥଗତ ରୂଢ଼ି ଅବଶ୍ୟ ଅଛି ।

କେବଳ ତଥ୍ୟ ଖୋଜ ମାଇଁ ମାଇଁ ହେବା ଚରିତ୍ର ପ୍ରାୟ ସବୁଠାରେ ମିଳନ୍ତି । ଗୋଟିଏ ସହଜ ଉଦାହରଣରୁ କଥାଟି ବୁଝାପଡ଼ିବ । ଭୋଟ୍ ବେଳେ ଯେ କୌଣସି ରାଜନୈତିକ ଦଳର ଯେ କୌଣସି କୁଜ କର୍ମୀଟିଏ ମଧ୍ୟ ନେତାଙ୍କ ପାଇଁ ମାଇଁ ଏବଂ ଭୋଟ୍ ସରିଲେ ମନ୍ତ୍ରୀ ବା ଯୋଗ୍ୟ 'ମେଲେ'ମାନେ ସେହି ମାଇଁ ଆସନକୁ ଅଳଂକୃତ କରିପକାନ୍ତି ।

ନାଗରୀ ମନକୁ ରସିବା କଳାରେ କାସାନୋଭା ଚରିତ୍ର ବିଶ୍ୱବିଖ୍ୟାତ । ଆଲେକ୍‌ଜାଣ୍ଡ୍ରି ଆର କ୍ଲେମେଣ୍ଟ୍‌ଙ୍କ ଭାଷ୍ୟ ବୋଲି କହି କାସାନୋଭା ତା' ସାଫଲ୍ୟ ସମ୍ପର୍କରେ ବୟାନ କରି କହେ ଯେ ସମ୍ଭ୍ରମ କୁଆଡ଼େ ସ୍ତ୍ରୀମାନଙ୍କର ଗୋଟାଏ ଆପାତତଃ ଆଭରଣ । କାହାରିକୁ ପଟେଇବାକୁ ହେଲେ ଅତ୍ୟନ୍ତ କ୍ଲେଶ ସାଧନ କରିବାକୁ ପଡ଼େ ବୋଲି ଯେଉଁମାନେ ଭାବନ୍ତି, କାମ-କଳାରେ ସେମାନେ ଅପାରଗ । ଜୀବନଟା ସାରା ଅନ୍ୱେଷଣରେ ବିତେଇ ଦେଲେ ମଧ୍ୟ ସେମାନେ କଦାପି ସାର୍ଥକ ହୋଇପାରିବେ ନାହିଁ, ଏହା କାସାନୋଭାର ମତ । ସେ କହେ, ତୁମେ ଲୋଡ଼ୁଥିବା କୌଣସି ସ୍ତ୍ରୀର ଆଖିକୁ ଅନେଇଦିଅ ଓ ସେଇଥିରୁ ଜାଣିପାରିବ ଯେ ତା' ବସନ ଏବଂ ସମ୍ଭ୍ରମ ଭିତରେ କେଉଁଟା ବେଶି ଝିନ୍ !

ଘରଖିଆ ଜଳବାୟୁ ପାଇଁ କାସାନୋଭାର ଉପଦେଶ ମୋଟେ ଫିଟ୍ ନୁହେଁ । ଚପଲମାଡ଼ରେ ଗାଲ ରଙ୍ଗାପଡ଼ିଯିବାର ଗୁନ୍ସ ଅଛି ବରଂ । ଏକଥା ଏଇଥିପାଇଁ ବର୍ଣ୍ଣନା କରାଗଲା ଯେ ମାଇଁ ବା ଭଣଜା ଭଣିଜ୍ଞା ହେବାପାଇଁ କଏ କେତେବେଳେ ଲୋଡ଼ନ୍ତି, ଟିକିଏ ସେମାନଙ୍କ ନୁଙ୍ଗୁପୁଙ୍ଗୁକୁ ଠଉରେଇଦେଲେ ସବୁ ଜାଣି ହୋଇଯିବ । କେହି ଯଦି ଭାବନ୍ତି ଯେ କେବଳ ରାଜମାନ୍ତରେ ହିଁ ଗନ୍ଧାପୂଜନେଇଁ ଆସେ, ଭୁଲ୍ ହୋଇଯିବ । ଦପ୍ତର ଓ ସରକାରୀ ଗୃକର କ୍ଷେତ୍ରରେ ମଧ୍ୟ ଏହି ଅବସ୍ଥାର ଅଦଉତି କମ୍ ନୁହେଁ । ଅନେକ ହାକିମ ମାଲ୍‌କୁ ଷଷ୍ଠୀ ଭୁଲ୍ ଚନ୍ଦ୍ରାକର ହାତାଠାରୁ ସ୍ୱହସ୍ତରେ ଗ୍ରହଣ କରନ୍ତି ନାହିଁ । ଏଥିପାଇଁ ସେମାନଙ୍କର ଏଜେଣ୍ଟ୍ ଥା'ନ୍ତି । ହାକିମ ବା ତାଙ୍କ ପ୍ରଭାବ ଅପସରି ଗଲେ ସତ୍ୟର ସୂର୍ଯ୍ୟ ଧରାଧାମକୁ ଆଲୋକିତ କରିପକାଏ ।

ଥରେ ଜଣେ ପୋଲିସ୍ ଇନ୍‌ସପେକ୍ଟର ବନ୍ଧୁ କହିଲେ, ଅମୁକ ଅମୁକ ଅମୁକ ସାହାବ ଯେଉଁ ପୁରସ୍କାର, ପଦକମାନ ପାଇଲେ ତହିଁର ସିକ୍ରେଟ୍ କ'ଣ ଜାଣନ୍ତି ? ଆଶ୍ଚର୍ଯ୍ୟ ଲାଗିଲା, କାରଣ ଯେଉଁ ନାମମାନ ସେ କହୁଥାନ୍ତି ତହିଁରୁ କେତେକ ଏସ୍. ପି. ତ ଆଉ କେତେକ ଡି. ଆଇ. ଜି. । ମୋ ବନ୍ଧୁ ଜଣେ ନନ୍-କନ୍‌ଫର୍ମଡ଼୍ ଇନ୍‌ସପେକ୍ଟର ଅଥଚ ଏତେ ବଡ଼ ବଡ଼ ହାକିମଙ୍କୁ କେମିତି ପଦକ, ପୁରସ୍କାର ଦେବାରେ ସହାୟକ ହୋଇ-ପାରିଲେ, ଆଦୌ ବୁଝି ହେଉନଥାଏ । ହଁ, ଯେଉଁ ନାଁ ସେ କହୁଥା'ନ୍ତି ସେଥିରୁ କେହି ଜଣେ ହେଲେ ତାଙ୍କର ଉପସ୍ଥିତ ହାକିମ ନ ଥା'ନ୍ତି । ସେ ଯାହା କହିଲେ ତାହା ହେଲା ଯେତେ ବଡ଼ ବଡ଼ କେଶ୍ ହୁଏ ତହିଁରୁ ସେ ଏକ୍ ପଇସା ରୋଜଗାର ନ କରି ହାକିମମାନଙ୍କୁ ନାଁ କମେଇବାକୁ ଛାଡ଼ିଦିଅନ୍ତି । ସେମାନେ କୃତିତ୍ୱ ଅର୍ଜନ୍ତି, ମେଡାଲ ପାଆନ୍ତି ଓ ମୋ ବନ୍ଧୁ ସେଇମାନଙ୍କଠାରୁ ପାଆନ୍ତି ବ୍ଲାକ୍ ମାର୍କ ।

ଚୂଃ-ଚୂଃ-ଚୁଃ ।

ଭୁରୁସୁଙ୍ଗ ପରିବାରର ଜୀବନ ସତେ କେତେ ଦୟନୀୟ ନୁହେଁ କି । ତରକାରୀ ରାନ୍ଧିବା ବେଳେ ଆଦରରେ ଗଛରୁ ତୋଳି ଅଣାଯିବ । ପଞ୍ଚ ଫୁଟଣ ସହିତ ଛୁଙ୍କ ଦେଲାବେଳେ ତହିଁର ଭୁରୁଭୁରୁ ବାସ୍ନାରେ ପରିବାରର ଚୌହଦ ମହକି ଉଠିବ । ମାଛ ଖାଇବସିବାବେଳେ ଯିଏ କେହି ଜଣେ

ଠିକଏ ବ୍ୟତିକ୍ରମ ବିନା ପଦ୍ଧତିକୁ କାଢ଼ି ଆଗେ ତଳେ ପକାଇବେ, ତା'ପରେ ତରକାରି ଖାଇବେ । ଭୁଲ୍‌ରେ ଛୁଆଟିଏ ଯଦି ଖାଇଦିଏ, ଗୋଲ୍‌ଆଳୁ, ଫୁଲକୋବି ତା' ତଣ୍ଟିରେ ଲାଗେନି, ଏଇ ଅସହାୟ ପଦ୍ଧତି ଲାଗିଯାଏ ।

ତେବେ କଥା ହେଲା, ଏଇ ଭୂରୁଙ୍ଗ ପଦ୍ଧଗୁଡ଼ିକ ଏତେ ହୀନମାନର କଳଙ୍କ ବହି ଅନ୍ୟର ବାସ୍ନା ବର୍ଦ୍ଧନ କରନ୍ତି କାହିଁକି ?

ଏହାର ଉତ୍ତର ଖୋଜିବା ବେଶି କଷ୍ଟ ନୁହେଁ । ଭୂରୁସୁଙ୍ଗ ପଦ୍ଧର ଯଦି ଏତିକି ଅନ୍ୟୂନ ଉପଯୋଗିତା ନଥା'ନ୍ତା ତା'ହେଲେ ଗଛ, ଅମର ଗଛପରି କଣ୍ଟା ହୋଇ ଜାଳହେବା ବ୍ୟତୀତ ଗଛଟି କେଉଁ କାର୍ଯ୍ୟରେ ଲାଗନ୍ତା ? ଯେଉଁମାନେ ନିଜକୁ ଭୂରୁସୁଙ୍ଗପଦ୍ଧ ସହ ତୁଳନା କରି ଅଭିମାନ କରନ୍ତି, ସେମାନେ ଭାବନ୍ତୁ ପବନରେ ଉଡ଼ିଯିବା ବା ଚୂଲିରେ ପଶି ଜଳିବା ଅପେକ୍ଷା ଡାଇନିଂ ଟେବୁଲ ପର୍ଯ୍ୟନ୍ତ ଆସିପାରିବା କ'ଣ କମ୍ ସୌଭାଗ୍ୟର କଥା ।



# କର୍ଣ୍ଣବଧ

''ତା' ରଥଚକ ମେଦିନୀରେ ପଶିଯାଇଛି, ଠିକ୍ ଏତିକିବେଳେ ଗାଣ୍ଡୀବ ଲକ୍ଷ୍ୟଦେ'ରେ ପାର୍ଥ, ଆଉ ଏପରି ସୁଯୋଗ ନଆସିପାରେ''—ଉସ୍‌କେଇ ଉସ୍‌କେଇ 'କୃଷ୍ଣ' ଏକଥା କହିଚାଲିଥାନ୍ତି । ପାର୍ଥ ଶୁଣୁନଥାଏ । ଛି-ଛି, କେଡେ ହୀନ କଥାଟେ ନହେବ ! ନଇଁପଡ଼ିଥିବା ଅସହାୟ ଯୋଦ୍ଧାଟିକୁ ପଛଆଡ଼ୁଆ ଶର ମାରିଦେଇ ମୁଁ କୋଉ ଗୌରବ ଅର୍ଜିବ ହେ, ଗୋସାଇଁ ?

''ଏଇଟା ଯୁଦ୍ଧ ଭୂଇଁ । ନଶାପଶାଳା ନୁହେଁରେ ପାର୍ଥ । ପରକୀୟା ରତିକ୍ରୀଡ଼ାରେ ମନବଳେଇ ଯିଏ ଫୁଲଶେଯରେ ରଜନୀଗନ୍ଧା ସ୍ତବକର ପତନ ଦେଖିବାରେ, ତାକୁ ପାମର ଛଡ଼ା ଆଉ କ'ଣ କୁହାଯିବ ? ବେଳ ନାହିଁରେ, ଦେ ଲକ୍ଷ୍ୟଦେ । ଏତିକି ବେଳଆ ନଇଁପଡ଼ିଛି । ସେ ଥରେ ଉଠିଲେ ଆଉ କ'ଣ ତାକୁ ଛୁ ପାରିବୁ ? ସେ ତୋତେ ଅନୁରୂପ ଦୟା କରିବ କି ?''

ଆମ ସଂସ୍କୃତିର ଅର୍ଜୁନ କ'ଣ ଭାବିଥିବ କେଜାଣି, ଲକ୍ଷ୍ୟଦେଲା । କର୍ଣ୍ଣ ମରିଗଲା । ଅନ୍ତତଃ ଆପାତ ସଙ୍କଟ କାଳରେ ତା' ମନରେ ଦୁଇଟି କଥା ବିଦ୍ରୋହ ସୃଷ୍ଟି କରିଥିବ । ଗୋଟିଏ—ଯଦି ମୋ ପ୍ରତି ସେ 'ଅନୁରୂପ ଦୟା' ନକରେ ମୁଁ ତ ମରିଯିବି; ନିଜ ଜୀବନ ପ୍ରତି ଏଇ ଆଶଙ୍କା । ଅନ୍ୟଟି ଥିଲା, ବିବେକର ପ୍ରତିବାଦ । ଆଜି ଯେତେ ଯେତେ ଇଲାକାରେ ଭାରତ ଦେଖେଇ ଅର୍ଜୁନ ଗୌରବର ବୈଜୟନ୍ତୀ ଉଡ଼େଇଥାଉ ପଛେ, କର୍ଣ୍ଣ-ବଧ ଏକ ଭାରତର ରେକର୍ଡ ଆଚିଭ୍‌ମେଣ୍ଟ୍ ନୁହେଁ—କାପୁରୁଷତା । ଏଇ ହିଂସାକର୍ମରେ ଅକଲ ଓ ଶଠତା ଭିତରୁ କିଏ ବିଜୟୀ ହୋଇଥିବ ସେ କଥା ସମାଜର ଅବଧାରକମାନେ ହିଁ କହିବେ ।

ଏମିତିକା ଗଣ୍ଡାକେତେ ପୌରାଣିକ ଗପ ଆମ ନିତ୍ୟନୈମିତ୍ତିକ ଜୀବନରେ ଉଦାହରଣ ରୂପେ ଆମମାନଙ୍କ ସଫଳ, ଅସଫଳ ଅହଙ୍କାର

ପ୍ରତିକାର ପାଇଁ ଧାର୍ମିକ ଲାଇସେନ୍ସ ଯୋଗାଉଛି ବୋଲି କୁହାଯାଇ-
ପାରେ । ଏପରି ଶଠ–ଆଚରଣ ଯୋଗୁଁ କେହି ଅନୁତାପ କରୁଥିବା ତ
ଦୂରର କଥା, ବରଂ ଆତ୍ମପ୍ରସାଦ ଲାଭକରୁଛି—ସେ ଅର୍ଜୁନ ହୋଇଗଲା ।

ଥରେ ଜଣେ ପୋଲିସ ସାହେବଙ୍କ ଝିଅ ବିଶ୍ୱବିଦ୍ୟାଳୟ
ପରୀକ୍ଷାରେ କପି କରୁକରୁ ଧରାପଡ଼ିଗଲା । କଠୋର କର୍ତ୍ତବ୍ୟ ଅନୁଯାୟୀ
ଓ ଅନ୍ୟ ପରୀକ୍ଷାର୍ଥୀମାନଙ୍କ ସାମ୍ନାରେ ନିହାତି ବେହେଲ ହେବାକୁ ଇଚ୍ଛା
ନକରିଥିବା ଯୋଗୁଁ ସମ୍ପୃକ୍ତ ଅଧ୍ୟାପକ ରିପୋର୍ଟ କରିବାକୁ ବାଧ୍ୟ
ହେଲେ । ସେହି କଲେଜର ଅଧ୍ୟକ୍ଷ ଓ କଥିତ ଅଧ୍ୟାପକଙ୍କ ସମ୍ପର୍କ ବହୁ
ପୂର୍ବରୁ ତିକ୍ତ ଥିଲା । 'ଶୋଲେ' ସିନେମାର ଗୋଟିଏ ଡାଇଲଗ୍ ଅନୁସରଣ
କରି ଅଧ୍ୟକ୍ଷ ଭାବିଲେ—ଅବ୍ କାହାଁ ଯାଏଗାରେ କାଲିଆ ? ନିଜେ
ସେଣ୍ଟରର ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ ମଧ୍ୟ, ଦାୟିତ୍ୱ ସମ୍ପୂର୍ଣ୍ଣ ଭୁଲି ପୋଲିସ
ସାହେବଙ୍କୁ କହିଦେଲେ, ଆପଣଙ୍କ ଝିଅ ତୁଳସୀ, ମୁଁ ତୁଳସୀ, କଲେଜଟା
ସାରା ତୁଳସୀ, କେବଳ ଗୋଟାଏ ବିଛୁଆତି ଯୋଗୁଁ ସମଗ୍ର ପବିତ୍ରତା
ନାଟଭ୍ରଂଷ୍ଟ ହୋଇଗଲା । ତା'ପରେ ଧରାଁପଡ଼ିଥିବା କର୍ଣ୍ଣ ନମ୍ବର ସିବ
କୁଆଡ଼େ ?

କର୍ଣ୍ଣାର୍ଜୁନ ସମରର ଯେଉଁ ଇଂରାଜୀରେ ଟ୍ରେଡ଼୍-ଟ୍ରିକ୍ ଏବେ
ଚାଲୁଛି ତହିଁରେ ସାଧାରଣତଃ ଗୋଟିଏ କୌଶଳ ପ୍ରତିଭାତ ହୋଇଉଠୁଛି,
ତାହାହେଲା—ତୁମେ ଯାହା ସହିତ ପାରିବ ନାହିଁ ବୋଲି ଆଶଙ୍କାକର
କଦାପି ଲଢ଼ି ନାହିଁ ତାକୁ ଆଉ କାହା ସାମ୍ନାରେ ହାବୁଡ଼େଇ ଦେବାଲାଗି
ଗୁନ୍ସ- ଖୋଜୁଥା' । ଶତ୍ରୁ ଜିତିଗଲେ ମଧ୍ୟ ତୁମ ଚୁରିକରୁ ଏକ
ମିଲିମିଟର ପ୍ରମାଣେ ଛୁଣ୍ଡି ଯିବାର ନାହିଁ । ନୋ-ରିସ୍କ-ବର୍ଟ୍-ଏଭ୍ରି-
ଗେନ୍ ।

ନୂଆ ହୋଇ ଶିଳ୍ପ ଭାବେ ସ୍ଥାପିତ ହୋଇଥିବା ଏକ ରଙ୍ଗ
ଉତ୍ପାଦକ କମ୍ପାନୀ ଗୋଟିଏ ବିଶେଷ ସରକାରୀ ବିଭାଗକୁ ନିଜର ପ୍ରଥମ
'ଉତ୍ପାଦନ' ଯୋଗାନ୍ତେ, ବିଭାଗୀୟ କର୍ତ୍ତାମାନେ ଅରାଜି ହେଲେ ।
ସେମାନଙ୍କ ଯୁକ୍ତି ଥିଲା ଯେ ଯାହାକୁ ରଙ୍ଗ ବୋଲି କୁହାଯାଉଥିଲା ତାହା
ଜଳଠାରୁ ଦ୍ରବଣୀୟ, ବର୍ଣ୍ଣବିଭାରେ ପ୍ରଜାପତିର ସ୍ଥିତିଠାରୁ ଅଧିକ

ଉଡ଼୍ଡୀୟମାନ । ଦେଖାଯାଉ, ସରକାର ଯଦି କେବେ ଘୂର୍ଣ୍ଣିବାତ୍ୟା ବା ଚଳମାନ ପବନକୁ ରଙ୍ଗକରିବାକୁ ନିର୍ଦ୍ଦେଶ ଦିଅନ୍ତି, ଆମେ ଆପଣଙ୍କ କଥା ବିଚାର କରିବୁ ।

ଶିଳ୍ପୋଦ୍ୟୋଗୀ ବହୁତ ନେହୁରା ହେଲେ । ଥରକ ଲାଗି ନେଇଯା'ନ୍ତୁ । ଏ ଉତ୍ପାଦନ ଏଇଠୁ ବନ୍ଦ । ଯାହା ହେଉ, ସବୁ ଉଦ୍ୟମ ନିଷ୍ଫଳ ହେବା ପ୍ରାୟ ନିଶ୍ଚିତ ହେଉଥିବା ଜାଣି ତାଙ୍କୁ ବିଭାଗୀୟ ମୁଖ୍ୟ କହିଲେ, ଯିଏ ଗ୍ରହଣ କରିବ, ତା'ଠାରୁ ସାର୍ଟିଫିକେଟ୍ ଖଣ୍ଡେ ଯୋଗାଡ଼ କରି ହେଲେ ।

ସାର୍ଟିଫିକେଟ୍ ଦେବା ପାଇଁ ଯିଏ ଯୋଗ୍ୟ, ତାଙ୍କ ପାଖରେ ଏ ଲେଖକ ବସିଥାଏ ଦିନେ । ଶିଳ୍ପୋଦ୍ୟୋଗୀ ପହଞ୍ଚିଥିଲେ । ଶ୍ଳେଷାଳଙ୍କାର ପ୍ରୟୋଗ କରି କହିଲେ, ସବୁକଥା ବୁଝାଯିବ ସାର୍ । ମୁଖ୍ୟ ବିଜ୍ଞ । ଆପଣ ହଁ କରିଦେଲେ କଥା ସରିବ । ସେଇ ଅଳଙ୍କାରରେ ଜବାବ ମିଳିଲା, କିଏ ଆଉ ନବୁଝନ୍ତି କି ? ଆପଣ ବୁଝି ବଡ଼ କାମଟେ କରିଦେବେ ବୋଲି ଭାବୁଛନ୍ତି । ମୁଖ୍ୟ ଯଦି ବିଜ୍ଞ, ତାଙ୍କୁ କହୁନାହାନ୍ତି ସେ ଗ୍ରହଣ କରିନେବେ । ମୁଁ ଦି'ଆଡ଼ୁ କଳା ସହିପାରିବିନି ।

ପରେ ଶୁଣିବାକୁ ମିଳିଲା, କୌଣସି ଏକ ଉଦ୍‌ଘାଟନ ଉତ୍ସବରେ ପୋଲ କାହିଁକି ରଙ୍ଗ ଦିଆଯାଇନାହିଁ ବୋଲି ମନ୍ତ୍ରୀ ଖପ୍‌ପା ହେଲେ । ଏଇଠି ନଇଁପଡ଼ିଥିବା କର୍ଣ୍ଣକୁ ଅର୍ଜ୍ଜୁନ ବଧ କରିଦେଲେ ।

ଯୁଦ୍ଧ ମଣିଷ ପ୍ରବୃତ୍ତିର ଏକ ଚିରନ୍ତନ ସ୍ଫୁରଣ । କର୍ଣ୍ଣ-ଅର୍ଜ୍ଜୁନ ଯେମିତି ଗାଣ୍ଡୀବ ଧରି ଯୁଦ୍ଧ କରୁଥିଲେ, ଏବେ ଯୁଗ ଆସି ଯେଉଁଠି ପହଞ୍ଚିଛି, ଏଠି ସେକଥା ଆଶାକରାଯାଇ ପାରିବ ନାହିଁ । ତେଣୁ ଆମେ ଆଜି ଯାହା ଦେଖୁଛୁ, ତାହା ହେଲା ସ୍ୱାର୍ଥର ପାଚେରି ଭିତରେ ମନର ସମର । ସମ୍ପୂର୍ଣ୍ଣ ଅଦୃଶ୍ୟ । କେବଳ ବିଜେତାର ଜୟନାଦରେ ମେଦିନୀ ଟିକିଏ ଥରିଯାଉଛି । ଅକିଞ୍ଚନ ପ୍ରାଣୀଗୁଡ଼ାକ ହୁଏତ ଅପ୍ରତ୍ୟକ୍ଷ ଭାବେ ହନ୍ତସନ୍ତ ହେଉଥିବେ କିନ୍ତୁ ସେଗୁଡ଼ାଙ୍କ ଭିତରୁ କେହି କର୍ଣ୍ଣ ନୁହଁନ୍ତି ବା କେହି ଅର୍ଜ୍ଜୁନ ନୁହଁନ୍ତି ।

# ରାବଣ ମରିବ ନାହିଁ

ପଦ୍ମକେଶର ବାବୁ । ଗାଁ ସ୍କୁଲରେ ଶିକ୍ଷକତା କରନ୍ତି । ନାଟକନାଆ ଜଞ୍ଜାଳକୁ ଛାଡ଼ିଦେଲେ ତାଙ୍କ ମନରେ ଭାବୁକତା ଆଷାଢ଼ର ଗାଭଳି ମେଘପରି ସଦାବେଳେ ଦୋଳି ଖେଳୁଥାଏ । କିପରି ମଫସଲ ଅଞ୍ଚଳରେ ସଂସ୍କୃତିର ନାନ୍ଦୀଘୋଷ ପାଇଁ ନ ହେଲେ ମଧ୍ୟ ଠେଲାଗାଡ଼ି ପାଇଁ ସେ ବାଟ ଖୋଲି ଦେଇଥିଲେ । ତାହା ଅବଶ୍ୟ କେଉଁ ଦୂରନ୍ତ ଅତୀତ ଏବଂ ତାଙ୍କ ଯୌବନ କାଳର କଥା । ଇସ୍କୁଲ ପିଲା ଓ ତାଙ୍କ ତୃଷିତ ନୟନରେ ପଡ଼ୋଶୀ ଗାଁର ଯେଉଁ ବାଳକମାନେ ବାଳିକାପରି ଦେଖାଯାଉଥିଲେ ସେ ସେମାନଙ୍କୁ ବାଛି ରୁଣ୍ଡେଇ ଯେମିତି ହେଲେ ନାଟକ, ବଚନା, ଏକାଙ୍କିକା ବର୍ଷକୁ ତିନଥର କରାଇ ଦେଉଥିଲେ । ତହିଁରୁ କେତେକ ସେ ନିଜେ ବି ଲେଖି ପକାଉଥିଲେ । ତାଙ୍କର ଏତାଦୃଶ ସୃଜ୍ୟ-ବ୍ୟକ୍ତିତ୍ୱର ସ୍ୱୀକୃତି ସ୍ୱରୂପ କଳିତକଳା ଏକାଡ଼େମୀ ପୁରସ୍କାର ତ ଦୂରର କଥା, କୌଣସି ସରପଞ୍ଚ ବା ଓ୍ୱାର୍ଡ଼ମେମ୍ବର ଶିରପା ଖଣ୍ଡିଏ କେବେ ତାଙ୍କୁ ଦେଇ ନ ଥିଲେ । ତାଙ୍କ ମନ ଭୂଇଁରେ ସେଥିପାଇଁ ଉହକ ବି ନଥିଲା ।

ଧାତୁ ଦୋଷ ଅନୁଯାୟୀ ସେ ସବୁଦିନ ପରି ଦିନେ ବଳମ୍ବରେ ଶ୍ରେଣୀରେ ପହଞ୍ଚିବା ପୂର୍ବରୁ ପିଲାଙ୍କ କଳରୋଳରୁ ଯାହା ଶୁଣିଲେ ଆଚମ୍ବିତ ନହେବା ଛଡ଼ା ତାଙ୍କର ଅନ୍ୟଗତି ନଥିଲା । ପିଲାଏ କହୁଥିଲେ, ରାବଣ ମରିଗଲେ ରାମାୟଣ ସରିଯିବ ତେଣୁ ସେ କୌଣସି ପ୍ରକାରେ ରାବଣ ନମରନ୍ତୁ କି ! ଶ୍ରେଣୀ କକ୍ଷରେ ଆବିର୍ଭାବ ହେବା ପୂର୍ବରୁ ସେ କଦାପି ଭାବିପାରିଲେ ନାହିଁ ଯେ, ପିଲାମାନଙ୍କର 'ରାବଣ' ପ୍ରତି ସ୍ନେହ, ନୈତିକତାର ଅବକ୍ଷୟ, 'ରାମ'ଙ୍କ ପ୍ରତି ବିତୃଷ୍ଣାର କୌଣସି କାରଣ ବା କୌଣସି କଥାର କିଛି ଅଯୌକ୍ତିକ ଉପସଂହାର ବିଷୟରେ କିଛି ସିଦ୍ଧାନ୍ତ ଅଛି କି ନା ! ପଦ୍ମକେଶର ବାବୁ ନିଜର ଅଙ୍କ ପାଠ ଭୁଲିଗଲେ । ଶ୍ରେଣୀକକ୍ଷରେ ପଶିଲା ବେଳକୁ ଦେଖାଗଲା ପିଲାଗୁଡ଼ିକ

ସବୁ ସୁଧାର । ସେମାନଙ୍କ ମନ-ମୁନ ଚଇତନ ସତେ ଯେମିତି ଗଣିତ ବ୍ୟତୀତ ଆଉ କିଛି ଗ୍ରହଣ କରିବାକୁ ରାଜି ନୁହେଁ ।

ଏପରି ନିର୍ଗୁହପଣରେ ନାଟକରେ ପଦ୍ମକେଶର ବାବୁଙ୍କୁ ଠକିବା କ'ଣ ସହଜ କଥା ? ସେ ପଚାରିଲେ, "ପିଲେ, ରାବଣ କାହିଁକି ନ ମରିବା ଉଚିତ, କୁହତ ?" ପିଲାଏ କି ଆଉ ସାର୍‌ଙ୍କ ସାଙ୍ଗରେ ପୁରାଣ ଆଲୋଚନା କରନ୍ତେ ? ସମସ୍ତେ ଚୁପ୍ । ବହୁତ ପଡିଆରା ଦେଇ ଯେତେ ପଚାରିଲେ ବି ପିଲାମାନେ ସୁଧାରପଣ ଛାଡ଼ୁ ନଥା'ନ୍ତି ।

"ଧରିଯାଉ ରାବଣ ମରିବନି ଓ ରାମାୟଣ ସରିବନି, ତାହେଲେ ତୁମେମାନେ କ'ଣ କେବଳ ଯୁଦ୍ଧ ଦେଖିବାକୁ ଚାହଁ ?"

ସମସ୍ତେ ଚୁପ୍ ।

"ଲାଞ୍ଛିତା ମା' ସୀତା ଗୋଟାଏ ମାୟାବୀ ଅସୁରର କପଟରେ ଶିକାର୍ ହୋଇ ପ୍ରତିଦିନ ନିଜ ଜୀବନର ଆସନ୍ନକାଳ କ'ଣ ହେବ ନଜାଣିପାରି ଲଙ୍କାପୁରୀର ସେଇ ଗୋଟିଏ ଅଶୋକ ଗଛମୂଳେ ବସିଥିବେ ? ତୁମେମାନେ ଜଣେ ମହୀୟସୀ ନାରୀଙ୍କର ଏପରି ଚରି ବ୍ୟାକୁଳତା ଦେଖିବାକୁ ଚାହଁ ?"

ସମସ୍ତେ ଚୁପ୍ ।

"ମଦମତ୍ତ କ୍ଷମତା ଦର୍ପୀ ରାବଣର ଅହଙ୍କାର ତୁମମାନଙ୍କୁ କ'ଣ ଆମୋଦିତ କରୁଛି ?"

ତଥାପି ସମସ୍ତେ ଚୁପ୍ ।

ଅନ୍ୟ କିଏ ହୋଇଥିଲେ ପିଲାମାନଙ୍କ ନୀରବତାକୁ ଔଦ୍ଧତ୍ୟ ବା ଅନମନୀୟତା ଭାବି ରାଗି ଯାଇଥାନ୍ତେ । ମାତ୍ର ପଦ୍ମକେଶର ବାବୁ ତାହା କଲେ ନାହିଁ ।

ସେତିକବେଳେ ବୈରାଗୀ ନାମକ ଗୋଟିଏ ଛାତ୍ର ସାହସ ସଞ୍ଚୟ କରି କହିଲା, "ସାର୍, ରାମାୟଣରେ ଧର୍ମଭାବର ଶିକ୍ଷା ମିଳୁଛି ।"

ବାସ୍, ପଦ୍ମକେଶର ବାବୁଙ୍କ ଟ୍ରିଗାର ଅନ୍ କରିବାକୁ ବୈରାଗୀର ଯୁକ୍ତିଟି ଯଥେଷ୍ଟ ଥିଲା ବୋଧହୁଏ । ସ୍ୱାଭାବିକ ନାଟକୀୟ ଭଙ୍ଗୀରେ ତାଙ୍କ ମନର ବ୍ରହ୍ମ ବୈବର୍ତ୍ତ ଆରମ୍ଭ କରିଦେଲେ ଯେମିତି । "ଧର୍ମ-ଧର୍ମ-ଧର୍ମ । ଆରେ ମୂର୍ଖ, ଆଜି ପର୍ଯ୍ୟନ୍ତ ପାପିଷ୍ଠମାନେ ନିଜ ନିଜର ପ୍ରୟୋଜନ ପାଇଁ ଯେତିକି ଧର୍ମର ମିଶାଣ ଫେଡାଣ କରିସାରିଲେଣି ପୃଥିବୀରେ ସେତିକି ପୂଣ୍ୟ ଗ୍ରନ୍ଥ ହୁଏତ ସୃଷ୍ଟି ହୋଇ ନ ଥିବ । ତୁମେମାନେ ଧର୍ମ ଓ ଛଳନା ଭିତରେ ସୂକ୍ଷ୍ମ ରେଖାଟିକୁ ବାରିପାରୁନା ବୋଧେ ।"

ବାସ୍ , ଥରଟିଏ ପାଇଁ ଚଞ୍ଚୁ ଖୋଲିଥିବା ବୈରାଗୀ ଚୁପ୍ । ଆଉ କାହା ମନ ଯଦି ହୁରୁହୁରୁ ହେଉଥିବ ବି, ଗଳା ମୋଡ଼ି ଦିଆଗଲା ଯେମନ୍ତ ।

"ଆରେ ମୂର୍ଖ ଦଳ, ଯଦି ନଜାଣିଛ ଗାଁରେ ଟଗ୍ରର, ଆମ ଏମ୍. ଏଲ୍.ଏ. ପ୍ରତି ସପ୍ତାହରେ ଗୋଟିଏ ଗୋଟିଏ ସୀତାଙ୍କୁ ଟେକିଆଣନ୍ତି । ତୁମେ କୁଆଗୁଣ୍ଡାକ କ'ଣ ହୁଏ, ମୁଁ କହିବିନି । ଏମିତି ହଜାର ହଜାର ରାବଣ ହଜାର ହଜାର ସୀତାଙ୍କୁ ଅନବରତ ଟେକି ନେଉଛନ୍ତି । କେତେ ସୁନା ମିରିଗ କସମ୍ କସମ୍‌ର ମାୟା ଫାନ୍ଦିଲେଇ ଘୂରିଆଡ଼େ ବୁଲୁଛନ୍ତି । ମଦମତ୍ତ କାମନାର ଇନ୍ଧନରେ ଓ କ୍ଷମତାର ଅହଙ୍କାର ତଥା ରାଜ ସିଂହାସନ ତଳେ କେତେ କଙ୍କାଳ ସୃଷ୍ଟି ହେଉଛନ୍ତି, ଜାଣିଛ ?"

ଏମିତି ଯାହା କହୁଥାନ୍ତି, ସମଗ୍ର କକ୍ଷଟିରେ କେବଳ କହୁଥା'ନ୍ତି ପଦ୍ମକେଶର ବାବୁ । ଶୁଣିବାକୁ ବାକି ସବୁ ।

ଶେଷରେ ସେ କହିଲେ, "ରାମାନନ୍ଦ ସାଗରର ରାମାୟଣ ସରିଯାଉ ଟି.ଭି.ରେ ଚିନ୍ତା ନାହିଁ । ଗୋଟାଏ ରାବଣ ମରିଯାଉ, ଚିନ୍ତା ନାହିଁ । ଅନେକ ରାବଣ ଅଛନ୍ତି । ହେ ମୋର ପ୍ରିୟ ଶ୍ରୋତାଗଣ, ଭାଲୁ ମାଙ୍କଡ଼ ଜଟାୟୁ ଆଦି ନଗଣ୍ୟ ଜୀବନ ଧରି ନାମମାତ୍ର ବଞ୍ଚିରହିବା ଅପେକ୍ଷା ତୁମେ ସମସ୍ତେ ଗୋଟିଏ ଗୋଟିଏ ରାବଣ ହେବାକୁ ଚେଷ୍ଟାକର । ଜାଣିରଖ, ରାବଣର ସତ୍ତା ଅବିନାଶୀ । ଆଜି ସିରିୟଲ୍‌ ସରିଗଲା, ଆଉ ସିରିୟଲ୍‌କୁ ଅଙ୍କ ପଢ଼ାଇବା ।"



# ପ୍ରଭଙ୍କ ସନ୍ଧାନେ

ରାଜା ଭାରି ବିବ୍ରତ ହୋଇପଡ଼ୁଛନ୍ତି, କାରଣ ତାଙ୍କ ଦେଶର ପ୍ରଭୁଭକ୍ତଗୁଡ଼ାକ କୁଆଡ଼େ ସବୁ ପଳାଉଛନ୍ତି । ପ୍ରଥମ ପ୍ରଥମ କଣ୍ଟ୍ରାକ୍ଟରମାନଙ୍କ ଦ୍ୱାରା ସୀମା ଜଗେଇ ଦିଆଗଲା ତଥାପି ଯୋଉ କଥାକୁ ସେଇ କଥା । ମନ୍ତ୍ରୀ ପରାମର୍ଶ ଦେଲେ, "ହଜୁର, ହାତୀ ଦେବ, ଘୋଡ଼ା ଦେବ ବୋଲି ଘୋଷଣା କରି ଦିଅନ୍ତୁ—ବେକୁବ୍ ଦଳ ଝିରଝିର ହୋଇ ଆସିଯିବେ ।" ସେକଥା କରିବା ପରେ ବି ରେଜଲ୍ଟ କିଛି ନାହିଁ, ସବୁ ଫେଲ୍ । ରାଜା ଯେତେ ଉଦ୍ୟମ କରୁଥାନ୍ତି ଓ ଯେତେଥର ଖଣ୍ଡିଆ ନାସିକାପରି ଉର୍କି ମାରି ଅଣ୍ଡାଳୁଥାନ୍ତି—କାଳେ କିଏ ଆସିଗଲା କି, ସେତେଥର ଓ ସେତିକି ଗୁରୁତର ଭାବେ ତାଙ୍କ ମୁଣ୍ଡର ସ୍ପ୍ରିଙ୍ଗ୍ ଢିଲା ହୋଇଯାଉଥାଏ । ମନ୍ତ୍ରୀ ମଧ୍ୟ ଚାଲୁବ୍, ତଥାପି କାହିଁକି ଏ ପ୍ରଭୁଭକ୍ତଗୁଡ଼ାକ ଟିକେ ପେଁକାଳି ବଜାଇବାକୁ ହେଲେ ଆସୁନାହାନ୍ତି ।

ରାଜ୍ୟରେ ଯାହା କିଛି ସମର୍ଥ କାର୍ଯ୍ୟ ହୋଇପାରୁଥାଏ ତାକୁ 'ମୁଁ କରିଛି' ବୋଲି ଦାବି କରିବା ରାଜକର୍ମଚାରୀଙ୍କ ସଂଖ୍ୟା କମ୍ ନଥାଏ । ବରଂ ତନ୍ମଧ୍ୟରୁ କେତେକ କୌଶଳକରି ରାଜ୍ୟ-ଶ୍ରୀ, ରାଜ୍ୟ-ଭୂଷଣ ଓ ପୁରସ୍କାର ଆକାରରେ ସୁନାମୋହର ଆଦି ରାଜାଙ୍କଠାରୁ ହାସଲ କରି ନେଉଥାନ୍ତି । ମାତ୍ର ବିଦ୍ୟୁତ୍; ଜଳସେଚନ, ପରିବହନ, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ ଆଦି ଯେଉଁ ବିଭାଗ ସବୁ ଗଫଲତିରେ ପୂର୍ଣ୍ଣ ସେଠାକାର ତାଲୁକ୍‌ଦାରମାନେ କେବଳ ଗୋଟିଏ କୈଫିୟତ ଦେଉଥାନ୍ତି—ପ୍ରଭୁଭକ୍ତ ନାହାନ୍ତି । ରାଜା ହେଲେ ବି ରକ୍ତମାଂସ ଦେହର ମଣିଷ ତ ସିଏ । ଗୋଟାଏ କଥା ଅନେକ ଲୋକଙ୍କଠାରୁ ଶୁଣି ଶୁଣି ତାଙ୍କ ମିଜାଜ୍ ଗରମ ହୋଇଯାଉଥାଏ ।

ଏହି ଅବସ୍ଥା ଯୋଗୁ ରାଜାଙ୍କ ମନରେ ଏପରି ଏକ ଡିପ୍ରେସ୍ଟ ଭାବ ଉଦୟ ହେବାକୁ ଲାଗିଲା ଯେ, ସେ ଚିନ୍ତା କଲେ, ଧିକ୍ ଏ ରାଜ୍ୟ, ସନ୍ନ୍ୟାସ ନେଇଯିବା ହୋ । ରିପୋର୍ଟ କହୁଛି ପ୍ରଭୁଭକ୍ତ ଅମଳ ହେଉଛି ଏଠି, ଅଥଚ

ଏମିତି ସୈରା ଚାଳଣା ହୋଇଯାଉଛି ଯେ, କେହି ଜାଣିପାରୁ ନାହାନ୍ତି । ସୁତରାଂ, ଜନଯୋଗ ନହୋଇ ପାରୁଥିବା ଯୋଗୁ ଦେଶରେ ଏ ଦୁର୍ଗତି ।

ଚିନ୍ତିତ ରାଜାଙ୍କ ସ୍ୱାସ୍ଥ୍ୟ ଭଗ୍ନ ହେବାରେ ଲାଗିଥାଏ । ଟେଲିଭିଜନ୍ (ଧରାଯାଉ, ସେତେବେଳେ ସେହିପରି କିଛି ଥିଲା)ରେ ଯେତେ ଦେଖିଲେ ମଧ୍ୟ ପ୍ରଗତି ପ୍ରଚାର ଉପରେ ତାଙ୍କର ପତିଆରା ଆସୁନଥାଏ । ତାହା ପରିଷଦବୃନ୍ଦଙ୍କ ମିଥ୍ୟା ପ୍ରଚାର ଜାଣି ମଧ୍ୟ ସେ ନିଜ ମନକୁ ପ୍ରବୋଧନା ଦେଉଥାନ୍ତି : ହୋଇପାରେ, କାଳେ ଲୋକଙ୍କ ମୋରେଲ୍ ଭୂଲୁଣ୍ଠିତ ହୋଇଯିବ ସେଥିରୁ ରକ୍ଷା ପାଇବା ପାଇଁ ଏସବୁ ଆମ ରାଜ୍ୟ ଶାସକମାନଙ୍କ ଆଡ୍‌ମିନିଷ୍ଟ୍ରେଟିଭ୍ ଟ୍ରିକ୍ ।

ବିଦୂଷକ ବିଚରା ବଡ଼ ଚିନ୍ତିତ, କାରଣ ତା'ର ବୃତ୍ତି ବୁଡ଼ିବା ଭଳି ଅବସ୍ଥା ଆସିଗଲାଣି । ରାଜା ତ ହସୁନାହାନ୍ତି, ସେ ହସାଇବ କାହାକୁ ? କେତୋଟି କଥା ତା' ମନରେ ଦ୍ୱନ୍ଦ୍ୱ ସୃଷ୍ଟି କରୁଥାଏ । ପ୍ରତିବର୍ଷ ମରୁଡ଼ିର ନାଁ ବାରମ୍ବାର କୁହାଯାଉଥିଲେ ମଧ୍ୟ ରାଜକର୍ମଚାରୀମାନଙ୍କ କୋଠା ଡିଆରି ତ କମୁନାହିଁ, ବରଂ ବଢ଼ୁଛି । ପ୍ରତିବର୍ଷ ରାଜ୍ୟର ବଜେଟ୍ ବଢ଼ୁଛି । ସବୁ ଅର୍ଥ ଖର୍ଚ୍ଚ ବି ହୋଇଯାଉଛି । କେବଳ ଯାହା ଜଣାପଡ଼ୁନାହିଁ ତାହାହେଲା କେନାଲ୍‌ରେ ପାଣି, ତାରରେ ବିଜୁଳି, ଡାକ୍ତରଖାନାରେ ଚିକିତ୍ସା ଇତ୍ୟାଦି ।

ଦିନେ ସେ ହିମ୍ମତ କରି ରାଜାଙ୍କ ପାଖରେ ପହଞ୍ଚିଗଲା । କହିଲା, "ହଜୁର, ସବୁଠାରୁ ଯାହା ବେଶୀ ଭୂଲିରେ ଖୋଲିଯାଏ ତାହା ହେଲା ମଣିଷର ପାଟି । ମଣିମା, ଆପଣଙ୍କ ବିମର୍ଷ ବଦନ ଦେଖି ଦେଖି ମନ ମୋର ବେଦନ କରୁଛି । କିଛି କହିବାକୁ ହଜୁର ଅନୁମତି ଦେବେ ?"

ମହାରାଜ ମୁଣ୍ଡ ଟେକି ଚାହିଁଲେ । ଚିର ପରିଚିତ ବିଦୁଷକ, ଯିଏ ସବୁଦିନେ ହସାଏ । କିନ୍ତୁ ଏବେ ସେ ହସି ପାରୁନାହାନ୍ତି । କହିଲେ, "କୁହ" ।

ବିଦୁଷକ କହିଲା : ବିଚରାଟା ମା'ଟିଏ ନିଜ କୁଆଁରୀ ଝିଅକୁ ନେଇ ଡାକ୍ତରଙ୍କ ପାଖକୁ ଯାଉଛି । ଡାକ୍ତର କହିଲେ, ଗର୍ଭବତୀ । ମା'ମୁଣ୍ଡରେ ଚଡ଼କ ପଡ଼ିଲା ଯେମିତି । ସେ ବଲବଲ ହୋଇ ଝିଅ ମୁହଁକୁ ଅନାଇଲା । ଝିଅ

କହିଲି, ମା'ଲୋ, ମୁଁ ଆଜି ପର୍ଯ୍ୟନ୍ତ କାହାର ହିପ ଛୁଇଁନି । ବିଦ୍ୟାଗଣ, ମୋତେ ବିଶ୍ୱାସ କର । ମା' ମନ, କୁଆଡ଼େ ଆଉଜିବ ? ସେ ଡାକ୍ତରଙ୍କୁ କହିଲି, କେତେ ବଡ ପାପ କଥାଟେ କହୁଛନ୍ତି ଡାକ୍ତରବାବୁ । ମୋ ଝିଅ ପରି ଝିଅ ଏ ଖଣ୍ଡମଣ୍ଡଳରେ ନଥିବ । ରଙ୍ଗ ତାକୁ କାଳେ ପ୍ରଲୁବ୍‌ଧ କରି ପକାଇବ ବୋଲି ଉଡ଼ିଯାଉଥିବା ପ୍ରଜାପତିଠାରୁ ସେ ନଜର ଆଡ଼େଇ ନିଏ । ଯେଉଁ ଫଟୋରେ କହ୍ନାଇ ମୋହନ ବଂଶୀ ଧରିଥାନ୍ତି ସେ ଫଟୋକୁ ବି ଆଡ଼ ଆଖିରେ ଅନାଏ ନାହିଁ ଦୁଲାଳୀ ମୋର । ବାପ ଭାଇଙ୍କ ସାଙ୍ଗରେ କଥା ହୁଏନି··· ।

ବିହ୍ୱଳିତା ହୋଇ ମା'ଟି ଏପରି ଗପି ଗ୍ଭଲିଥିବାବେଳେ ଡାକ୍ତରବାବୁ ଯାଇ ଷ୍ଟ୍ରେଚର୍ ଝରକା ପାଖରେ ଠିଆହୋଇ ଚନ୍ଦ୍ରାଶୂନ୍ୟ ପରି ଆକାଶକୁ ଅନେଇଛନ୍ତି । ବକ୍‌ବକ୍ କରୁଥିବା ଭଦ୍ରମହିଳା ସମ୍ବିତ୍ ଫେରିପାଇ ତାଙ୍କ ପାଖକୁ ଉଠିଗଲେ ଏବଂ ପଗ୍ଭରିଲେ, ସାର୍ କ'ଣ ହେଲା ? ଏଠି କାହିଁକି ଛିଡ଼ାହୋଇଛନ୍ତି ?

ଡାକ୍ତରବାବୁ କହିଲେ—ନା, ସେ କିଛି ନୁହେଁ । ମୁଁ ନିରୀକ୍ଷଣ କରୁଛି ଗୋଟାଏ ଜିନିଷ । ଆମ ଶାସ୍ତ୍ରରେ ଲେଖାଅଛି ଯେ ଡାକ୍ତରୀ ବିଦ୍ୟାର ଏହିପରି ସଙ୍କଟ ଅତୀତରେ କେବଳ ଥରେ ମାତ୍ର ପଡ଼ିଥିଲା ଓ ସେହି ସମୟରେ ପୂର୍ବ ଦିଗରେ ଗୋଟିଏ ନିର୍ଦ୍ଦିଷ୍ଟ ତାରକା ଉଦୟ ହୋଇଥିଲା । ମୁଁ ଏବେ ଆକାଶରେ ସେଇ ତାରାଟିକୁ ଖୋଜୁଛି ।

ଗପଟି କହିସାରି ବିଦୂଷକ କହିଲା, "ମଣିମା, ମୁଁ ମୂର୍ଖ ଲୋକ । ହଜୁର ଅନୁମତି ଦିଅନ୍ତୁ ବୋଲି ମୁଁ ବେହେଲ ପରି କେତେକ କଥା କହି ମଣିମାଙ୍କ ମନ ତୁଷ୍ଟ କରାଏ । ଆମ ରାଜ୍ୟରେ ସବୁ ଅଛି । ନିଜ ଲାଭ ପାଇଁ ପାରିଷଦମାନେ ସବୁ ପ୍ରତିଭାର ସନ୍ଧାନ ପାଇପାରୁଛନ୍ତି, ନିଜକୁ ପ୍ରତିଭା ବୋଲି ଜାହିର କରିପାରୁଛନ୍ତି । ଅଥଚ ରାଜ୍ୟର ଉନ୍ନତି କଥା ଉଠିଲା ବେଳକୁ ସେଇ ଦ୍ରବ୍ୟଟିର ମରୁଡ଼ି କେମିତି ହେଉଛି ? ଡାକ୍ତରବାବୁଙ୍କ ତାରକା ସନ୍ଧାନ ପରି ମୋ ମନଟି କାହିଁକି ସେହିପରି ଏକ ତାରକା ଖୋଜିବାକୁ କଲବଲ ହେଉଛି ।"

ରାଜା କିଛିକ୍ଷଣ ଗୁମ୍ ମାରି ବସିଗଲେ । ତା'ପରେ କହିଲେ—କିଛି ପ୍ରତିକାର କହିପାରିବ ?

ବିଦୂଷକ କହିଲା, "ମୁଣ୍ଡ ରହିବାକୁ ଅଭୟ ମିଳିଲା ଯେତେବେଳେ ତୁଣ୍ଡ ଅବଶ୍ୟ କିଛି କହିବ । ହଜୁର ଗୋଟିଏ କଥା ମାନିବେ ? ଯେତେକ ପାରିଷଦ ପ୍ରତିଭା ମରୁଡ଼ି କଥା କହୁଛନ୍ତି ଓ ରାଜଧାନୀରେ ବା ଅନ୍ୟତ୍ର କୋଠାବାଡ଼ି ତଥା ଅପର୍ଯ୍ୟାପ୍ତ ସମ୍ପତ୍ତିର ଅଧିକାରୀ ହୋଇପଡ଼ିଛନ୍ତି ସେମାନଙ୍କର ଏକ ସଠିକ୍ ବିବରଣୀ ପ୍ରସ୍ତୁତ କରାଯାଉ । ସେଥିରୁ ବାଛି ବାଛି ହଜୁର ଗଣ୍ଡା କେତେକୁ ଫାଶୀ ହୁକୁମ ଦେବା ହୁଅନ୍ତୁ । ବିଶ୍ୱାସ ହେଉଛି, ପ୍ରାୟ ସବୁ ଠିକ୍ ହୋଇଯିବ । ଯେଉଁମାନେ ମରୁଡ଼ି ପାଇଁ ଦାୟୀ, ସେଇମାନେ ହିଁ ମରୁଡ଼ି ସମ୍ପର୍କରେ ଆପଣଙ୍କ ମନରେ ଭ୍ରାନ୍ତ ସୃଷ୍ଟି କରୁଛନ୍ତି ।"

ବୋଧହୁଏ ରାଜା ସେହିପରି କିଛି କରିବାକୁ ମନସ୍ଥ କରିଥିବା ବିଷୟରେ ସୂଚନା ପାଇବା ମାତ୍ରେ ହିଁ ଦେଖାଗଲା ରାଜ୍ୟରୁ ପ୍ରତିଭା ମରୁଡ଼ି ହଟିଗଲା ଓ ଏକ ଦୁଃସ୍ୱପ୍ନ ତୁଟିଯିବା ପରି ତାଙ୍କ ରାଜ୍ୟ ସଜାଡ଼ି ହେବାରେ ଲାଗିଲା ।



# ମୋତେ କପଟୀ କିଆଁ କଲୁ ?

ତୋପ୍ ଏଇଥିପାଇଁ ମୁଁ ନିଜ ମନ ଓ ବିବେକ ସହିତ ଯେଉଁ ସମର ଯୁଝିଛି ଓ ସେଇ ରଣଭୂଇଁରେ ରକ୍ତାକ୍ତ, ନିଆଶ୍ରା ହୋଇ ଯେତେବେଳେ ନିଜ ଭିତରେ ବାଧ ହୋଇ ପଶିଯାଉଛି ସେତେବେଳେ ତୁ ଟିକିଏ ଆଡ଼ ଆଖିରେ ଅନାଉନାରେ, ବଳଆରଦ୍ଧନ । ତେଣୁ ପ୍ରଥମଥର ପରି ଆଉଥରେ ମୁଁ ଅସହାୟ, ଏକାକୀ ହୋଇପଡ଼େ । ଅଥଚ ତୁ ବାହାଦୁରୀ ନେଉ— କ'ଣ ନା, ମୁଁ ସବୁ କରିଛି । ତା'ହେଲେ ମେସିନ୍‌ରେ ଡ଼ିଲ 'ଇସ୍କ୍ରୁ' ପୂରାଇ କାହିଁକି 'ସାବୋଟେଜ୍' କରିବୁ ?

କରିବା, କହିବା ଓ ନିଜ କାଡ଼୍ ପଣ ବିଷୟରେ ନାନାଦି କୌଶଳ କରି ଅପରର ମନରେ ନିଜ ଇଚ୍ଛା ଅନୁଯାୟୀ ପରିଆରି ସୃଷ୍ଟି କରିବାକୁ ସକ୍ଷମ ହୋଇପାରୁଥିବା ପ୍ରତ୍ୟେକ ମଣିଷ, ଆଶା କରୁଛି, ଅନେକ ସଙ୍କଟରେ ବିଷ-ମଣ୍ଡା ଖାଇବାକୁ ବାଧ ହେଉଥିବେ । ହଁ, ଅବଶ୍ୟ ଗୋଟିଏ ସର୍ତ୍ତ, ଯଦି ଝଡ଼ ପରେ କଦାପି ପୃଥିବୀ ଶାନ୍ତ ହେଉଥାଏ ।

ଯୁବକଟିଏ । ପରବାସୀ । ଆବଶ୍ୟକତା ଅନୁଯାୟୀ ବାହା ହୋଇଗଲା । ହଉ, ସେଥିରେ କ'ଣ ଅସୁବିଧା ଅଛି କି ? କିନ୍ତୁ ସେ ବିଲେଇକୁ ଘିଅ ରଖେଇ ହାଣ୍ଡି ଶିକାରେ ଥୋଇଦେବା ପରି କାମଟିଏ କଲା । ଛୁଟି ପୂରିଯିବାପରେ ସେ ପ୍ରବାସକୁ ପଳାଇଲା । ଫୁଲର ବାସ୍ନାକୁ କିଏ ରୋକିପାରେ ଅଥବା ମନର ଆବେଗକୁ ଏତେ ସହଜରେ କିଏ ଆଗୁଳେଇ ପାରେ ଯେ ? ନୂଆ ବାହାହୋଇଥିବା ପୂର୍ଣ୍ଣ ଯୌବନା, ରୂପସୀ, ସ୍ୱାଦ-ସିକ୍ତା ଘରଣୀଟି ଟିକିଏ ପାଦ ଖସେଇ ଦେଲା । ଦେଖିବାକୁ କେହି ନାହିଁ, କହିବାକୁ କେହି ନାହିଁ, ଆକଟିବାକୁ କେହି ନାହିଁ ମଧ୍ୟ ।

ସମସ୍ତେ ଜାଣିଥିବେ, ପରକୀୟା ପ୍ରୀତି—ଦିନ ଦିନ ପରି ଲାଗେ ନା ରାତି ରାତି ପରି ! ଯେତେ ଭାବ ସବୁ ଅନିର୍ବଚନୀୟ, ଯେତେ ବିହ୍ୱଳତା ସବୁ ଅବ୍ୟକ୍ତ । ଏହାପରେ ଗୋଟିଏ ରାତିର ଘଟଣା । ସେତେବେଳକୁ

ନାୟକ-ନାୟିକାଙ୍କ ଆଦ୍ୟରସର ଗଭୀର ଜୁଆରକୁ କାଚ ପାଉ ନ ଥାଏ । ବାହାରେ କବାଟ ଖଡ଼ଖଡ଼ ହେଲା । ଚମକ ପଡ଼ିଲେ ଧଡ଼୍କି ଧଡ଼୍କି । ପରକ୍ଷର ମନକୁ ପ୍ରବୋଧନା ଦେଇଦେଲେ—ହେସ୍, କୁକୁର ବୋଧେ କବାଟରେ ମୁହଁ ଘଷୁଛି । ଆମର ଭ୍ରମ ସୃଷ୍ଟି ହେଉଛି । କବାଟ ବାଡ଼ିଆ ଯେତେବେଳେ ବାରମ୍ବାର ହେଲା, ଚକିତା ରମଣୀ ଶଙ୍କା, ସିନ୍ଦୂର ଉପରେ ଆଉ ନିଜ ମନକୁ ବଳାଇ ପାରିଲା ନାହିଁ ।

ସନ୍ତର୍ପିତା ହୋଇ କବାଟରେ ଥିବା ଜଳାମୁହଁ ବାଟେ ଦେଖିଲା । ଯାହା ଦେଖିଲା, ସେ ଅବସ୍ଥାରେ କାହାର ହଳକ ନ ଶୁଖିବ ଯେ, ବାହାରେ ଠିଆ ହୋଇଛନ୍ତି ସ୍ୱାମୀ । ଇହକାଳ, ପରକାଳର ଦେବତା ।

ଆଉ କିଛି ସମୟ ଅଣ୍ଡହାନ୍ତ କରାଇ ସ୍ତ୍ରୀଟି ଆଖି ମଳି ମଳି କବାଟ ଖୋଲିଲା । ସ୍ୱାମୀଙ୍କୁ ଦେଖି ବିସ୍ମିତା ରମଣୀଟି ଭୁଜ ବନ୍ଧନରେ ନିଜ ପ୍ରୀତି, ଅଳସ, ଅଭିମାନ ବ୍ୟକ୍ତ କରିବାକୁ ବସିଲା ଯେମିତି ! କହିଲା—କୋଉ ମାୟାବିନୀକୁ ଦେଖି ମୋତେ ପୂରା ମନରୁ ଆଡେଇ ଦେଇଥିଲ ମ ? ତୁମ ବିନା ମଳୟକୁ ମଳୟ ବୋଲି ଜାଣୁଥାଏ ନା ସୁଖକୁ ସୁଖ ବୋଲି । ଏତେ ପାଷାଣ କେମିତି ହେଲ ?

ଏମିତି କପଟାଗ୍ରର ଜରିଆରେ ଗୋଟିଏ କଥା ସେ ସବୁବେଳେ ମନେ ଖେୟାଲ୍ ରଖିଥାଏ, ସ୍ୱାମୀ ଯେମିତି ଘର ଭିତରକୁ ପଶି ନ ଯାଆନ୍ତି । ତା'ପରେ ଛଳଛଳ ଆଖି କରି କହିଲା—ଜାଣିଛ, ଗଲଥର ତୁମେ ଯେଉଁ ଲାଉ ମଞ୍ଜି ଖଳାବାରିରେ ପୋତି ନଥିଲ, ସେଥିରେ ଏବେ ଗଦାଗଦା ଫୁଲ, କେତେ ନା କେତେ କଷି । ସେଇଆକୁ ଦେଖି ମୁଁ ତୁମ କଥା ସ୍ମରଣ କରେ । 'ନିରବଧି ହୃଦୟକୁ କାମଦେବ' ଦହୁଥିଲା; କେତେ ସହିଥା'ନ୍ତା ମୋ ପରି ଅବଳାଟି ? ତୁମେ ମୋ ସ୍ମୃତିର ଲାଉ ଫୁଲ । ହେ ମୋ ପୀରିତିର ଗଳା ଗଜରା, ଗୁଲ ନା ଟିକେ, ଉଭୟଙ୍କ ପ୍ରେମର ସ୍ମୃତି ସେଇ ଲାଉଗଛକୁ ଦେଖିଆସିବ ।

ସ୍ୱାମୀ ତାହାହିଁ କଲା । ବ୍ୟବସ୍ଥାନୁଯାୟୀ ଏଣେ ନାଗର ଡିଆଁ ମାରି ପାରି । ଗାଡ଼ି, ଖମା, କଣ୍ଟାଝଟା କିଛି ନମାନି ସେ ଦଉଡ଼ୁଛି ଯେ

ଦଉଡ଼ୁଛି । ଯାହାହେଉ, ଚକ୍ଷୁଷ୍ମ ପ୍ରେୟସୀ ପାଇଁ ସେ ନିଜ ଜୀବନଟା ଫେରିପାଇଛି । ତା ବୁଦ୍ଧିକୁ ଚବିଶ କ୍ୟାରେଟ ତାରିଫ୍ କଲି ।

ଘରେ ପହଞ୍ଚି ସେ ଦୁମ୍‌ଦୁମ୍ କବାଟ ବାଡ଼େଇଲା । କବାଟ ଖୋଲୁନାହିଁ । ଅଥୟ ମନ ବିରକ୍ତ ହେଲାଣି । ଏତିକିବେଳେ ସେ ଦେଖିଲା ଆଖି ମଳି ମଳି ତା'ର ଅର୍ଦ୍ଧାଙ୍ଗିନୀ ଦୁଆର ମୁକୁଳା କରି ନିଜ ଭୁଜ ଯୁଗଳରେ ସ୍ୱାମୀଙ୍କୁ ଭିଡ଼ିଧରି ଗଣ୍ଡ, ଚିବୁକରେ ଗଭୀରଭାବେ ଚୁମ୍ବନ ଦେବାରେ ଲାଗିଲେ ଓ ପରିଶେଷରେ କହିଲେ, "ଦେଖିଲ, ଆକାଶ ପୃଥିବୀକୁ ମିଶାଇ ଦେଇପାରୁଥିବା ପରି କି ସୁନ୍ଦର ଜହ୍ନରାତି । ମୁଁ ତମରି କଥା ଖାଲି ଭାବୁଥିଲି, ତମେ କୋଉଠି ଥିଲ ? କ'ଣ ଦେଖାଗଲଣି ଟି । ଚାଲ ମ ଟିକେ, ଝରକାବାରିର ନିରେଳାରେ ବସି ଜହ୍ନକୁ ଉପଭୋଗ କରିବା ।"

ସ୍ୱାମୀଟିର ଯେଉଁ କ୍ଷୀଣ ନିଶ୍ୱାସ ଚାଲୁଥିଲା ତାହା ଯେମିତି ବନ୍ଦ ହେବା ଉପରେ । ଧରିଯାଉ, ତତ୍‌ପରେ ସେ ଗୀତ ଆକାରରେ ନିଜ ବକ୍ତବ୍ୟ ପ୍ରକାଶ କଲା : ଲାଉ ଭାଡ଼ି ଯୋଗୁ ପବଣ ରହିଲା/ ଛଇଳା ଲୋ/ କେତେବା ପେଖନା ଥୋଉ ? କଣ୍ଟାଝିଙ୍କା ମାଡ଼ି ପାଦେ ମୋ ରକତ/ ନାଗଶ୍ରୀ ଲୋ/ ଚନ୍ଦ୍ରମା ଗାତକୁ ଯାଉ ।

ଉପରୋକ୍ତ ଗପଟି ବିଷ-ମଣ୍ଡାର ଗୋଟିଏ, ହୋଇପାରେ ଉତ୍ତାଳ, ଉଦାହରଣ ମାତ୍ର । ଏହିପରି ଏକ ପରିମାପକ ବ୍ୟବହାର କରି ଆମେମାନେ ବିଭିନ୍ନ କ୍ଷେତ୍ରରେ ଯେଉଁ ଅନୁଭୂତି ଉପାର୍ଜନ କରୁଥିବା, ତାହିଁରେ ଫିଟ୍ କଲେ କିଏ କେତେ ବିଷ-ମଣ୍ଡା ଖାଇଥିବେ ତାହା ଅନ୍ତତଃ ନିଜେ ବାରିବାକୁ ସକ୍ଷମ ହୋଇପାରିବା । କେହି ଚେଷ୍ଟା କରିବେ କି ?



# 'ପେରେସ୍ତ୍ରୋଇକା'

କଥାଟି ଏବେ ବେଶ୍ ଗୁଳୁଛି । ବହୁବର୍ଷଧରି ସୋଭିଏତ୍ ନାଗରିକଗଣ 'ଲିବରାଲ୍' ହେବାପାଇଁ ଯେପରି ଉତ୍କଣ୍ଠା ପ୍ରକାଶ କରିଆସୁଛନ୍ତି ଶାସନ ତାହାଁରୁ କେତେ ଦୂରରେ, କେତେ ଦୀର୍ଘ ସମୟ ଧରି ରହିପାରିବ ବା ? ତେଣୁ ଏଥର ସେଠାରେ ବ୍ୟକ୍ତି-ସ୍ୱାଧୀନତାକୁ ଲାଇସେନ୍‌ସ ଦିଆଗଲା । ଆମର ଗୋଟିଏ ଢାପଣ କଥା ମନେପଡ଼ୁଛି—"ଅମୁକ ସେଇକଥା ତ କରନ୍ତି, ଖାଲି ବସ୍ତ୍ରସ ଗଡ଼େଇ ମରନ୍ତି ।" ତଥାପି ମନକୁ ଆସୁଛି 'ଦିଲ୍ଲୀ କା ଲଡ୍ଡୁ'—ଖାଇଯାଅରେ ବାପ, ପରେ ହିଁ ବୁଝିବ ।

ସ୍ୱାଧୀନତାର ସ୍ୱରୂପ କ'ଣ, ପ୍ରତ୍ୟେକ ବ୍ୟକ୍ତିର ସେହି ସ୍ୱାଧୀନତା ସହିତ କିପରି ସମ୍ପର୍କ ରହିବା ଦରକାର, ରୁଚିର ସ୍ୱାଧୀନତା ବା ପେଟର ସ୍ୱାଧୀନତା ଭିତରୁ କେଉଁଟା ଆଗ ବା ଗୋଟାଏକୁ ଧରିଲେ ଆରଟି ଆପେ ହଜିଯାଏ କି ନା—ଏସବୁର ଏକ ପ୍ରମାଣିତ ଉପସଂହାରରେ ମଣିଷ ଜାତି ଏପର୍ଯ୍ୟନ୍ତ ପହଞ୍ଚିପାରି ନାହିଁ ।

ସହଜପନ୍ଥୀ ବ୍ୟବସ୍ଥା ଓ କଠୋର ଶାସନ ଦୁଇଟିଯାକ ପରସ୍ପରର ପରିପୂରକ ନୁହନ୍ତି । ଏକଥା ବିଶ୍ୱ ଇତିହାସ ଅହରହ ପ୍ରମାଣ କରିଆସୁଛି । ଯାହାହେଉ, ୧୯୧୭ ବିପ୍ଳବରେ କମ୍ୟୁନିଷ୍ଟମାନଙ୍କ ପାଇଁ ଗୋଟିଏ ଗୋହିରିଗଲା ରାସ୍ତା ଉଦ୍‌ଭାବନ ହୋଇଥିଲା ତାହା ଏବେ ବଡ଼ବଡ଼ ହେବାକୁ ବସିଲାଣି । ଗୋଟିଏ ଦଳର ଏକଛତ୍ର ଶାସନ ସତ୍ତ୍ୱେ ତାହାକୁ ଗଣତନ୍ତ୍ର କୁହାଯାଉଥିଲା । ଏବେ ସେଥିରେ ଆଉ କିଛି ନୂଆ ( ? ) ଏକ୍‌ସପେରିମେଣ୍ଟ କରିବେ ବୋଲି କୁହାଯାଉଛି । ସୋଭିଏତ୍ ରୁଷ୍‌ର ଏପରି ଆଚରଣ ଦେଖି ମନରେ ସ୍ୱାଭାବିକ ଉଦ୍‌ବେଗ ଜାତ ହେଉଛି ଯେ ଖାସ୍ ମନିଟର୍ ଯଦି ଦୁଷ୍ଟାମି କରେ, ଶ୍ରେଣୀରେ ଶାନ୍ତିଶୃଙ୍ଖଳା ରକ୍ଷାକରିବ କିଏ ?

ଜ୍ୟୋତି ବସୁ, ନମ୍ବୁଦ୍ରିପଦ ବା ସେଇ ଗୃହଶାଳୀର କସମ୍ କାଏମ୍ ବାନା ବଇରଖ ଧରିଥିବା ନେତାମାନେ ଏତେବଡ଼ ଆନ୍ତର୍ଜାତିକ ଘଟଣାର କିଛିହେଲେ ଅଧ୍ୟବ୍ଧନାତ୍ମକ ମନ୍ତବ୍ୟ ଦେଉନାହାନ୍ତି । ତେଣୁ ସେମାନଙ୍କ ମତଗତି ଜଣାପଡ଼ୁନାହିଁ । କିନ୍ତୁ ଦିନ ତଳେ ସାଂଘାତିକ ବୁର୍ଜୋୟା-ରୁଚିର ଗୋଟିଏ ଘଟଣା, ରୁଷିଆରେ କୁମାରୀମାନଙ୍କ ଫେସନ୍ ପ୍ୟାରେଡ୍ ଓ ବିଉଟି କଣ୍ଟେଷ୍ଟ ସମ୍ପର୍କରେ ଜ୍ୟୋତି ବସୁ ନିଜର ପ୍ରତିକ୍ରିୟା ପ୍ରକାଶକରି ସଂକ୍ଷିପ୍ତ ମନ୍ତବ୍ୟଟିଏ ଦେଇଥିଲେ । କମ୍ୟୁନିଷ୍ଟମାନେ କ'ଣ ମଣିଷ ନୁହଁନ୍ତି ? ହଜୁର, ଏକଥା ଆଗରୁ କିଏ ମନାକରିଥିଲା କି ?

ଏଇଠି ତିନୋଟି ନାଁ ମନକୁ ଆସୁଛି—ଲିଓ ଟଲ୍‌ଷ୍ଟୟ (୧୮୨୮—୧୯୧୦), ଆନ୍ତୋନ୍ ଚେକଭ୍ (୧୮୬୦—୧୯୦୪) ଓ ବୋରିସ୍ ପାସ୍ତରନାକ୍ (୧୮୯୦—୧୯୬୦) । ପ୍ରଥମ ଦୁଇଜଣଙ୍କୁ ବିପ୍ଳବୋତ୍ତର ସୋଭିଏତ୍ ଶାସନ ଆଦରିନେଲେ ଯଦିଓ ସେମାନଙ୍କ ବିଶ୍ୱବନ୍ଦିତ ସୃଷ୍ଟି : 'ଆନ୍ନା କାରେନିନା' (ଟଲ୍‌ଷ୍ଟୟ), 'ଅଙ୍କଲ୍ ବାନିୟା', 'ଦି ଥ୍ରୀ ସିଷ୍ଟରସ୍' (ଚେକଭ୍)ରେ ବ୍ୟକ୍ତିବାଦୀ ମନସ୍ତାତ୍ତ୍ୱିକ ଅନୁଶୀଳନ ଅତି ସ୍ପଷ୍ଟ ଏବଂ ସବୁଗୁଡ଼ିକ ୧୯୩୨ରେ ପ୍ରଥମଥର ସାହିତ୍ୟପାଇଁ ଅନୁସୃତ ହୋଇଥିବା ଷ୍ଟାଲିନ୍‌ପନ୍ଥୀ Socialist Realism ର ସମ୍ପୂର୍ଣ୍ଣ ବିପରୀତ । ଏପରି ଆଦରି ନେବାର କାରଣ ବୋଧହୁଏ ଏଇଆ ଥିଲା ଯେ ସେମାନେ ଥିଲେ ବିପ୍ଳବର ପୂର୍ବବର୍ତ୍ତୀ ବ୍ୟକ୍ତିତ୍ୱ ଓ ସେମାନଙ୍କୁ ଦେଖେଇ ବିଶ୍ୱସାହିତ୍ୟରେ ଗୌରବ ଅର୍ଜନର ସମ୍ଭାବନା ଥିଲା ।

ମାତ୍ର ବୋରିସ୍ ପାସ୍ତରନାକ୍ ? ରାଜନୀତିକୁ ନେଇ ସାହିତ୍ୟରେ ସୁବିଧାବାଦ ପୂରେଇବାର ଆନୁଷ୍ଠାନିକ କୌଶଳ ପ୍ରାୟ କମ୍ୟୁନିଷ୍ଟ ଜଗତ ବ୍ୟତୀତ ଆଉ କେଉଁଠି ମିଳିବ ନାହିଁ । ପାସ୍ତରନାକ୍‌ଙ୍କ ଅନବଦ୍ୟ ଉପନ୍ୟାସ 'ଡକ୍ଟର ଜିଭାଗୋ' ରୁଷିଆରେ ଛପା ହୋଇପାରିଲା ନାହିଁ । ତାହା ଇଟାଲୀରେ ଭାଷାନ୍ତରିତ ହୋଇ ପ୍ରକାଶ ପାଇଲା ୧୯୫୭ରେ । ୧୯୫୮ରେ ତାଙ୍କୁ ନୋବେଲ୍ ପୁରସ୍କାର ଗ୍ରହଣ କରିବାକୁ ମଧ୍ୟ ଅନୁମତି ମିଳିନଥିଲା । ଷ୍ଟାଲିନ୍‌ଙ୍କ ଶାସନଠାରୁ ଏପର୍ଯ୍ୟନ୍ତ ସେଠାରେ ସାହିତ୍ୟକୁ ଯେପରି 'ରେଜିମେଣ୍ଟାଲିଜିମ୍' ଭିତର ଦେଇ ଗତିକରିବାକୁ ହୋଇଛି

ତାହାର ଫଳ ସ୍ୱରୂପ କେତେ ଲେଖକ ଦେଶଦ୍ରୋହୀ କରିଛନ୍ତି ତହିଁର ହିସାବ ହୁଏତ ମିଳିବ ନାହିଁ । ଝାପ୍‌ସା ହେଲେ ଗୋଟିଏ କଥା ମନେପଡ଼ୁଛି । ପିଲା ଆଉ ଆମେ ସବୁ । ପାଶ୍ଚାତ୍ୟ ସାହିତ୍ୟ ଓ ସମ୍ବାଦପତ୍ରରେ ପାସ୍ତରନାକ୍‌ଙ୍କୁ ନେଇ ଝଡ଼ ଉଠିଥାଏ । ଆମର ଜଣେ ଇଂରାଜୀ ନଜାଣିଥିବା ମାଷ୍ଟ୍ରେ ଥା'ନ୍ତି ସେ ବି ପାସ୍ତରନାକ୍‌ଙ୍କୁ ଗାଳି ଦେଉଥାନ୍ତି । ଏହା କହିବାର ତାତ୍ପର୍ଯ୍ୟ ହେଲା 'ରୁଷିଆରେ ବର୍ଷା ହେଲେ ଭାରତରେ କମ୍ୟୁନିଷ୍ଟମାନେ ଛତା ଖୋଲି ବୁଲନ୍ତି' ବୋଲି ଯେଉଁ ଲୋକାପବାଦ ଅଛି ତହିଁରେ କିଛି ବ୍ୟଙ୍ଗ ମିଶିଥିଲେ ମଧ୍ୟ ଅନେକାଂଶରେ ସତ୍ୟ । ମାତ୍ର ସେମାନେ ଯେତେବେଳେ 'ପେରେସ୍ତ୍ରୋଇକା' ପାଇଁ ଉହଳ-ବିକଳ ହେଉଛନ୍ତି, ତାଙ୍କ ସଗୋତ୍ରୀଗଣ ଏଠାରେ କିପରି ଛତା ଖୋଲିବେ ତାହା ଦେଖିବାକୁ ରହିଲା ।

ଆଉ କିଛିଦିନ ଅନ୍ତରରେ ଆମଦେଶରେ ଥିବା ସେକେଣ୍ଡ-ଇନ୍-କମାଣ୍ଡମାନଙ୍କଠାରୁ ସମ୍ଭବତଃ ଆମେ ଶୁଣିବାକୁ ପାଇପାରୁ ଯେ, ଏଠାକାର ସମ୍ବାଦପତ୍ରଗୁଡ଼ିକ ବୁର୍ଜୋୟା ଶ୍ରେଣୀର ପ୍ରତିନିଧିତ୍ୱ କରୁଛନ୍ତି ! ତାହେଲେ କଠୋର ନିଗଡ଼ତା ଭିତରୁ ବାହାରି ରୁଷ୍ ଶାସନ କେଉଁଆଡ଼କୁ ଯିବାକୁ ଇଚ୍ଛା କରୁଛି ?

ରାଷ୍ଟ୍ର ଶାସନରେ ବୋଧହୁଏ ଗୋଟିଏ ଅବଧାରିତ ସତ୍ୟ ହେଲା, ଅତୀତର କାନ୍ଥିଠାରୁ ଯେପରି ହେଲେ ବର୍ତ୍ତମାନକୁ ତେଜସ୍ୱିମା କରାଯାଉ । ସେକଥା ଆମ ଦେଶରେ ବି ହେଉଛି । ଫଟୋ ତ ଦୂରର କଥା, ପିଲାଙ୍କ ସାଧାରଣଜ୍ଞାନରୁ କେତେକ ପ୍ରଧାନମନ୍ତ୍ରୀଙ୍କ ନାଁ ହଜେଇଦେବାକୁ ଉଦ୍ୟମ ହେଉଛି । ଶାସନକୁ କବଳିତ କରି ଶାସକ ନିଜର ଅଭିପ୍ସା ସିଦ୍ଧି ପାଇଁ ଯେକୌଣସି କୌଶଳ ଅବଲମ୍ବନ କରିପାରେ । ସେଥିପାଇଁ ବୁର୍ଜୋୟା, ପ୍ରୋଲେଟେରିଏଟ୍, ଶ୍ରେଣୀ-ସଂଘର୍ଷ, ସାମ୍ୟବାଦ, ସମାଜବାଦ ଆଦି ନାମୋଚ୍ଚାରଣର କିଛି ଖାସ୍ ଗୁରୁତ୍ୱ ନାହିଁ ବା ମାନେ ନାହିଁ ।

ରସେଲ୍‌ଙ୍କର ଗୋଟିଏ ଉକ୍ତି ଉଦ୍ଧାର କରୁଛି : Freedom is a requisite for many kinds of good things, but the good things have to come from the impulses, desires and

beliefs of those who enjoy the freedom. (Fact and Fiction) 'ପେରେଟ୍ରୋଇକା' ବା ସେହିପରି କିଛି କହି ସାମ୍ୟବାଦ ଯେତିକ ପ୍ରଗତି କରିପାରିବ, ଆଉ ନା କହି ସମାଜବାଦ, ପୁଞ୍ଜିବାଦ, ଏପରିକି ସାମନ୍ତବାଦ ଯେ ସମାନ ବା ବେଶି ପ୍ରଗତି କରିପାରିବ ନାହିଁ, ଏକଥା ଠିକ୍ ନୁହେଁ।

ରୁଷିଆର ପାଣିପାଗ ଆମ ଦେଶରେ କି ପ୍ରଭାବ ପକାଇବ ତାହା ଦେଖିବାକୁ ବାକିରହିଲା ।



# 'ଇସ୍‌ମାଇଲ୍ ପିଲିଜ୍'

ଗ୍ରୀକ୍ ପୁରାଣର ଗୋଟିଏ ମଜାଳିଆ କାହାଣୀ : ପ୍ରଭାତ କାଳ ଦେବୀ ଅରୋରା (Aurora) ତାଙ୍କ ସ୍ୱାମୀ ଟିଥୋନସ୍ (Tithonus) ଙ୍କ ଅମରତ୍ୱ ପାଇଁ ପ୍ରାର୍ଥନା କରନ୍ତେ ପ୍ରଭୁ କହିଲେ, ତଥାସ୍ତୁ । ପ୍ରୀତିମଗ୍ନା ଦେବୀ ବରୁଣୀ ବର ମାଗିଲେ ଅମରତ୍ୱ, ଯୌବନ ତ ମାଗି ନଥିଲେ । କପଟ କାଳ କାହାକୁ କେବେ ଦୟାକରେ କି ? ତେଣୁ ଠାକୁର ଦମ୍ପତି ଯେତେବେଳେ ଅନୁଭବ କଲେ ବାର୍ଦ୍ଧକ୍ୟ ଅଧିକରୁ ଅଧିକ ଦୁର୍ବିଷହ ହେବାରେ ଲଗିଛି ସେତେବେଳେ ସେମାନେ ଜାଣିଲେ ମୋହଠାରୁ ସତ କେତେ ବେଶି ଦୂର । ପରିଶେଷରେ ଟିଥୋନସ୍ ଘୋର ତପସ୍ୟା କଲେ : ହେ ପ୍ରଭୁ, ତୁମ ଦାନ ଅମରତ୍ୱ ଫେରାଇ ନିଅ ପଛେ ଆମକୁ ଉଦ୍ଧାର କର, ମୃତ୍ୟୁ ଦିଅ ।

ଏ ଗପର ଉଦାହରଣ ଏଇଥିପାଇଁ ଆବଶ୍ୟକ ହେଲା ଯେ, ଖୋଜିବା କଥା ଖାଲି ପାଉଥିଲେ କେବଳ 'ଇସ୍‌ମାଇଲ୍' (Smile) ଆସେ, ଏପରି ବିଶ୍ୱାସ ଠିକ୍ ନୁହେଁ । ଏ ପରିଣତ ବୟସରେ ବି ଯଦି ଗ୍ରୁପ୍ ଫଟୋ ନିଆଯିବାବେଳେ ଫଟୋଗ୍ରାଫର୍ କହନ୍ତି, 'ସ୍ମାଇଲ୍ ପ୍ଲିଜ୍', ମୋର 'ଅଖା' ଅଜା କଥା ମନେପଡ଼ିଯାଏ । 'ଅଖା' ଅଜାଙ୍କ ପୂରା ନାଁ ଅବଦୁଲ୍ କରିମ୍ ଖାଁ, ସଂକ୍ଷେପରେ ଅ-ଖା । ପ୍ରତିଥର ମନେପଡ଼େ, ସେ କେମିତି କଳା-ଖୋଳ ଭିତରୁ କଇଁଛ ପରି ମୁହଁ କାଢ଼ି ଖାଲି କହି ଦେଉଥିଲେ 'ଇସ୍‌ମାଇଲ୍ ପିଲିଜ୍' ଓ ଝିଅଟକନା ପଶି ଯାଉଥିଲେ । ଆଜିର ପିଲାଏ ହୁଏତ ବୁଝିପାରିବେ ନାହିଁ ମାତ୍ର ସେତେବେଳେ ଫଟୋ ଉଠାଇବା ସତକୁସତ ଗୋଟିଏ 'ଇଣ୍ଡଷ୍ଟ୍ରି' ପରିକା ଝିନ୍‌ଝଟିଆ କାରବାର ଥିଲା । ସେଇ ଜରିଆରେ 'ଅଖା' ଅଜା କେତେ ଯେ 'ଇସ୍‌ମାଇଲ୍' ସଂଗ୍ରହ କରିଥିବେ ତା'ର କୌଣସି ଇୟତ୍ତା ନାହିଁ ।

ଆଜି ହସର ସଙ୍କଟ କାଳରେ 'ଅଖା' ଅଜା ମନେପଡ଼ୁଛନ୍ତି । ଏବେ ବି ପିଲାଏ ହସୁଛନ୍ତି ଅଥଚ ସେମାନଙ୍କ ହସ ସହିତ ବଡ଼ମାନଙ୍କ

ହସ ମିଶୁନାହିଁ । ଏ ଲେଖକ ଅନେକ ଥର ସେମିନାର ଆଦି ସଙ୍ଗଠନର ଅଭ୍ୟର୍ଥନା ଦାୟିତ୍ୱ ନେଇଥାଏ ଓ ସେଇ ଅନୁଭୂତି ମନେ ପକାଇଲେ ସତକୁ ସତ ହସମାଡେ । କଥାହେଲା, ଯିଏ ସାମ୍ନାରେ ହାବୁଡ଼ିଗଲେ ବି ଉପର ଓଠଟିକୁ ଈଷତ୍ ମୁକୁଳା ଓ ଆକାଶ-ମୁଖୀ କରିଦେଲେ ଚିବୁକର ମାଂସପେଶୀ ଦୁଇଟି ଟେକ ହୋଇଯାଏ, ତାହାହିଁ ହୁଏ ହସ । ଯଦି ଏପରି କାର୍ଯ୍ୟ ନିରବଧି କରିବାକୁ ହୋଇଥାଏ ତାହେଲେ ଘରକୁ ଫେରି କୌଣସି କମ୍ପାନୀର 'ପେନ୍‌ବାମ୍' ନ ଘଷିଲେ ପୁଣି ଆସନ୍ତା କାଲି ପାଇଁ ହସିବାକୁ ମଣିଷ ପ୍ରସ୍ତୁତ ହୋଇପାରେ ନାହିଁ ।

ଯୌବନତ୍ୱ ବା ମାନସିକ ଉଦ୍ଧାମତା ସହିତ ମଣିଷ ହସର ସାବଲୀଳତା ଆପେ ଆପେ ଯୋଡ଼ି ହୋଇଥାଏ, ଯାହା ଦେଖାଯାଉଛି ଛଳନାର ଭେଜାଲ୍ ମାର୍କେଟ୍‌ରେ ବ୍ଲାକ୍‌ରେ ବି ତାହା ବର୍ଣ୍ଣିତ ହେଉଛି । ହସ ସବୁବେଳେ ସମର୍ଥନର ହୋଇପାରେନା । ମନସ୍ତାତ୍ତ୍ୱିକ ଇଲାକା ଯେତେ ଆଡ଼କୁ ପରିବ୍ୟାପ୍ତ ହୋଇଥିବ ସେତେ ଆଡ଼େ ଶୃଙ୍ଗାର-ବୀର-କରୁଣ-ଅଦ୍ଭୁତ-ହାସ୍ୟ-ଭୟାନକ-ବୀଭତ୍ସ-ରୌଦ୍ର-ଶାନ୍ତ ଅନୁଭୂତି ହେବା ସ୍ୱାଭାବିକ ।

ଛୋଟିଆ ଉଦାହରଣଟିଏ ମନେପକାନ୍ତୁ—ରାଜନୀତିଆ ନେତାମାନେ କେତେ ହସନ୍ତି । ଅନେକଙ୍କୁ ହୁଏତ ବିସ୍ମିତ ଲାଗିପାରେ ଠାକୁରେ ସବୁଯାକ ହସର ଭଣ୍ଡାର ସେମାନଙ୍କ ପାଖରେ କେମିତି ଅଜାଡ଼ି ଦେଲେ । ହାକିମହୁକୁମା ଅଥବା ଡାକ୍ତରମାନେ ସେମାନଙ୍କ ନିକଟରେ କେତେ ନିଷ୍କପଟ (?) ହସ ନହସନ୍ତି ଟି ! ଏଇଠି ଗୋଟିଏ ସତ୍ୟ ଘଟଣା ମନେ ପଡ଼ୁଛି ।

ନିର୍ବାଚନ ଚାଲିଥାଏ । ଉଭୟଦଳଙ୍କ ପ୍ରଚାରର ହାଓ୍ୱାରେ ଗଗନ-ପବନ କମ୍ପୁଥାଏ । ପରମ୍ପରା ଅଛି, ପ୍ରାର୍ଥୀ ନିଜ ନିର୍ବାଚନ ମଣ୍ଡଳୀର କୋଣେ କୋଣେ ବୁଲି ବୁଲି ଭୋଟରମାନଙ୍କୁ ଦଣ୍ଡବତ କରିବେ । ସହରାଞ୍ଚଳ ହେଲେ ଖୋଲା ଜିପ୍, ଗ୍ରାମାଞ୍ଚଳ ହେଲେ ପଏଦଲ୍ ମାର୍ଚ୍ଚ ।

ନିର୍ବାଚନ ସମୟରେ ପ୍ରାର୍ଥୀମାନେ ଯେପରି ଚରମ ନାଟକୀୟତାକୁ ଅଭ୍ୟାସ କରିବସନ୍ତି ତାହା ଯେକୌଣସି କୃତିତ୍ୱ ସମ୍ପନ୍ନ ଷ୍ଟେଜ୍ ଆକ୍ଟରର

କାନ କାଟିଦେବ । ଥରେ ଜଣେ ପ୍ରାର୍ଥୀ ଖୋଲା ଜିପ୍‌ରେ ଉଭାହୋଇ ମୁରକି ମୁରକି ହସି ଅବିରତଭାବେ ନମସ୍କାର କରି ଚାଲିଥାନ୍ତି । ବେଳେ ବେଳେ ବାଁ ପଟ, ଡାହାଣ ପଟକୁ ମୁହଁ ବୁଲାଇ ଦେଉଥାନ୍ତି ବି । ହଠାତ୍ ଗୋଟିଏ ଦୃଶ୍ୟଯୋଗୁ ତାଙ୍କ ପାର୍ଶ୍ୱନାୟକ ଆଚମ୍ବିତ ହୋଇଗଲେ । ତାହାହେଲା, ରାସ୍ତାରେ ଶୋଇଥିବା ଷଣ୍ଢ, ଗାଈଦଳଙ୍କୁ ନେତାଜୀ ନମସ୍କାର କରି ଚାଲିଥାନ୍ତି, ପୁଣି ସସ୍ମିତ ବଦନରେ । ପାର୍ଶ୍ୱନାୟକ ଦେଖନ୍ତେ— ନେତାଜୀ ଶୋଇପଡ଼ୁଛନ୍ତି । ତାଙ୍କୁ ସେ ହଲେଇ ଦେଲେ, କହିଲେ : ସାର୍, ଏଠି କେହି ମଣିଷ ନାହାନ୍ତି, ଖାଲି ଗୋରୁଗୁଡ଼ାକ ।

ନେତାଜୀ ଟିକେ ଚମକି ପଡ଼ିଲେ । କହିଲେ, ଓହୋ ଟିକେ ନିଦ ଲାଗିଯାଇଥିଲା । ଚଳିବ ହୋ, ଆମ ଗଣତନ୍ତ୍ରରେ ଗୋରୁ ମଣିଷ ଏକା କଥା ।

ଏପରି ହସଠାରୁ 'ଅଖା' ଅଜାଙ୍କ 'ଇସ୍‌ମାଇଲ୍'-ହସ କୋଟି ଗୁଣରେ ସୁଖଦା, ବରଦା, ଶୁଭଦା । ମନ ହେଉଛି, ମୋତେ ଯଦି ପାଓ୍ୱାର-ଅଫ୍-ଆଟର୍ଣ୍ଣି ମିଳନ୍ତା ମୁଁ ପ୍ରଭୁଙ୍କୁ ପ୍ରାର୍ଥନା କରନ୍ତି ଯେଉଁମାନେ ଖୁଖିଲା ହସ ହସୁଛନ୍ତି ସେମାନେ ସବୁଦିନେ ସେଇମିତି ହସୁଥା'ନ୍ତୁ ଓ ଯାହାକୁ ସମ୍ଭବ ତାଙ୍କୁ ସେ ଅନ୍ତରର ହସ ଦିଅନ୍ତୁ । ଟିକିଏ ହେଉ ପଛେ, ଅନ୍ତରଙ୍ଗ ହେଉ ।



# ଉଲଗ୍ନ ଉପତ୍ୟକା

( ସବୁ ମଣିଷ ଆମେ ଲୁଗା ତଳେ ଲଙ୍ଗଳା )

ପ୍ରସ୍ତାବନା : କୌଣସି ଏକ କୁମ୍ଭଦେଈ ପାଇଁ ସରପଞ୍ଚ ମହୋଦୟ ସମନ୍ୱିତ ଗ୍ରାମୀଣ ବିକାଶ କାର୍ଯ୍ୟକ୍ରମ ଜରିଆରେ ହଜାର ଟଙ୍କା ଋଣ ଯୋଗାଡ଼କରି ତାହାଁରୁ ସାତ ଶହ ଟଙ୍କା ଉଧାର ନାଁ'ରେ ଚକ୍ରକରନ୍ତି । ମାଗିତେ ମାଗିତେ ଆଉ ନ ଫେରାନ୍ତି । କୁମ୍ଭ ସରପଞ୍ଚଙ୍କ ଗାଲକୁ କାମୁଡ଼ି ଘୁଳାଏ ମାଂସ ଛିଣ୍ଡାଇଦିଏ । କୁମ୍ଭଦେଈଙ୍କୁ ପୋଲିସ୍ ଗିରଫକରି କୋର୍ଟକୁ ଚାଲାଣ କରନ୍ତି । ( 'ସନ୍‌ଟାଇମ୍‌ସ', ୨୫ ଜୁଲାଇ )

ସମ୍ବାଦଟିର ପୂର୍ଣ୍ଣ ପୃଷ୍ଠଭୂମି ଜାଣିବାର ଅବକାଶ ନଥାଇ ମଧ୍ୟ କଥାଟି କେମିତି କେଜାଣି ସେକ୍‌ସ୍‌ପିଅର୍‌ଙ୍କ 'ମରଚେନ୍‌ଟ ଅଫ୍ ଭେନିସ୍'ର ଏକ ଭିନ୍ନ ଅଥଚ ଅସହାୟ ପ୍ରତିଛବି ପରି ଲାଗୁଛି । ଯଦି ସମ୍ଭୋଗ-କାଳରେ ରକ୍ତ ପ୍ରାବଲ୍ୟ ଯୋଗୁ ଏପରି ହୋଇଥା'ନ୍ତା ତାହାଁରେ ଆଇନ୍ ରୂପରି କସମ ଅଲଗା ହୋଇଥା'ନ୍ତା, ମାତ୍ର ଯାହା କେବଳ ଜଣାପଡ଼ୁଛି ତାହା ଏକ ଧର୍ତ୍ତବ୍ୟ ଅପରାଧ । ଆଇନ କହିବ, ଲୋ କୁମ୍ଭ ଦେଈ, ମୁଁ ତ ମୋ ପରିଧିରେ ବିଚରଣ କରୁଥା'ନ୍ତି, ତୁ ପାମରୀ ମୋତେ ହାତକୁ କିଆଁ ନେଲୁ ?

ଅପରପକ୍ଷରେ, ଉକ୍ତ ସରପଞ୍ଚଙ୍କ ପ୍ରାୟ 'ପ୍ରତିଭାବାନ୍' ଅନ୍ୟ ଲୋକ ଯଦି କୁମ୍ଭଦେଈର ସାହାପକ୍ଷ ହୋଇ ତା' ପାଇଁ ଏନ୍. ଆର୍. ଇ. ପି., ଇ. ଆର୍. ଆର୍. ପି. ବା ଆର୍. ଏଲ୍. ଇ. ଜି. ପି. (ଯେଉଁଟି ସେ ଫିଟ୍ ହୋଇପାରିବ)ରୁ ଋଣ ଯୋଗାଡ଼ କରିପାରିଥା'ନ୍ତେ, ତା'ହେଲେ କୁମ୍ଭଦେଈର ଅଦାଲତ ଖର୍ଚ୍ଚ କାମଟା ଚଳିଥାନ୍ତା । ଅଦାଲତରେ ଖାଲି ପହଞ୍ଚିଗଲେ ଯେ ପାଇଟି ସରିଗଲା ତାହା ନୁହେଁ । ଗ୍ୟାରେନ୍‌ଟି ଦେଇ କୁହା-ଯାଇପାରେ ଯେ ସେ ହାରିବ, କାରଣ ଏପରି କ୍ଷେତ୍ରରେ ପ୍ରମାଣ ନଥାଏ । ପ୍ରଥମ ଋଣ ନେବା କ୍ଷେତ୍ରରେ ନିଷ୍ଚୟ ଆତୁର ଆନ୍ତରିକତା କୁମ୍ଭଦେଈ

ଓ ସରପଞ୍ଚଙ୍କ ମଧ୍ୟରେ ସ୍ଥାପିତ ହୋଇ ମଧ୍ୟ ପରିଶେଷରେ ଯେପରି ଗାଳି କାମୁଡ଼ା ପର୍ଯ୍ୟନ୍ତ କଥାଗଲା, ସମ୍ଭାବିତ ଦ୍ୱିତୀୟ ଅବସ୍ଥାରେ ମଧ୍ୟ ଏଇ ବା ଏଇପରି ଆଉ କିଛି ଆଶଙ୍କାକୁ ଏଡ଼େଇ ଦିଆଯାଇ ନ ପାରେ । କୁମାରେଶଙ୍କ ସପକ୍ଷରେ ଗୋଟିଏ କଥା କୁହାଯିବ ଯେ ସେ ପୋଲିସ୍‌କୁ ସାହାଯ୍ୟ କରିଛି । 'ପ୍ରତିଭାବାନ୍' ବ୍ୟକ୍ତିମାନଙ୍କୁ କାମୁଡ଼ିଲେ କେଶ୍ ରେକର୍ଡ଼ ହେବା ନିଶ୍ଚିତ । ନିଶ୍ଚିତ ପରାଜୟର ସମ୍ଭାବନାକୁ ହେୟଜ୍ଞାନ କରି ଆଇନ ଦୁଆର ମୁହଁକୁ ନଯିବା ଦ୍ୱାରା ସେ ଦୁଇଟି ଧର୍ତ୍ତବ୍ୟ ଅପରାଧ ସ୍ଥଳରେ ଗୋଟିଏ କଲା । ଅର୍ଥାତ୍, ଜଣେ ନଗଣ୍ୟ ନାଗରିକ ହୋଇ ମଧ୍ୟ ସେ ପୋଲିସ୍‌ର କ୍ରାଇମ୍ ରେକର୍ଡ଼କୁ ୫୦% କମେଇ ଦେଇ ରାଷ୍ଟ୍ରକୁ ସାହାଯ୍ୟ କଲା, ଗ୍ରେଟିଆ କଥା ନୁହେଁ ।

ସରକାରୀ ଯୋଜନାର ଛେଳି, ମେଣ୍ଢାଗୁଡ଼ିକ ପ୍ରସବ କରନ୍ତି ନାହିଁ, ଗାଈ, ମଇଁଷି, ବଳଦଗୁଡ଼ିକ କାଗଜ କଲମରେ ମାଲିକ ହାତକୁ ଆସିବା ପରେ ପରେ କାନ କାଟି ( ପିତଳ ସିଲ୍ : ଇନ୍‌ସ୍ୟୁରାନ୍‌ସ ଟଙ୍କା ପାଇଁ ) ମୃତ୍ୟୁବରଣ କରନ୍ତି; ବିକାଶ ପାଇଁ ମିଳୁଥିବା ଋଣ ଟଙ୍କାରୁ କିଛି ଅଂଶ ଓ ସମଗ୍ର ସବ୍‌ସିଡ଼ି ସମବାୟ ବା ବ୍ଳକ୍ କର୍ମଚାରୀମାନଙ୍କ ଦ୍ୱାରା ଆତ୍ମସାତ୍ ହୁଏ—ଏହାହିଁ ହେଉଛି ଆମ ଯୋଜନା ପ୍ରଗତିର ଜୈବ ରଥ, ରଥ ଚକ, ଚକ ପଛର ସବୁଜ୍ଞାତ କାହାଣୀ । ଏକଥାକୁ କେହି ଯଦି ଅସ୍ୱୀକାର କରନ୍ତି, ଅନ୍‌ପାର୍ଲାମେଣ୍ଟାରୀ ହେଉ ପଛେ, ତାଙ୍କୁ ତାହା ମିଛୁଆ ଛଡ଼ା ଆଉ କିଛି କୁହାଯିବନାହିଁ ।

ବିନା ପୁଞ୍ଜି ବିନିଯୋଗରେ ଅନେକ ପ୍ରକାର ବ୍ୟବସାୟ ହୋଇପାରେ । ତହିଁରୁ ଗୋଟିଏ ହାଇ-ଡିଭିଡେଣ୍ଡ (ହାଇ ନୁହେଁ, ବରଂ ଅଲ୍ ) ବ୍ୟବସାୟ କଥା ପ୍ରାୟ ପାଠକ ଜାଣିଥିବେ । ତାହା ହେଲା, ବେକାରମାନଙ୍କ ପାଇଁ ଚାକିରି ଯୋଗାଡ଼ କରିବା । ସେଥିରେ କେବଳ ଦକ୍ଷତା ଏତିକି ଲୋଡ଼ା ଯେ 'ବ୍ୟବସାୟୀ' ବଡ଼ ବଡ଼ ହାକିମହୁକୁମାଙ୍କ ଘରକୁ ବା ମନ୍ତ୍ରୀନେତାଙ୍କ ଗହଣରେ ଅନ୍ୟର ପଡିଆରୀ ଉପୁଜିଲାପରି ପ୍ରବେଶ କରିପାରୁଥିବ ।

ଭାଇ, ପୁଅ, ପୁତୁରା ହୋଇଥିଲେ ତ କଥା ପୋ' ବାର । ଚାକିରି ଯଦି ହୋଇପାରେ ତ ସମସ୍ୟା ନାହିଁ, ମାତ୍ର ଯଦି ନ ହୋଇ

ପାରେ ? ଭଙ୍ଗା ଡଙ୍ଗାର ନାବିକ କୌଣସି ନିର୍ଜନ ଦ୍ୱୀପରେ ଯେତେ ଅସହାୟ ହୋଇ ପଡ଼ିଥିଲେ ମଧ୍ୟ ବାରମ୍ବାର ଦିଗ୍‌ବଳୟକୁ ଅନାଉଥାଏ, କାଳେ କୋଉଠୁ ନୌକାଟିଏ ଆସିବ । ଏ କ୍ଷେତ୍ରରେ 'ଭିକ୍‌ଟିମ୍'ମାନଙ୍କ ଅବସ୍ଥା ତାହାହିଁ ହୁଏ । ନିଜର ପରାଜୟ ଜାଣି ସୁଦ୍ଧା ହତାଶ ହେବାକୁ ମନ ବଳେ ନାହିଁ । କୁହୁଳା ମନ ନେଇ ତଥାକଥିତ ବ୍ୟବସାୟୀ ବା ବ୍ରୋକରଙ୍କ ପାଖକୁ ବାରମ୍ବାର ଦୌଡ଼ୁଥିଲେ ମଧ୍ୟ ମୁହଁରୁ ହସ ଟିକଏ ଲିଭନ୍ତି ନାହିଁ । ମେରେ ମାଏ ବାପ୍, ମେରି ସର୍‌କାର୍ କାଳେ ବଂଚିଯିବ ।

ଏମାନେ କୁଆଡ଼େ ଯୁବକ ।

ଅସଭ୍ୟ ଦସ୍ତାବିଜ୍‌ର ମାତ୍ର ଗୋଟିଏ ପୃଷ୍ଠା ଏବଂ ପ୍ରଥମ ପୃଷ୍ଠା ବୋଧହୁଏ କୁମାରଦେଇଙ୍କ ଚିରାଚିରି ଆଣି ଖିନ୍‌ଭିନ୍ କରି ରାଜରାସ୍ତାରେ ଫୋପାଡ଼ି ଦେଇଛୁ । ହେ ମୋର ପ୍ରିୟ ଖବରକାଗଜବାଲାଏ, ଟିକେ କୁମାରଦେଇଙ୍କର ଫଟୋ କାଢ଼ନ୍ତୁନି ? ତା' ପ୍ରଚ୍ଛଦ ପାଇଁ ନୁହେଁ--ଦଳେ କାପୁରୁଷ, ନବୀନ ଯୁବକ ତାକୁ ଦେଖନ୍ତେ ।



# ପଳାତକ

୧୯୭୭ରେ ଆମ ରାଜନୈତିକ 'ଫିଉଜନ୍ ଥିଓରୀ' କେମିତି ଗଣ୍ଡଗୋଳ ହୋଇଯାଇଥିଲା କେଜାଣି ମାତ୍ର ତାହାଁର ପରାଭବ ଭାରତର ସଂସଦୀୟ ଗଣତନ୍ତ୍ର ଉପରେ ଏକ ପ୍ରଚଣ୍ଡ ଧକ୍କା ଦେଲା । ପ୍ରାୟ ଏକ ଦଶନ୍ଧି ଧରି ଏପରି ଡବେଠ ଅବସ୍ଥାରୁ ମୁକୁଳିବାର ରାସ୍ତା ନମିଳୁଥିବା ଯୋଗୁ ସମସ୍ତେ ତ୍ରାହି ତ୍ରାହି ଡାକୁଥିଲେ ।

ଆଲୁଅର କି ଅର୍ଥ ଯଦି ଅନ୍ଧାର ନଥାଏ ବା ଧନର କି ଅର୍ଥ ଯଦି ଦାରିଦ୍ର୍ୟ ନଥାଏ—ଏପରି ବାଜେ ଉଦାହରଣ ଏ କ୍ଷେତ୍ରରେ ଆଦୌ ପ୍ରଯୋଜ୍ୟ ନୁହେଁ । ଗୃହେରିଟି 'ଜାଣ୍ଠିଯୁ' ଦଳ— ଜନତା, କଂଗ୍ରେସ (ଏସ୍), ଲୋକଦଳ ଓ ଜନମୋର୍ଚ୍ଚା । ଗତ ୨୭ ତାରିଖ ଦିନ ମହାସିନ୍ଧୁରେ ନିଜ ନିଜର ବନ୍ଧୁଟିମାନ ମିଶାଇ 'ସମାଜବାଦୀ ଜନତା ଦଳ' ଜନ୍ମନେଲା ବୋଲି ସଭିଏଁ ଗୋଟିଏ ଜାଗାରେ ବସି ଘୋଷଣା କରି ଦେଇଛନ୍ତି । ହେ ମହାଭାଗ, ସଦ୍‌ବୁଦ୍ଧି ପୁନର୍ବାରମାଦାନକାରୀ ନେତୃବୃନ୍ଦ, ଦେଶବାସୀ ଆପଣମାନଙ୍କ ଏତାଦୃଶ ଘୋଷଣା ଯୋଗୁ କେତେ ପରିମାଣରେ ଆଶ୍ୱସ୍ତ ହୋଇଛନ୍ତି ତାହା କି ଭାଷାରେ ବର୍ଣ୍ଣିବା ବା ? ଅସଲ ବେଳ ଆଉ କେତେ କାଳ ଡେରି ରହିଲା କି ? ଲୋକଙ୍କ କଥା ଚୂଲିକୁ ଯାଉ, ରାଜୀବ ଗାନ୍ଧୀ ଏତେ ସଲ୍‌ସଲ୍ ହୋଇପଡ଼ିଲେ ଯେ, ସେ ବି ଲେଡ଼ିଲେ ଗୋଟିଏ ଅଉଲ୍ ନମ୍ବର ବିରୋଧୀ ଦଳ ହେଉ । ଆପଣମାନେ ଏକାଠି ହେଲାପରେ ଅବଶ୍ୟ ସେ ଟିକେ ଚଗଲିଆ କଥା କହିଲେଣି । ତଥିକୁ ଆପଣମାନେ ଭ୍ରୂକ୍ଷେପ କରିବେ ନାହିଁ ନିଶ୍ଚୟ । କାରଣ ଏପରି ଚଗଲମି ରାଜୀବଙ୍କ ଲହୁରେ ଏକ ଲୋହିତ ରକ୍ତକଣିକା ପରି, ଯାହା ଆପଣମାନଙ୍କ ଧମନୀରେ ମଧ୍ୟ ସମାନଭାବରେ ପ୍ରବାହିତ ହେଉଥାଏ । ତେଣୁ ଏ ନବଜାତକ ପାଇଁ, ଫାଲ୍‌ତୁ ଗଣ୍ଡାକେତେଙ୍କୁ ଛାଡ଼ି, କୋଉ କୋଣରୁ ଯେ କଲ୍ୟାଣ ନାହିଁ, ଏକଥା କଠୋର ଶତ୍ରୁଟିଏ ମଧ୍ୟ କହିପାରିବ ନାହିଁ ।

ନବଜାତକ ପ୍ରତି ସମସ୍ତେ ଶୁଭେଚ୍ଛା ଜ୍ଞାପନ କରି ମଧ୍ୟ ଭାରତୀୟ ରାଜନୀତିରେ ତତ୍ତ୍ୱାବଧାରକମାନଙ୍କ ନୁଙ୍ଗୁ ପୁଙ୍ଗୁ ପ୍ରକୃତିର ଇକୁଏସନ୍ କୋଉଠି, କେତେବେଳେ କାହାକୁ ଯାଇ ଛୁଇଁବ ସେ ଆଶଙ୍କା ସ୍ୱତଃ ମନକୁ ଆସିଯାଉଛି । ରୈଧୁଷ୍ଣ ଚରଣ ସିଂହ ଓ ରାଜନାରାୟଣଙ୍କ ଅବର୍ତ୍ତମାନକୁ କେବଳ ଆଶ୍ରୟ କରି ବଥ ବିନାଶକୁ ବ୍ୟଥା ବିନାଶ ବୋଲି ବୁଝାଯାଇପାରିବନି । ସେମାନେ ଅମର । ନେପଥ୍ୟ ଅଣ୍ଡା ସୃଷ୍ଟିହୁଏ କନ୍ଦଳରୁ ଓ କନ୍ଦଳ ପାଇଁ । ସାଧାରଣତଃ ଏହି ପ୍ରକ୍ରିୟା ଅବଚେତନ ଭାବେ ସୃଷ୍ଟି ହୁଏ ଏବଂ ସଚେତନତାରେ ବିକଶିତ ହୁଏ ।

ବିଶ୍ୱାସ କରି ହେଉ ନ ଥିଲେ ମଧ୍ୟ, କୌଣସି ଅଘଟଣ ନ ଘଟିବା ଉଚିତ ବୋଲି ଦେଶବାସୀ ନିଶ୍ଚୟ ଆଶା କରୁଥିବେ । ଜଣଙ୍କର କାର୍ଯ୍ୟ ଯୋଗୁ ଅନ୍ୟ ଜଣେ ତରିକେ, ହୁରୁଡ଼ିଯାଏ । ଏତଦ୍‌ପରେ ଗୋଠ ମାଡିବା ଅବସ୍ଥା ଉଦ୍‌ଭବ ହୁଏ । ସହଜେ ତ ବହୁ ବେଶି ରାଜନୈତିକ ଲୋକେ ନାଲଠ ଚରିତ୍ରକୁ ଭିନ୍ନଭିନ୍ନ ବେହରଣର ଆତପ ତଳେ ଏକଦମ୍ ନିଆରାଭାବେ ଦେଖେଇହେବାକୁ ଅବିରତ ଉଦ୍ୟମ କରୁଥା'ନ୍ତି । ସେମାନଙ୍କ ଆଚରଣକୁ କେହି ପରିତେ ଯାଉ ବା ନଯାଉ ।

ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଯିବା ବାଟଟି ଘୋର ଜଙ୍ଗଲ । ମୁହଁସଞ୍ଜ ହୋଇଆସୁଥାଏ । ଜଙ୍ଗଲ ମଝିରେ ଚଲାପଥର ଗୋଟିଏ ଦୋ-ସଡ଼କରେ ଜଣେ ପୁରୁଷ ଓ ସ୍ତ୍ରୀ, ପୂର୍ବ ଅଚିହ୍ନା, ପରସ୍ପରକୁ ଭେଟନ୍ତି । ସ୍ୱାଭାବିକ ଭାବେ ଏପରି ଜନଶୂନ୍ୟ ସ୍ଥାନରେ ଜଣେ ଅପରକୁ ଦେଖିଲେ ମନରେ ଆଶ୍ୱାସନା ଆସିବା କଥା । ଯାହାହେଲେ ବି ଭୟ ଦୂର ହେବାପରି ଗୋଟିଏ ଆବଶ୍ୟକତାର ମେଣ୍ଟ ତ ପୂରଣ ହେବାକୁ ଯାଉଛି ।

କିନ୍ତୁ ତାହା ହୋଇ ନ ଥିଲା । କିଛି ବାଟ ଅତିକ୍ରମ କଲାପରେ ଅନ୍ଧାର ଘନ ହେବାକୁ ଆରମ୍ଭ କଲା । ପୁରୁଷଟି ଚଞ୍ଚଳ ଗତିରେ ପାଦ ପକାଉଥାଏ । ଉଭୟ ତ କଥା ହେଉ ନଥାନ୍ତି । ସ୍ତ୍ରୀ ଲୋକଟି ମଧ୍ୟ ପୁରୁଷ ପଛରେ ସମାନ ଗତିରେ ଦୌଡ଼ିବାରେ ଲାଗିଥାଏ ।

କିଛି ସମୟ ପରେ ସ୍ତ୍ରୀ ଲୋକଟି ହଠାତ୍ ଚିତ୍କାର କରି ଉଠିବା ଯୋଗୁ ପୁରୁଷଟି ପଛକୁ ଫେରି ଚେଁଇଲା—କ'ଣ ହେଲା କି ?

ସ୍ତ୍ରୀ—ତୁମେ ଯଦି ମୋ ଉପରେ ପାଶବିକ ଅତ୍ୟାଚାର କର ?

ଭକୁଆହୋଇ ଆଁ କରି ପୁରୁଷଟି କହିଲା—ମାନେ ?

ସ୍ତ୍ରୀ - କ'ଣ ଏମିତି କିଛି ନ ଜାଣିଲା ପରି ଦେଖେଇ ହେଉଛ ମ ? ଆଉ ଅଳ୍ପ ସମୟ ପରେ ଘନ ଅନ୍ଧାର ଘୋଟିଯିବ । ଅବଳା ମୁଁ କରିବି କ'ଣ ?

ଲୋକଟି କ'ଣ କହିବ ଭାବିପାରୁନି । ଏଣେ ଅନ୍ଧାର ବଢ଼ୁଛି, ତୁରନ୍ତ ପାରହେବାକୁ ପଡ଼ିବ । ସେ ନିରୁପାୟ ହେଲା ପରି କହିଲା—କ'ଣ ତୁମ ମୁଣ୍ଡ ପାଗଳ ନା କ'ଣ ? ଆରି ଗାଁକୁ ମାଛ ଧରିବାକୁ ଯାଇଥିଲି ଯେ, ପୋଲୁହଟାଏ ହାତରେ । ବାଟରେ ଛେଳିଟା ଠିକେ କଅଁଳ ପତ୍ରରେ ମୁହଁ ମାରିବ ବୋଲି ତାକୁ ଧରି ଆଣିଥିଲି, କାଟେଣୀ ଖଣ୍ଡେ ବି ଧରିଛି । ମାଛ ବନ୍ଦୀକରି କୁକୁଡ଼ାଟିଏ କିଣିଲି ଯେ, ତାକୁ ବି ଧରିଛି ହାତରେ । ତୁମ ସାଙ୍ଗରେ ଏ ହୀନକାମ କରିବାକୁ ମୋର ମୋଟେରୁ ମନରେ ପଶିନି । ତା'ପରେ ମୋର ଜନ୍ତୁ ହଉଟି ଯଦି ଅନ୍ଧାରରେ, ଅରଣ୍ୟରେ ଉଭା ହୋଇଯା'ନ୍ତି, ମୁଁ ସେମାନଙ୍କୁ ଆଉ ପାଇବି ଟି ? ଛାଡ଼ ହୋ, ତୁମ କଥା ତୁମେ ବୁଝ, ମୋ ବାଟରେ ମୁଁ ଚାଲିଲି ।

ସ୍ତ୍ରୀ ଲୋକଟି ପୁଣି ଥରେ ଆଗକୁ ଦଉଡ଼ି ଆସିଲା । କହିଲା—ଯଦି ତୁମେ କାଟେଣୀଟାକୁ ଭୂଇଁରେ ପୋତି ତହିଁରେ ଛେଳିକୁ ବାନ୍ଧିଦିଅ ଓ ପୋଲୁହ ତଳେ କୁକୁଡ଼ାକୁ ଘୋଡ଼େଇ ମୋ ପ୍ରତି ପାଶବିକ ଅତ୍ୟାଚାର କର, ଅବଳା ମୁଁ କରିବି କ'ଣ ?

ଏ କଥା ଶୁଣି କ୍ଷଣକ ପାଇଁ କ'ଣ ଚିନ୍ତାକରି ପୁରୁଷଟି ଯେ ଅଡ଼ରଛନିଆ ଦଉଡ଼ିଛି, ତାକୁ ଆଉ ଅନ୍ଧାରର ଡର ହେଲେ ଭୟ ଲାଗିନାହିଁ, କୁକୁଡ଼ା ଛେଳିଙ୍କ କଥା ଭାବିବ କିଆଁ ସେ ।

ଆମ ରାଜନୈତିକ ପରିପ୍ରେକ୍ଷୀରେ ଏହି ସନ୍ଦର୍ଭର ଏପରି କୌଣସି ଅସଭ୍ୟ ପରିପ୍ରକାଶ ନହେବ ବୋଲି ଆମେମାନେ ପବିତ୍ର ଆଶା ପୋଷଣ କରୁଛୁ ।

# ସ୍ପଷ୍ଟୀକରଣ

"ଗୁରୁଣ୍ଡି ଗୁରୁଣ୍ଡି ଏରୁଣ୍ଡି ଉପରେ
ମାଧବ ବସିଛୁ ଯାଇ,
ମାତାଙ୍କ ଆଡ଼କୁ ଅନାଇ ଅନାଇ,
ମାଟି ଦେଉଅଛୁ ଖାଇ ।"

କବିତାଟିର ଭାବ ମାଧବଙ୍କର କ୍ରିୟା-କର୍ମ-ଚରିତ୍ର ସମ୍ପର୍କରେ ସଚରାଚର ଜ୍ଞାତ କୌଣସି କଥଟାଗୁର ପକ୍ଷେ ଆଦୌ ଅବୋଧ ନୁହେଁ । ବାରମ୍ବାର ଆକଟୁଥିବା ମା'କୁ କନକନ ହୋଇ ଶିଶୁଟି କରୁଥିବା ଭୂଲ୍ କରିବା ପୂର୍ବରୁ ଯେମିତି ନିର୍ମାହ ଭାବ ଅନାଇଦିଏ ଏବଂ ସେତେବେଳେ ସେ ଚତୁର ଅଥଚ ସରଳ ଦେଖାଯାଉଥାଏ, ବର୍ଣ୍ଣବୋଧର ଏହି ପଂକ୍ତିଟି ଠିକ୍ ସେତିକି ସରଳ । ପଢ଼ିବା ପିଲାକୁ ତାକତ ଖଟେଇବା ଦରକାର ପଡ଼େନାହିଁ, ଏମିତି ବୁଝିଯାଏ ସେ ।

ଧରାଯାଉ ଗୃହଶାଳୀର ଅବଧାନେ ଯଦି ଉପରୋକ୍ତ ପଂକ୍ତିଟିକୁ ନିମ୍ନ ପ୍ରକାରେ ବୁଝାନ୍ତି, କେମିତି ହେବ ଭାବନ୍ତୁ ତ : ଗୁରୁଣ୍ଡି ଗୁରୁଣ୍ଡି, ଅର୍ଥ ଚାଲିକରି ନୁହେଁ ବା ଦୌଡ଼ିକରି ନୁହେଁ, ଗୁରୁଣ୍ଡି ଗୁରୁଣ୍ଡି । ଏରୁଣ୍ଡି ଉପରେ, ଅର୍ଥାତ୍ ବେଞ୍ଚ୍ ଉପରେ ନୁହେଁ କି ସୋଫା ଉପରେ ନୁହେଁ, ଏରୁଣ୍ଡି ଉପରେ । ମାଧବ, ଅର୍ଥାତ୍ ତୁମ ଭିତରୁ କେହି ନୁହେଁ ବା ମୁଁ ନୁହେଁ, ମାତ୍ର ମାଧବ । କ'ଣ କରୁଛି ? ବସିଛି, ଅର୍ଥାତ୍ ଛିଡ଼ାହୋଇନାହିଁ ବା ଶୋଇପଡ଼ିନାହିଁ, ବସିଛି । ମାତାଙ୍କ ଆଡ଼କୁ, ମାନେ ଖୁଡ଼ୀଙ୍କ ଆଡ଼କୁ ନୁହେଁ ବା ଭଉଜଙ୍କ ଆଡ଼କୁ ନୁହେଁ । ଅନାଇ ଅନାଇ, ଅର୍ଥାତ୍ ଶୁଣି ଶୁଣି ନୁହେଁ ବା ଛୁଇଁ ଛୁଇଁ ନୁହେଁ । ଦେଉଅଛୁ ଖାଇ, ମାନେ ଫୋପାଡ଼ି ଦେଉନାହିଁ ବା ଗୋଟେଇ ଆଣୁନାହିଁ—ଖାଇ ଦେଉଛି । କ'ଣ ?—ମାଟି, ଅର୍ଥାତ୍ ରସଗୋଲା ନୁହେଁ ବା କଦଳୀ ନୁହେଁ, ମାଟି ।

କହିଲେ ଦେଖି, ଏମିତିକା ବୁଝାଉଥିବା ଅବଧାନଙ୍କୁ ଦୋରୁଖି କହିବା ନା ପାଗଳ କହିବା ? ଦୋରୁଖ ଶବ୍ଦଟି ଏଇଥିପାଇଁ ପ୍ରୟୋଗ

କରାଗଲା କାରଣ ବିଚାରମାନେ ନିଜ 'ଜାତି' ସମ୍ପର୍କରେ ଆଦୌ ସତ କହିପାରନ୍ତି ନାହିଁ । ଧରାପଡ଼ିଗଲେ, ମାଡ଼ ନ ଖାଇବା ପର୍ଯ୍ୟନ୍ତ, ସବୁକଥାକୁ ଖାଲି ଭେଦଭାବ ହୋଇ ଗୋଳେଇଥା'ନ୍ତି – ପରିଣତି କ'ଣ ହୁଏ ପାଠକେ ଅନୁମାନ କରନ୍ତୁ । ପ୍ରଭୁ ନିର୍ଦ୍ଦିଷ୍ଟ ହୋଇଥିବାରୁ ଯେଉଁମାନେ ପାଗଳ, ସେମାନଙ୍କ କଥା କିଆଁ ଆଲୋଚନା କରିବା ?

ନିକଟ ଅତୀତରେ ସରକାର ବେକାରମାନଙ୍କ ହିତାର୍ଥେ ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜ୍ ରୁଲ୍‌ର କେତେକ 'ଆବଶ୍ୟକ' ସଂଶୋଧନ କରି ପକାଇଲେ । ଏ ବିଷମ ପୃଥିବୀରେ ସଦାବେଳେ ସାରୁ ଖୋଳୁଖୋଳୁ ମହାଦେବମାନ ବାହାରନ୍ତି । ଏ କ୍ଷେତ୍ରରେ ମଧ୍ୟ ସେଇଆ ହେଲା । ଭାରତର ସମ୍ବିଧାନ ଯାହାକୁ ଏଯାବତ୍ ନିର୍ଦ୍ଧାରଣ କରିପାରିନାହିଁ ବୋଲି ଆସାମରେ ବିଦେଶୀମାନଙ୍କୁ ଚିହ୍ନଟ କରାଯାଇପାରୁନାହିଁ ବା ଯେଉଁଥି-ପାଇଁ ସାମ୍ପ୍ରତିକର ପୂର୍ବବର୍ତ୍ତୀ ବିଧାନସଭାରେ ମାତ୍ର ଦୁଇଶହ ସଂଖ୍ୟକ ଭୋଟପାଇ ଏମ୍. ଏଲ୍. ଏ. ମାନେ ନିର୍ବାଚିତ ହୋଇ 'ବିପୁଳ' ଜୟଲାଭ କରିଥିବା ରାଜନୈତିକ ଦଳ ମନ୍ତ୍ରିମଣ୍ଡଳ ଗଢ଼ି ମଧ୍ୟ ଶାସନ କରିପାରିଲା ନାହିଁ, ଏପରି ସାମ୍ବିଧାନିକ ପ୍ରଶ୍ନ ତ ଦୂରର କଥା, ସାଧାରଣ ନିୟମକୁ ମଧ୍ୟ ସଂଶୋଧନ ଆଳରେ ଆମ ସରକାର ହଲଚଲ କରିଦେଲେ ।

ଘର ଯେଉଁ ଜିଲ୍ଲାରେ ଥାଅ ସେଇଠି, ଆଉ ବାହାର ଜିଲ୍ଲାରେ ପ୍ରବେଶ ନିଷେଧ । ସନ୍-ଅଫ୍-ସଏଲ୍ ? ଛି ଛି ଛି, ଅଞ୍ଚଳିକତା । ଏକଥା କେହି ଭୁଲରେ ଧରିବା ଉଚିତ ନୁହେଁ । ତା'ହେଲେ, ଏପରି ଭାବିବ ଯେଉଁ ରୁଲ୍‌ର ସଂଶୋଧନ କରାଗଲା ଏହା କେଉଁଥିପାଇଁ ? ବିଭିନ୍ନ ଦିଗରୁ ଭିନ୍ନ ଭିନ୍ନ ପ୍ରଶାସନିକ ତଥା ବ୍ୟାବହାରିକ ଅସୁବିଧା ବିଷୟରେ ଯେତେବେଳେ ଜନମତ ତୀବ୍ର ବିରୋଧୀ ହୋଇଉଠିଲା, ସେତେବେଳେ ସରକାର ବୁଝି ସାରିଲେଣି; ହେଲେ ସଂଶୋଧନ କରିଥିବା ରୁଲ୍‌କୁ ବଦଳାଇବେ କିମିତି ! କଳାହାଣ୍ଡି, ଫୁଲବାଣୀ, ବଲାଙ୍ଗୀର, କୋରାପୁଟ ବା ସେହିପରି ଜିଲ୍ଲାର ପିଲାମାନେ କ'ଣ ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜରେ ନାଁ ରେଜେଷ୍ଟ୍ରୀ କରି ଗୁଷ କରିବାପାଇଁ ସରକାରଙ୍କ ଦପ୍ତର ଦୁଆରେ କାତରଇ ହୋଇ ଲାଇନ୍ ମାରି ଠିଆ ହେବେ, କେତେ କାଳ କିଏ ଜାଣେ ପର୍ଯ୍ୟନ୍ତ ?

ସରକାର ବାଉଳେ ହାଉଳେ ରୁଲ୍‌-ସଂଶୋଧନକୁ ବୁଝେଇ ବୁଝେଇ ଚାଲିଛନ୍ତି । 'ପରମାନେଣ୍ଟ ରେସିଡ଼େଣ୍ଟ' ଅର୍ଥ ଯାହା ଭାବୁଛ ତାହା ନୁହେଁ—ଏଇଆ ହେଲା । 'ରେସିଡ଼େନ୍‌ସିଆଲ ସାର୍ଟିଫିକେଟ୍‌' ଏମିତି ମିଳିବ । 'ଅର୍ଡିନାରିଲି'ର ମାନେ ସେ କଥା ନୁହେଁ, ଏକଥା । 'ଏଲିଏନେସନ୍‌-ଅଫ୍‌-ଜବ୍‌-ସିକର୍ସ' (ଚାକିରି ପାଇଁ ଆଶାୟୀ ପ୍ରାର୍ଥୀଙ୍କୁ ସ୍ୱଜିଲ୍ଲାକୁ ତଡ଼ିଦେବାର ବ୍ୟବସ୍ଥା) ଯେପରି କୁହାଯାଇଥିଲା ସେପରି ନ ହୋଇ, ଏପରି ହେବ । ଏପରି ନାନାଦି କିସମର ବାରିଗୁଡ଼ିଳିଆ କଥାବାର୍ତ୍ତା ଚାଲିଛି । ସଂଶୋଧିତ ହୋଇଥିବା ରୁଲ୍‌ର କେତେକ ପୁନଃ ସଂଶୋଧନ, ଅର୍ଥାତ୍‌ ମୂଳ ଯାହାଥିଲା ସେଇଆ, ହେଲାଣି । ବାକିତକ ହେବ ହେବ ବୋଲି ଖବର ମିଳୁଥିବା ଯୋଗୁ ବେକାରମାନେ ଚାତକ ପରି ଚାହିଁରହିଛନ୍ତି । ଏଥିରେ ଇତିମଧ୍ୟରେ 'ରେସିଡ଼େନ୍‌ସିଆଲ୍‌ ସାର୍ଟିଫିକେଟ୍‌' ଦେଉଥିବା ଦପ୍ତରର ଲୋକଙ୍କ ଖୋଷଣି ମୋଟା ହେବା ବ୍ୟତୀତ ଅନ୍ୟ ସମସ୍ତଙ୍କ ଦହଗଞ୍ଜର ସୀମା ରହୁନାହିଁ ।

ଏବେ ବିଭାଗୀୟ ମନ୍ତ୍ରୀ ଆଶ୍ୱାସନା ଶୁଣାଇଛନ୍ତି—ଯେଉଁ ସଙ୍ଗୀତର ପ୍ରାଣ-ଝଙ୍କାର; ହେଲା—ହେ ପ୍ରଜାବର୍ଗ, ବ୍ୟସ୍ତ ହୁଅନାହିଁ । ଆଗରୁ ଯାହା ଥିଲା ମୋଟାମୋଟି ତାହାହିଁ ରହିବ ।

ଆମର ତେଣୁ ଗୋଟିଏ ପ୍ରଶ୍ନ—ସିଏ କୋଉ ଅବଧାନ ଯିଏ ବର୍ଣ୍ଣବୋଧକୁ ଏମିତି ବଗୁଲିଆ ଢଙ୍ଗରେ ବୁଝାଇଲେ ? କାହିଁକି ?



# କିମିଆ

ତା' ପରେ ?

ତା'ପରେ କ'ଣ ହେଲା ନା—ରାଜାପୁଅ ତ ଛକଛକ ଥିଲା; ଯେମିତି ଦେଖିଲା ମଣିଚୂଡ଼ ନାଗ ମଣିଟିକୁ କାଢ଼ି ବୁଦାମୂଳେ ରଖି ଟିକଏ ଦୂରକୁ ଚାଲିଯାଇଛି, ସିଏ ମୁଠାଏ ଗୋବର ନେଇ ମଣି ଉପରେ ଲୁଚେଇ ଦେଲା । ସହଜେ ତ ଅଗ୍ନାଅଗ୍ନି ବନସ୍ତ, ମଣି ଲୁଚିଗଲା, ଆଲୁଅ ଲୁଚିଗଲା, ତତ୍‌କ୍ଷଣାତ୍ ଚତୁର୍ଦ୍ଦିଗ ଅନ୍ଧାର ଘୋଟିଗଲା । ସାପର ସିଁ-ସିଁ ଫିଁ-ଫିଁ ଗର୍ଜନରେ ପବନ କମ୍ପି ଉଠିଲା । ଅନ୍ଧାର ଯୋଗୁ ବାଟବଣା ହୋଇଥିବା ରାଜାପୁଅ କେବଳ ଗଛ ବାରବାର ନିଜକୁ ଭୟାନକ ସାପର କବଳରୁ ମୁକ୍ତ ରଖିବାକୁ ଚେଷ୍ଟାକଲା । ହେଲେ, ପାରିଲା ନାହିଁ । ନାଗ ଯେତେବେଳେ ଗୁଡ଼େଇ ହୋଇଗଲା, ରାଜାପୁଅ ଅଚେତ ।

ସମ୍ବିତ୍ ଫେରିପାଇ ସେ ଦେଖେ ଯେ, ତା'ଦେହରେ ଜଡ଼ହୋଇ ଶୋଇରହିଛି ଅନନ୍ୟସୁନ୍ଦରୀ ପ୍ରଭାମୟୀ ଯୁବତୀଟିଏ । ବଗୁଲିଆ ପବନରେ ଧୀରେ ଧୀରେ ଉଡ଼ୁଥିବା ଚୂର୍ଣ୍ଣକୁନ୍ତଳ ଯେତେବେଳେ ତା'ର ଜ୍ୟୋତ୍ସ୍ନାମୟୀ ମୁଖମଣ୍ଡଳକୁ ଟିକଏ ଟିକଏ ଆଡ଼ୁଆଳ କରିଦେଉଥାଏ, ରୂପସୀଟି ଆହୁରି ଲୋଭନୀୟା ଦେଖାଯାଉଥାଏ ।

ତା'ପରେ, ସେଇ ଅଳ୍ପ ଆଗର ପରସ୍ପର ଛକାଛକ ଓ ସାମ୍ନାବ୍ୟ ଶତ୍ରୁତା ଭୁଲି, ରାଜାପୁଅ ଏଣିକି ଖାଲି ସୁନ୍ଦରୀର ଚୂର୍ଣ୍ଣକୁନ୍ତଳ, ମୁଖମଣ୍ଡଳ ଏବଂ ଶରୀରର ବିଭିନ୍ନ ଅଂଶ ସାଉଁଳିବାରେ ଲାଗିଲା । ସେଇ ମୁଗ୍ଧାବେଶରୁ ଆଉ ସେ ମୁକ୍ତି ପାଇପାରିଲା ନାହିଁ ।

: ତା'ପରେ ?

: ଛେନାଗୁଡ଼ । ଗପ ସରିଲା ତ ।

: ନାଇଁ ଲୋ, ଆଈ ମା', ତୋ' ଗପ ସିନା ଏଇଠି ସରିଗଲା ହେଲେ ସମୁଦାୟ କଥା ସରିନି । ପୋଡହୋଇଥିବା ବହମାଦିତ୍ୟଙ୍କ

ସିଂହାସନରେ କେତେ ପ୍ରତିମା ଥିଲେ ଜଣାନାହିଁ । ସମସ୍ତେ ତ ପୁଣି ଗୋଟିଏ ଗୋଟିଏ ଗପ କହିବେ । ସବୁ ଗପ କେବେବ ସରିବ ତାହା ଜଣାନାହିଁ । ଆଜି ବି ରାଜକୁମାରଗୁଡ଼ିକ ସାପମାନଙ୍କ ଦ୍ୱାରା ବଶୀଭୂତ ହେଉଛନ୍ତି । ଗୋଟିଏ ଗପ ଯେପରି ଅପରଟି ସହିତ ସମ୍ପୂର୍ଣ୍ଣ ମେଳଖାଏ ନାହିଁ, ସେହିପରି ଅଲଗା ଅଲଗା ଗପରେ ଚରିତ୍ରଗୁଡ଼ିକ ସର୍ବତୋରୂପେ ସମାନ ହୋଇନଥିବାରୁ ଆମେ ମର୍ମଗତ ସମାନତା ଅଣ୍ଡାଳିବାକୁ ପରିଶ୍ରମ କରୁନା । ମାତ୍ର ଗପ ସମାନ । ତାହା ଜଙ୍ଗଲ-ରାଜକୁମାର ସାପ-ରୂପସୀ ହୋଇପାରନ୍ତି ବା ଅନ୍ୟକ୍ଷେତ୍ରରେ ଜଙ୍ଗଲର ଅନ୍ୟ ନାଁ ସମାଜ, ରାଜନୀତିର ଚିରକୁମାର ଗଣ ବା ସାପଠାରୁ ମାରାତ୍ମକ ଅହରହ ଗରଳ ଢାଳୁଥିବା ବିଚିତ୍ରବର୍ଣ୍ଣୀ ଦୁର୍ନୀତି ହୋଇପାରେ । ଅଈ ମା' ଲୋ, ରାଣ ଦକାଇ କହୁଛି, ତୋ' ଗପ ମୋ ଗପ ସମାନ ।

ଆମ ଦେଶରେ ବହୁ ବର୍ଷ ପୂର୍ବେ ଥରେ ଜରୁରୀ ଅବସ୍ଥା ଘୋଷଣା କରାଯାଇଥିଲା । ଠିକ୍ ତା'ପରର କଥା । ନିର୍ବାଚନ ଆଗକୁ ଥିବାରୁ ଜରୁରୀ ଅବସ୍ଥା ଉଠାଇ ଦିଆଯାଇଥାଏ । ଜଣେ ତତ୍କାଳୀନ ବିରୋଧୀ ଦଳ ନେତା ଉଡ଼ାଜାହାଜ ଭଡ଼ା କରି ଆମ ସହରକୁ ଆସିଲେ । ଏ ସହରର ମାଲିକ ତାଙ୍କ ପୁଷ୍ପକ-ବିମାନକୁ ଅବତରଣ ନିମନ୍ତେ ଅନୁମତି ଦେଲେ-ନାହିଁ । ମାଲିକଙ୍କର ସେ ଅଧିକାର ଏବେବ ମଧ୍ୟ ଅଛି । ତାପରେ ନେତା ଅନ୍ୟତ୍ର ଓହ୍ଲାଇ ମଟରେ ଯୋଗେ ଏଠାକୁ ଆସିଲେ । ସମୟର ଯେଉଁ ବ୍ୟବଧାନ ସୃଷ୍ଟି ହେଲା ତହିଁରେ ଜନସମୂହର ଲହରୀ ସ୍ଫୀତରୁ ସ୍ଫୀତତର ହେବାରେ ଲାଗିଲା । ବିମାନ ଅବତରଣ ନିମନ୍ତେ ଅନୁମତି ଦେଇନଥିବା ମାଲିକଙ୍କ ଔଦ୍ଧତ୍ୟ ବିରୁଦ୍ଧରେ ଜନତାଙ୍କ ଅନଳର ଶିଖା ଆକାଶର କେତେ ଉପରକୁ ଉଠୁଥାଏ । ସତେ କି ଧରାଭୂଇଁ ଭସ୍ମ ହୋଇଯିବ !

ନେତା ପହଞ୍ଚିବାପରେ ସମସ୍ତ ବୃତ୍ତାନ୍ତ ବ୍ୟାଖ୍ୟାନକରି ଘୋଷଣା କଲେ—ମୂଢ଼ର ଏତେ ଆସ୍ପର୍ଦ୍ଧା ! ବରଦାସ୍ତ କରିବି ନାହିଁ । ଆମେ କ୍ଷମତାକୁ ଠିକେ ଆସୁ, ମୁଁ ତାକୁ ଚୂରଚୂର କରିଦେବି ।

ସଂଯୋଗ, ସେ କ୍ଷମତା ବୋଇଲେ ବେଶ୍ କ୍ଷମତାକୁ ଆସିଲେ । କେନ୍ଦ୍ରରେ ମନ୍ତ୍ରୀହେଲେ । ତଥାକଥିତ ମୂଢ଼ ଆସ୍ପର୍ଦ୍ଧା ସମ୍ପନ୍ନ ମାଲିକଙ୍କର

ଖୋଦ୍ ମାଲିକ ହେଲେ । ମାତ୍ର ପରେ ଦେଖାଗଲା, ବିମାନ ଅବତରଣ ପାଇଁ ଯିଏ ଅନୁମତି ଦେଇନଥିଲେ ସେ ନେତାଙ୍କର ସବୁଠାରୁ ପ୍ରିୟ ବ୍ୟକ୍ତି ରୂପେ ଖାଲି ଭାରତରେ କାହିଁକି ବିଶ୍ୱରେ ପରିଗଣିତ ହେଲେ । ଉଭୟ ବ୍ୟକ୍ତି ଦୁର୍ନୀତିର ଶିଆଳିଲଟାରେ ଏମିତି ଛନ୍ଦିହୋଇ ହୋଇଗଲେ ଯେ କମିଶନ୍-ଅଫ୍-ଇନ୍‌କ୍ୱାରି ବସିବା ପର୍ଯ୍ୟନ୍ତ କଥା ଗଲା ।

ଆମର ଲୋକକଥାଟିଏ ଅଛି : 'ନଅର ଦାସୀ ହଜାର ବୁଲେ, ରାଜା ବିଜେ କଲେ ଓଢ଼ଣୀ କାଢ଼େ ।' ଗଣତନ୍ତ୍ରରେ ଆମେ ସମସ୍ତେ ରାଜା । ତେଣୁ ଠକାମିର ଓଢ଼ଣୀ ଦେଖି ବେଶ୍ୟାଙ୍କ 'ସତୀତ୍ୱ' ଉପରେ ଆମର ସନ୍ଦେହ ଉପୁଜେ ନାହିଁ । କାରଣ ଅସଲରେ ସତୀ କିଏ ଆମେ ଜାଣିନୁ ବା ଅସଲରେ ବେଶ୍ୟା କିଏ ତାହା ବି ଆମେ ଜାଣିନାହୁଁ ।

ଆଈ ଲୋ, ମୋ ମୁଣ୍ଡ ଛୁଇଁ କହିଲୁ, ତୋ' ଗପ ମୋ ଗପ ସମାନ ହେଲାନି ?



# 'କାନ୍ ଫୁସ୍‌ଫୁସି'

ଆମ ସମାଜ ଯେତେବେଳେ ଇଂରାଜୀରୁ ହିନ୍ଦୀକୁ ଗଲେଇଲା, ଶିଶୁ ପ୍ରଥମ ଚାଲିଶିଖିବା ପରି ଅନେକ ଝୁଣ୍ଟୁଥିଲା । ଏବେ ବି ଝୁଣ୍ଟୁଛି ଯେ, ହେଲେ ଅନେକ ସଂଶୋଧନ ହୋଇଆସିଲାଣି । ଟେଲିଫୋନ୍‌ର ନାଁ ହିନ୍ଦୀରେ ଦୂରଭାଷ ହେବା ପୂର୍ବରୁ ଶୀର୍ଷକରେ ଯାହା ଲେଖାଅଛି ହିନ୍ଦୀ ଭାଷାକାର ପଣ୍ଡିତମାନେ ତାହାହିଁ ବୋଲି କହିବାକୁ ଚାହିଁଲେ । ଏବେ ଲାଗୁଛି, ସଂଶୋଧନ ନ ହୋଇଥିଲେ ଭଲ ହୋଇଥା'ନ୍ତା । କାରଣ ସାମ୍ପ୍ରତିକ ରାଜନୀତିରେ, ଅନ୍ତତଃ ଆମ ଦେଶରେ, ଏଇ ଯନ୍ତ୍ର ଯୋଗୁ ଯେତେ କାଳକ---ବଣିଜ ହେଲାଣି ସେଥିରେ ଦୂରଭାଷ କିଏ, ଦୁର୍ଭାଗ୍ୟ କିଏ ?

ଦୁର୍ନୀତି, ରେଳ ଦୁର୍ଘଟଣା, ଯୁଦ୍ଧ, ହଇଜା, ମାତ୍ର ନାଁ ନେଇ ଅମାତ୍ୟ ଓ କ୍ୟାପ୍‌ସାକୁ ମନରେ ଲୁଚାଇ ଅଭିମାନ ଏ ସବୁ ସକାଶେ କେହି ନା କେହି, କେତେବେଳେ ନା କେତେବେଳେ ଇସ୍ତଫା ଦେଇଥିଲେ । ଖାଲି ଟେଲିଫୋନ୍ ସକାଶେ ବାକିଥିଲା, ତାକୁ ବି ରାମକୃଷ୍ଣ ହେଗ୍‌ଡ଼େ ସାରିଦେଲେ ! ଏଣିକି ଅଲଗା ନାଟକ ରଚନା କରାଯାଇପାରେ ବରଂ, ଟେଲିଫୋନୀୟ ବିବାଦର ସଳାପରେ ଆଉ ନୂତନତ୍ୱ ରହିବ ନାହିଁ ।

ଗୋଟିଏ ଝିଅ ତା'ର ସାଙ୍ଗ ଝିଅକୁ ପଚାରୁଛି : ହାଏ ଡିଅର୍, ତୁ ଜାଣିଛୁ—ଏ ଯୋଡ଼ି ପୁଅଗୁଡ଼ାକ ନିଚ୍ଛାଟିଆ ଜାଗାର ପୋଳିଆ ଉପରେ ବସି, ପାର୍କର ନିର୍ଜନ ସ୍ଥାନରେ ବା କଲେଜର ଲାଇବ୍ରେରୀ କାନ୍ଥକୁ ଆଉଜି ଫୁସ୍‌ଫୁସ୍ ହୋଇ ଯେ ଅସରନ୍ତି କଥାର ପେଟରା ମେଲାଇଥା'ନ୍ତି କୋଉ କଥା କଥାହୁଅନ୍ତି ସେମାନେ ?

ଆଉ ଝିଅଟି ପ୍ରଶ୍ନକାରିଣୀର କାନପାଖକୁ ମୁହଁଟି ଯୋଖି କହିଲା--ଆମେ ଯେମିତି କଥା ହଉନା, ଠିକ୍ ସେମିତି ।

ପ୍ରଶ୍ନକାରିଣୀ ଝିଅଟିର ଆଖି ଆକାଶକୁ ଖୋସି ହୋଇଗଲା । ସେ କହିଲା—ହେ' ମା-ଆ-ଆ, ଏଡ଼େ ଅସଭ୍ୟଗୁଡ଼ାକ !

ହିଁଅଛି ବର୍ଣ୍ଣିତ ହେବାପାଇଁ କୌଣସି ଛଳନା କରିନାହାଁନ୍ତି । ମୁଁ ତା'ର ପକ୍ଷ ସମର୍ଥନ କରିବ । କାରଣ ନିଜ ପାଇଁ ବିଗୁରିଛା ସବୁବେଳେ ନିଆରା । ଯଦି ହେଗ୍‌ଡେଙ୍କ ସମର୍ଥନକାରୀ ମନ୍ତ୍ରିମଣ୍ଡଳ କେନ୍ଦ୍ରରେ ଥା'ନ୍ତା, ଏକଥା ପୃଥିବୀର କେହି ଜାଣିପାରି ନ ଥା'ନ୍ତେ । ପାଠକମାନଙ୍କୁ ମନେପକାଇ ଦେଉଛୁ, ପୃଥିବୀର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଓ୍ୱାଟର୍‌ଗେଟ୍ ସ୍କାଣ୍ଡାଲ୍ କୌଣସି ରାଜନୈତିକ ବୈରଭାବ ଯୋଗୁ ଜଣାପଡ଼ି ନଥିଲା । ତାହା ଜଣାପଡ଼ିଥିଲା ଜଣେ ସାମ୍ବାଦିକଙ୍କ ଦ୍ୱାରା । ତେଣୁ ଦର୍ପଣରେ କଣ୍ଠ ଉଦ୍‌ଗତ ନ ହେବା ପର୍ଯ୍ୟନ୍ତ, ଆମେ ନିରାପଦ ଭାବେ ଧରିନେଇଛୁ ଯେ ସବୁ ବିକୁଆଡ଼ି ତୁଳସୀ ଅଟନ୍ତି ।

ଏବେ ଆମ ପ୍ରଦେଶରେ କର୍ଣ୍ଣାଟକ କଥା ଦେଖି କେତେକ କହିଲେଣି ଏଠିବି ଅମୁକ ଅମୁକଙ୍କ ଫୋନ୍ ଟେପ୍ ହେଉଛି । ତା'ସହିତ 'ଆମର' ମଧ୍ୟ । ଯାହାକୁ ଏକ ଏପିଡେମିକ୍— ବିଲକ୍ଷଣ ବୋଲି କହିବା । କିନ୍ତୁ ସେମାନଙ୍କ ପାଇଁ ଏନ୍‌ଡେମିକ୍ । ଟେଲିଫୋନ୍ ଫିସ୍-ଫିସ୍, ସାଁ-ସାଁ, ପିଟ୍-ପିଟ୍ ବା କୁଁ-କୁଁ କିଏ ଶୁଣୁ ନଥିବେ ଯେ । ଏକଥା ପଢ଼ି କେହି ଭାବିବା ଉଚିତ ନୁହେଁ ଯେ 'ଆପ୍ରୋପ୍ରିଏଟ୍ ଗଭର୍ଣ୍ଣମେଣ୍ଟ' (ସରକାରଙ୍କୁ ସୂଚାଇବା ପାଇଁ ଏକ ଆଇନଗତ ନାମ) ଅତ୍ୟନ୍ତ ସାଧୁ ଓ ନିଷ୍ପାପ ବୋଲି ଆମର ପ୍ରତ୍ୟୟ ହୋଇଛି । କିନ୍ତୁ ଆଶ୍ଚର୍ଯ୍ୟ ଲାଗୁଛି, ଆମ ଓଡ଼ିଆ ପୁଏ ଟେଲିଫୋନ୍‌ରେ ଫିସ୍-ଫିସ୍, କୁଁ-କୁଁ ଆଗରୁ ନ ଶୁଣୁଥିଲେ ବା ଶୁଣି ବୁଝି ନଥିଲେ ବା ରାମକୃଷ୍ଣଙ୍କ 'ବନବାସ' ଯିବାପରେ ଶୁଣିଲେ ବା ଏଯାବତ୍ ନ ବୁଝିବା କଥା ବୁଝିଲେ ? ମନରେ ଗୋଟିଏ ଧାରଣା ହେଉଛି ଯେଉଁମାନେ 'ଆମର' ବୋଲି ଚିତ୍କାର କରୁଛନ୍ତି, ସେମାନେ ଦେଖେଇ ଯେତିକ କରୁଛନ୍ତି ତାହାଠାରୁ ଅଧିକା ଷ୍ଟକ୍ ଥାଇପାରେ କି ଲୁଚାଇବାକୁ ?

ଏମାନଙ୍କ ବିଷୟରେ ଅଧିକ ଆଲୋଚନା କରିବା ଏକ ବାହ୍ୟବ୍ୟ ବ୍ୟାପାର ଅର୍ଥାତ୍ ହାଓ୍ୱା କାରବାର । ମୂଳରୁ ଟିପଣୀ ପଢ଼ିନାହାଁ, ଯଦି ସନ୍ତାନ ହୁଏ ସେ ପୁଣି ପୁଅ ହେବ ଓ ତା'ର ନାମକରଣ ଗୋପାଳବଲ୍ଲଭ ବା ଗୋପାଳକୃଷ୍ଣ ହେବ ସେଥିପାଇଁ ବିତର୍କର କୌଣସି କାରଣ ନାହିଁ । ବର୍ତ୍ତମାନ କେବଳ ଚିନ୍ତା କରିବା କଥା ହେଗ୍‌ଡେଙ୍କ ବିଷୟରେ । ମାନ

ମହତ ଯେତିକ ଯାଇଛି ସେତିକରେ ଯଦି କଥାଟି ଇତି ହୁଏ ତାହେଲେ ଦିଲ୍ଲୀରେ ବସି ଜୟଜୟକାର ପବ୍ଲିସିଟି ମ୍ୟାନେଜ୍ କରହେବ ମାତ୍ର ଯଦି କେହି ଚଗଲମି କରି ଆସେମ୍ବ୍ଲି ବା ପାର୍ଲାମେଣ୍ଟରେ ସ୍ୱାଧିକାର ଇଲ୍ୟା ଛୁଆଁଇ ଦିଅନ୍ତି ? ଏ ମାମଲାରେ ଆଦେଶ ଦେଇଥିବା ଅଫିସରଙ୍କ 'ତାକତ୍'କୁ ଭରସା କରାଯାଇ ପାରିବ ନାହିଁ । ବିଚରାଗୁଡ଼ିକ ! ଯଦି ସତ କହିଦିଅନ୍ତି ? ପୁନଶ୍ଚ, ଅଭୟ ଗୁମ୍ଫା ହଟିଯାଇଛି । କାହାକୁ ଭରସାକରି ଲମ୍ଫ ପ୍ରଦାନ କରିବେ ମହୋଦୟଗଣ ?



# ଋଷି ଓ ଇନ୍ଦ୍ରପଦ ପ୍ରସଙ୍ଗ

ଆଗକାଳରେ କୁଆଡ଼େ ଏମିତିକା ହେଉଥିଲା । ପରମ ବୈରାଗୀ ଋଷିମାନେ ଲାଳସାଧୀନ ହୋଇ (କାହିଁକି) ଘୋର ତପସ୍ୟା କରୁଥିଲେ । ଅନୁନୟ ହୋଇ କହୁଥିଲେ—ହେ ବିଷ୍ଣୁ, ନେହୁର ହୋଇ କହୁଛି, ମୋତେ ଥରକ ପାଇଁ ହେଲେ ଟିକେ ଇନ୍ଦ୍ର କରନ୍ତୁନ ? ଇନ୍ଦ୍ର ପୋଷ୍ଟ୍ ତ ସମ୍ଭାବ୍ୟ ଗୋଟାଏ । କେତେବେଳେ କାହା ତପସ୍ୟାରେ କାଳେ ବିଷ୍ଣୁ ମୁଗ୍ଧ ହୋଇ ପଡ଼ିବେ, ଏତେ ରିସ୍କ ନନେଇ ଯେତେବେଳେ ଯେଉଁ ଇନ୍ଦ୍ର ପାୱାରରେ ଥା'ନ୍ତି, ସିଏ ତାଙ୍କ ଇଣ୍ଟେଲିଜେନ୍ସ ବ୍ୟୁରୋକୁ ରଗଡ଼ି ପେଷି ପୃଥିବୀ ସାରା ଘୂରଉଥାନ୍ତି—ଦେଖରେ, କିଏ କୋଉଠି ତପସ୍ୟା କରିପକାଇଲା କି ! ଯେତେହେଲେ କ୍ଷମତାଟି, ୱାର୍ଣ୍ଣିଂ ସିଗ୍ନାଲ୍ ଆଗରୁ ଠଉରେଇବା ଭଲ । ପାୱାର ପଚିକା ଚିଜ ଥରେ ହାତଛଡ଼ା ହେଲା ଅର୍ଥ ବ୍ୟକ୍ତିଟି ବାଉଳା ବ୍ୟାଧିପ୍ରାପ୍ତ ଅରଣ୍ୟରେ ବୁଲିବା ଛଡ଼ା ଆଉ କରିବ କ'ଣ ?

ଅସଲ ମଉକା ବେଳକୁ ଇଣ୍ଟେଲିଜେନ୍ସ ବାଲାଏ ଯେମିତି ଫେଲ୍ମାରି ଶଗଡ଼କୁ 'ଗଡ଼ା-ଗଇଡ୍' କରେଇ ଦିଅନ୍ତି ସେମିତିକା ଗୋଟିଏ ଘଟଣା ଥରେ ଘଟିଗଲା । ଆରାବଳୀ ପର୍ବତର ଏକ ନିରୋଳା ସ୍ଥାନରେ ଜଣେ ବସି ତପସ୍ୟା ଚଳେଇଛି । କେହି ଟେର୍ ପାଇନାହାନ୍ତି । ପ୍ରବଳରୁ ପ୍ରବଳତର ହୋଇ ଯେତେବେଳେ ଇନ୍ଦ୍ରଙ୍କ ସିଂହାସନ ଥରିବାକୁ ଲାଗିଲା ସେ ଭଲ ଭିତରେ ଭେଲ ଦେଖିଲେ । ତାଙ୍କ ଇଣ୍ଟେଲିଜେନ୍ସବାଲାଙ୍କୁ ଭରସା ନକରି ଖୋଦ୍ ବୁଲିଲେ ସେ ଅନୁସନ୍ଧାନ କରିବାକୁ ।

ଦେଖି ଦେଖି, ତପସ୍ୟା କରୁଥିବା ଲୋକଟା ବହୁତ ବାଟ ଆଗେଇ ଯାଇଛି । ବିଷ୍ଣୁଙ୍କ ଆଟେନ୍ସନ୍-ଡ୍ର କରିବା ଷ୍ଟେଜ୍ ଆସିଗଲାଣି ପ୍ରାୟ । ହଲପ୍ କରି କହୁଛି ଇନ୍ଦ୍ରଙ୍କ ଅବସ୍ଥାରେ ଆପଣ ଥିଲେ ବି ପାଗଳ ହୋଇଯାଇଥା'ନ୍ତେ । ଇନ୍ଦ୍ର କ'ଣ କଲେ ନା—ରମ୍ଭା, ମେନକା, ଉର୍ବଶୀ

ସମସ୍ତଙ୍କୁ ଡାକଦେଲେ । ଆଦେଶ ଦେଲେ—ତୁମେ ସବୁ ନୃତ୍ୟକର । ଦେହରୁ ବସନ ଖସେଇ ଦେଉଥିବ, ଯୌବନ ଦେଖେଇ ଦେଉଥିବ । କାମଦେବ ତାକୁ ବଡ଼ମ୍ବନାରେ ନପକାଇବା ପର୍ଯ୍ୟନ୍ତ, ତୁମ ସମସ୍ତଙ୍କର ଡିଫ୍‌ଟ ଡ୍ୟୁଟି ଚାଲିଲା । ନାଲାଏକ୍ କାହିଁକା, ତପସ୍ୟା କରୁଛି !

ଆଦେଶ ଦେଇସାରି ମଧ୍ୟ ବୈଜୟନ୍ତ ପ୍ରାସାଦରେ ଇନ୍ଦ୍ର ସ୍ଥିର ରହିପାରୁ ନଥାନ୍ତି । କେତେଦିନ ଅନ୍ତରରେ ଚେକ୍ କରିବାକୁ ଯାଇ ଦେଖନ୍ତି ଯେ ଅପ୍‌ସରାମାନେ ଯେତେ ବିମୋହନ ପ୍ରକାରେଣ ନୃତ୍ୟରତା ରହିଥିଲେ ମଧ୍ୟ ଲୋକଟି ଅବିଚଳିତଭାବେ ତପସ୍ୟା କରିଚାଲିଛି ।

ସେଇ ଜଙ୍ଗଲ ଭିତରେ ଇନ୍ଦ୍ର ନିଜର ସର୍ଭେ କ୍ୟାମ୍ପ୍ ପକାଇବାକୁ ବାଧ୍ୟ ହେଲେ । ସେ ଭାବିଲେ, କେମିତି କଥା, ଏ ଯୋଉ ନୃତ୍ୟ, ତହିଁରେ ଶହେରୁ ଶହେ ଫ୍ଲାଟ୍ ହୋଇଯିବା ଗ୍ୟାରେଣ୍ଟେଡ୍ । ଏ ତପସ୍ୟା କରୁଥିବା ଲୋକର ଏମିତି କି ଗୁଣ ଅଛି ଯେ !

ବୁଝିଲେ । ଲୋକଟି ସମ୍ପୂର୍ଣ୍ଣ ଆଖି ବୁଜିଛି । ନୃତ୍ୟ ଦେଖୁନାହିଁ । ନିରୀକ୍ଷଣ କରି ଜାଣିଲେ ଯେ ବଡ଼ଭୋରୁ ଲୋକଟା ଉଠି, ସେମିତି ଆଖି ବୁଜି ବୁଜି ଯାଇ, ନିକଟରେ ଥିବା ଗୋଟିଏ ନିମ୍ବଗଛରୁ ଫୁଲାଏ ଚୁଲି ଉତାରି ତାକୁ ଚୋବେଇ ଦେଇ ପୁଣି ତପସ୍ୟାରେ ବସିପଡ଼ୁଛି । ରହସ୍ୟ ଜାଣି ଇନ୍ଦ୍ର କହିଲେ—ୟୁରେକା, ୟୁରେକା । ଦେଖିବିରେ ବେଟା, ଯିବୁ କୁଆଡ଼େ ! ତା'ପରେ ସେ ଆଦେଶ ଦେଲେ ଯେ ନିମ୍ବଗଛଟିକୁ ନବାତ, ଶର୍କରା, ମହୁରେ ପୂରାପୂରି ଧୋଇଦିଅ । ତାହା ହେଲା ।

ଆରଦିନ ସକାଳୁ ତପସ୍ୱୀ ଖାଲିଟିକେ ଜିଭରେ ଓଠ ଚାଟିଦେଲେ ମାତ୍ର ପୁଣି ଯାଇ ତପସ୍ୟାରେ ବସିଗଲେ । ନିମ୍ବଗଛ ସବୁଦିନେ ନବାତ, ଶର୍କରା, ମହୁ ଦ୍ୱାରା ଧୂଆ ହେଉଥାଏ । କିଛି ଦିନପରେ ଦେବରାଜ ଆଦେଶ ଦେଲେ—ଏଥର ନିରେଳା ପାଣିରେ ନିମ୍ବଗଛକୁ ଧୋଇଦିଅ । ଗଛ ତା'ର ପୂର୍ବଗୁଣ ଫେରିପାଉ ।

ତା' ପରଦିନ ତପସ୍ୱୀଙ୍କ ପାଇଁ ଯେଉଁ ସକାଳଟି ଉଭାହେଲା ତାହା ହୋଇପଡ଼ିଲା ଗହନ ପଖଳାର ସକାଳ । ନିମ୍ବ ଚୁଲି ପିତା ଲାଗିଲା,

ଆପେ ଆପେ ଆଖି ଖୋଲି ହୋଇଗଲା । ସେ ଦେଖନ୍ତି—ଆଃ କି ନୃତ୍ୟ, କେତେ ରୂପସୀ, ଯୌବନର କି ଅନ୍ତରନ୍ତ ଫୁଆରା !

ଏହାପରେ ଆଉ ଗପ ନାହିଁ । ଗୋଟିଏ ଅପ୍‌ସରାକୁ ତପସ୍ୱୀ କୋଳରେ ଧରି ବସିଗଲେ । ମାନେ, କଥା ଶେଷ । ଅପ୍‌ସରାମାନେ କୁଆଡ଼େ ମର୍ତ୍ତ୍ୟରେ ଏପରି କାର୍ଯ୍ୟରେ ନିଯୁକ୍ତ ହେଲେ, ସଙ୍ଗେ ସଙ୍ଗେ ସନ୍ତାନ ପ୍ରସବ କରନ୍ତି ଏବଂ ବାଳୁତଟିକୁ ତା'ର ପିତାକୁ ସମର୍ପି ନିଜେ ସ୍ୱର୍ଗକୁ ରମାନା ହୋଇଯା'ନ୍ତି ।

ଏ କେଶ୍‌ରେ ତାହା ହିଁ ହେଲା । ତା'ପରେ ଦାଉ ସାଧିବାକୁ ଇନ୍ଦ୍ର ପ୍ରଚଣ୍ଡ ବର୍ଷା କଲେ । ବନ୍ୟା ହେଲା । ଋଷି ସଦ୍ୟଜାତ ପିଲାଟିକୁ ଧରି ଅଭ୍ୟୁତ୍ଥାନ ସନ୍ଧାନ କରିବାକୁ ଲାଗିଲେ । ବନ୍ୟା ଜଳ ଯେତେ-ବେଳେ ତାଙ୍କ ନାକରେ ପଶିଲା ସେତେବେଳେ ବିକଳ ହୋଇ ସେ ପିଲାଟିକୁ ଦୁଇ ହାତରେ ଉପରକୁ ଟେକିଧରି ଚିପେଇ ଚିପେଇ ଗ୍ଭଲିଲେ । କୋଉଠି ହେଲେ ନିକଟରେ ଟାପୁଟିଏ ଦେଖାଯାଉ ନାହିଁ । ସେତିକି-ବେଳେ ସେଇଠି ଉଭାହୋଇ ଇନ୍ଦ୍ର କହିଲେ : କରେ ବେଟା, ଆଉ ଇନ୍ଦ୍ର ହେବାକୁ ମନ ହେଉଛି ?

ଏ ସମୁଦାୟ କଥା କୋଉଥି ସକାଶେ କୁହାଗଲା ? ଓଃ···ନୋ କମେଣ୍ଟ୍ !



# ସଖିଖେଲ୍, ଚେଯ୍ ବଡ଼ ମନ୍ଦ

କୋଉ ଦୂର ଅଣତ । ରେଷ୍ଟୁରାଁ କର ଭଙ୍ଗା ପାଚେରିର କଣା ବାଟେ ମୁହଁପୂରାଇ ଅନାଇଲେ କିଛି ତ ଦେଖାଯାଉନି, ଯାହା ହେଜ ହେଉଛି ତାହା ବି ହାଇଡ୍ରୋଜେନ୍ ଗ୍ୟାସ୍ ପରି ବର୍ଣ୍ଣହୀନ, ସ୍ୱାଦହୀନ, ଗନ୍ଧହୀନ । ସ୍ମରଣରେ ଆମୋଦ ନାହିଁ ତେଣୁ ସ୍ଥିତି ଅତ୍ୟନ୍ତ ଅପ୍ରଶସ୍ତ ହୋଇପଡ଼ୁଛି ।

ତଥାପି...? କଥା କ'ଣ କି, ଅଗଣନଙ୍କ ପରି ଆମ୍ଭେ, ଏକଦା, ଅର୍ଥାତ୍—ଅସ୍ତି ଭାଗିରଥୀ ତୀରେ ପାଟଳୀପୁତ୍ର ନାମଧେୟ ନଗରମ୍ ପରି ଅଣତ କାଳରେ, ପ୍ରେମ କରୁଥିଲୁ । ସେ ଥିଲେ ପ୍ରେମିକା ସେ ସାଂପ୍ରତିକ ପତ୍ନୀ ନୁହଁନ୍ତି । ତେଣୁ ପିଠି ଓ ମନକୁ ନିରାପଦରେ ରଖିବା ପାଇଁ ଆମ୍ଭେ ଅତୀତର ଏହି ସବଙ୍କାତ ଅଧ୍ୟାୟଟିକୁ 'ପ୍ଲାଟୋନିକ୍' ବୋଲି ବର୍ଣ୍ଣନାକରି ଗୌରବମୟ କରାଇଦେଉ । ଏପରି ଉଦ୍ୟମ ପ୍ରାୟ ସମସ୍ତେ କରନ୍ତି; ତହିଁରୁ ଅଧିକାଂଶ ନେଇଆଣି ଥୋଇପାରନ୍ତି ନାହିଁ; ଯେତେଜଣ ବା ସଫଳ ହୁଅନ୍ତି ତହିଁରୁ ଅଧିକାଂଶଙ୍କୁ କେହି ପରତେ ଯାଆନ୍ତି ନାହିଁ, ବାକି ଯେଉଁ ଅଳ୍ପସଂଖ୍ୟକ ରହିଲେ ସେମାନେ ସମାଜର ତନଖି ଦୋଳାରେ ଅନବରତ ଦୋହଲୁଥା'ନ୍ତି ।—ବେଳେ ବିଶ୍ୱାସର ସୀମା ଛୁଇଁଲେ, ଆରଥର ଅବିଶ୍ୱାସର । ଅତି ଦହଗଞ୍ଜ ଜୀବନ । ଇଏ ଆମ ସମାଜ କଥା ତ । ତେଣୁ ଉଦୟରୁ ଅସ୍ତ ପର୍ଯ୍ୟନ୍ତ ଯେଉଁମାନେ ମାମଲାଟିକୁ ସଂପୂର୍ଣ୍ଣ ଗୋପନ ରଖିଆସିଥା'ନ୍ତି କେବଳ ସେଇମାନେ ହିଁ ନିରାପଦ । ଆଉ କେହି ନୁହଁନ୍ତି ।

ଏବେ ସି.ବି.ଆଇ. ବାଲାଏ ଅମିତାଙ୍କ ଡାଏରି ଧରି ପକାଇଛନ୍ତି । ତହିଁରୁ ସପ୍ରେଦ୍ଙ୍କ ମର୍ଡ଼ର କେଶ୍‌ର 'ସନ୍ଧାନ' ସେମାନେ ପାଉଛନ୍ତି ବୋଲି ଖବରକାଗଜଆ ଝଡ଼ ଉଠାଇ ସାରିଲେଣି । ଏକଥା ଶୁଣି ମନରେ ଶଙ୍କା ଉପୁଜୁଛି--ଷଣ୍ଢମାନେ କେବେଠାରୁ ଶ୍ରୀମଦ୍‌ଭାଗବତ ବୁଝିବା ଆରମ୍ଭ କଲେଣି ? ଗୂଢ଼ତତ୍ତ୍ୱ ତ ବହୁତ୍ ଦୂରର କଥା । ଆଚରଣ କୋଉଠି ଅଗଲଚଗଲ ହୋଇପାରେ, ଭିନ୍ନ କଥା; ମାତ୍ର ପ୍ରେମର ଭାଷା, ଭାବନା ଓ

ଜାଣିଲଗାକୁ ପୋଲିସ୍ ବୁଝିବ ? କୋଉ ମାନୁଆଲ୍—ବର୍ଣ୍ଣବୋଧର ସହାୟତାରେ ? ଏ ମାମଲାରେ ମଣିଷଙ୍କ ସଂଖ୍ୟା ଯେତିକି, ସ୍ୱୀକାରର ପ୍ରକାର ମଧ୍ୟ ସେତିକି । ଏ ବିଷୟରେ ଆମେ ଦୃଢ ମତ ପୋଷଣ କରି ଅନ୍ୟମାନଙ୍କ ସମର୍ଥନ ମଧ୍ୟ ଦାବି କରିପାରୁ ।

ଜଣକୁ ଆଉ ଜଣେ 'ବୁଝିବ'—ଏଇ କଥାର ଫ୍ରେଟ୍‌ଫୁଡ୍‌ଫୁାନ୍ ଢଙ୍ଗେ ବର୍ଣ୍ଣନା କରିବା ପାଇଁ ସି.ଜି.ୟୁଙ୍ଗ୍ (C.G. Jung) ଦୁଇ ହଜାର ପୃଷ୍ଠାର ବହି (Memories, Dreams and Reflections) ଲେଖିଛନ୍ତି, ତଥାପି ଶେଷରେ ସ୍ୱୀକାର କରିଛନ୍ତି ଯେ, ସେହି ଗୁପ୍ତାମୋଦ ଗ୍ରହଣୀୟତାର ପରିଭାଷା ନାହିଁ । ଏମିତି ଚଳିତଫିରନ୍ତି ଢଙ୍ଗରେ ଆମେ କହିଦେଉ ଯେ, ପ୍ରେମ ପାଇଁ ଜଣେ ଅପରକୁ 'ବୁଝିବା' ଦରକାର । ଥରେ 'ବୁଝିବା' ହୋଇଗଲେ ଯେ ଇଲାକା ଅତ୍ୟନ୍ତ ନିଷିଦ୍ଧ ହୋଇପଡ଼େ । ପୋଲିସ୍ ଜଗିବା ଦରକାର ପଡ଼େନା ବା ରାଷ୍ଟ୍ର ସେଥିରେ ନାକ ପୂରାଇଲେ ବି ଅର୍ଥ କିଛି ହୁଏନା । ଆଉ ଗୋଟିଏ ପ୍ରସ୍ତାବନା ଦ୍ୱାରା କଥାଟି ପ୍ରାଞ୍ଜଳ ହୋଇଯିବ । ପାଞ୍ଚସାତ ଜଣ ଆଉ ପାଞ୍ଚସାତ ଜଣଙ୍କୁ 'ବୁଝି' କମ୍ୟୁନଟି ପ୍ରେମ କରିବା କେହି କେବେ ଶୁଣିଛନ୍ତି ? ତେଣୁ ରେସିଓ : ଓ୍ୱାନ୍-ଇଜ୍ -ଟୁ-ଓ୍ୱାନ୍ ।

ଏ ଇଂଲିଶ୍ କଥା ଛାଡ଼ନ୍ତୁ । ଆମ ବିଷ୍ଣୁ ଶର୍ମା କହିଲେ—ଦଦାତି ପ୍ରତିଗୃହ୍ଣାତି ଗୁହ୍ୟମାଖ୍ୟତି ପୃଚ୍ଛତି/ ଭୁଙ୍କ୍ତେ ଭୋଜୟତେ ଚୈବ ଷଡ଼୍‌ବିଧ ପ୍ରୀତିଲକ୍ଷଣମ୍ । ଅର୍ଥାତ୍ ଦେବା, ନେବା, ଗୁପ୍ତ କଥା କହିବା, ଗୁ ପ୍ତ ବିଷୟରେ ପରାମର୍ଶ କରିବା, ଖାଇବା ଓ ଖୁଆଇବା—ଏହି ଷଡ଼୍‌ବିଧଂ କାର୍ଯ୍ୟ ପ୍ରୀତିର ଲକ୍ଷଣ ସୂଚାଇ ଦିଏ କେବଳ । ତା'ଙ୍କୁ କ'ଣ ସ୍ପଷ୍ଟ ତ ଜଣା ନଥିଲା ଯେ, ସ୍ପଷ୍ଟ ପରିଭାଷାଟିଏ ନକହି ଲକ୍ଷଣ ଚରି ଡାଇଗ୍ନୋସିସ୍ କରି ଛାଡ଼ି ଦେଇଥା'ନ୍ତେ ?

ହକିବା ଓ ହଜାଇବାର ଆମୋଦ କେବଳ ପ୍ରେମରେ ଥାଏ । ଆଉ ଗୋଟିଏ ଇଲାକା କେହି କୁହନ୍ତୁ ତ ? କାହିଁ ଆଉ ପରିଶ୍ରମ କରିବେ ? ମିଳିବନି । ଝଡ଼ ବାହାରେ ଥାଇ ଘୂର୍ଣ୍ଣିବାତ୍ୟା ଭିତରେ ପଡ଼ିଥିବା ବସ୍ତୁଗୁଡ଼ିକର ଲଟପଟ ହେଉଥିବା ଦେଖି ଦେଉଁ ଅନୁଶୀଳନ

କରୁଯାଏ ତାହା ନିରପେକ୍ଷତା ନୁହେଁ, ପକ୍ଷପାତିତା ନୁହେଁ—ବୁଡ଼୍ ବକ୍ ପଣିଆ । କାରଣ ନିଜେ ସେଇ ଘୂର୍ଣ୍ଣିବାତ୍ୟା ଭିତରେ ଥାଇ ଜଣେ କ'ଣ ହେଉଥିବ ତାହା ଅନ୍ୟ ବୁଡ଼୍ ବକ୍‌ମାନେ ଅନୁଶୀଳନ କରିପାରିଛନ୍ତି ।

ଆମ୍ଭ ପ୍ରେମିକା ଆମ୍ଭକୁ ବହୁବାର ନିଜ ଡାଏରି ଦେଖାଉଥିଲେ । ଯେଉଁ ଲେଖା ଦେଖି ମନ ଆମ୍ଭର ପକ୍ଷୀରାଜ ଘୋଡ଼ା ଚଢ଼ି ଗଗନରେ ଉଡ଼ୁଥିଲା । ମୁଁ ଆମ ହଷ୍ଟେଲ୍‌ର କୃଷ୍ଣନନାକୁ ଗୁରୁଣା ପଇସା ଅଧିକା ଦେଇ ଟିକେ ଅଧିକା ଆଳୁ ଚକଟା ଖାଇ ଯେଉଁ ରାତିରେ ଗୁରୁପାକ ସହ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କରିବାକୁ ବାଧ ହୋଇଥିବି ଠିକ୍ ସେଇ ରାତିରେ ପ୍ରେମିକା ସୁସ୍ୱାଦୁ ଖାଦ୍ୟ ଖୁଆଇ ତାଙ୍କ ପ୍ରେମିକଙ୍କୁ ଗେହ୍ଲା ଇତ୍ୟାଦି କରିଥା'ନ୍ତି ବୋଲି ଯଦି ଲିପିବଦ୍ଧ କରିଥା'ନ୍ତି, ରକ୍ତମାଂସର ମଣିଷ ହୋଇ ସଜଫୁଲ ପରି ତେଜ ମନ ହେବ କି ନାହିଁ ? ଦିନ ଅସିଲା ଭାବିଲି ନିକିତି ଭଳି ଅତଉଲ ହେଉଛୁ । ମୁଁ ସପନର ଟିକିଏ ଭାଗ ପାଉନ, ସେ ଏକୁଟିଆ ଦେଖୁଛନ୍ତି କେମିତି !

ତା'ପରେ, ମୁଁ ବି ଦେଖିଲି । ଖାଲି ଡାଏରି ଲେଖାରେ ତା'ର ବହୁତ ପରେ, ଫଟା ମାଠିଆ ଯେତେବେଳେ ଯୋଡ଼ହେଲା ନାହିଁ, ସେ ବି ମୋତେ ଥରେ ରାଗିଯାଇ କହିଲେ ଯେ ସେପରି ଲେଖା ଯେତିକ ସବୁ ମିଛ ଥିଲା ! ସ୍ୱପ୍ନ ତ ଦୂରର କଥା ସେ ମୋ ବିଷୟରେ ଚିନ୍ତା ବି କେବେ କରୁନଥିଲେ । ଏପରି ଉକ୍ତି ଆମ୍ଭକୁ ତତ୍କାଳୀନ ପରିସ୍ଥିତି ଯୋଗୁ ସୁବିଧାଜନକ ହେବାରୁ ଆମ୍ଭେ ତାହାକୁ ତୁରନ୍ତ ଗ୍ରହଣ କରିନେଲୁ ।

ଏତେକଥା କହିବାର ଅର୍ଥ ପ୍ରେମ ପାଇଁ 'ଓ୍ୱାନ୍-ଇନ୍-ଟୁ ଓ୍ୱାନ୍'ମାନଙ୍କ ଭିତରେ ଭାବର ଭାଷା ତ ଅହରହ ପରିବର୍ତ୍ତନଶୀଳ ଏବଂ ଏପରି ସ୍ଥିତିରେ ପୋଲିସ୍‌ବାଲାଙ୍କ କଷ୍ଟୋଡ଼ିରେ ଏମିତି କେଉଁ ଅଦ୍ଭୁତ ବର୍ଣ୍ଣବୋଧ ଅଛି ଯେ, ସେମାନେ ବିଭାଗୀୟ ବିଚକ୍ଷଣତା ଦେଖାଇବାକୁ ଡାଲି ତରୁଆଲ୍ ଧରି ବାହାରି ପଡ଼ୁଛନ୍ତି ?



# ମନକଥା

ଆଈ ମା' କାହାଣୀରେ ହେଉ ପଛେ, ସମସ୍ତେ ପ୍ରାୟ ଶୁଣିଥିବେ ରାଜାଘରେ ଅଭିଆଡ଼ୀ ଝିଅଗୁଡ଼ିକ ଅଠର ବର୍ଷରୁ ଅଧିକା ବଢ଼ନ୍ତି ନାହିଁ । ଷୋହଳ ବେଳେ ସେମାନଙ୍କ ରୂପର ଭୂୟସୀ ପ୍ରଶଂସା ଏବଂ ଯେହେତୁ ଅଠର ଟପନ୍ତି ନାହିଁ, ଯେତେବେଳେ ସେମାନେ ଅବିବାହିତା ରୁହନ୍ତି ନା କାହିଁକି ସେହି ସମୟକୁ ସମଗ୍ର ରାଜ୍ୟରେ ଦୁଇବର୍ଷ ବୋଲି ଢଗୃର କରାଯାଏ ! ସେମିତିହେଲେ ବି ସେମାନେ ହୁଅନ୍ତି ଲଳିତ ଲବଙ୍ଗଲତା । ତେଣୁ, ରାଜ୍ୟରେ ସେମାନଙ୍କଠାରୁ ଆଉ ଶୋଭନା ନମିଳନ୍ତି ! ଗୁଣ, ଚରିତ୍ର ଓ କେତେକ ଚମତ୍କାରିତା ସମ୍ପର୍କରେ ରାଜକୀୟ ବସ୍ତାନ୍ ମଧ୍ୟ ତଦ୍ରୂପ କରାଯାଏ । ରାଜସିକ ହେଉ ବା ତାମସିକ ହେଉ, ଏହା ଏକ ପ୍ରକାର ଉଦ୍ଭଟ ମାନସିକତା । ସମସ୍ତେ ହୋ-ହୋ ହେଉଥିଲେ ସୁଦ୍ଧା ଭାବନାଟି ଅସହାୟ ରୂପେ ଏକାକୀ ।

ମଣିଷର ତଥାକଥିତ ଜ୍ଞାନ ପ୍ରାପ୍ତି ଯେତିକି ଆଦିମ, ନିଜର 'ଅସ୍‌ଲିୟତ୍'କୁ ଲୁଚାଇ ଦୁସରା କିସମ୍‌ରେ ଦେଖେଇହେବା ପ୍ରବୃତ୍ତି ମଧ୍ୟ ସେତିକି ଆଦିମ । ଯୁଗ ସହିତ ଏହି ଆଚରଣ ନାନାଦି ପ୍ରକାର ପାଲିସ୍ ହୋଇ ବରଂ କଟରଙ୍ଗ୍ କାଗଜ ପରି ଚକ୍‌ଚକ୍ କରୁଛି । ସ୍ଥିତି ଯଦି ଏଇଆ, ମନ କଥା କୁହାଯାଏ କେମିତି ? ବାସ୍ତବିକ, ଏ ପ୍ରଶ୍ନଟି ଅତୀବ ସଙ୍ଗୀନ । ଯେତେ ମଣିଷ ସେତେ ମନ । ଗୋଟିଏ ମନଦ୍ୱାରା ନିୟନ୍ତ୍ରିତ ଆଚରଣ ଅନ୍ୟ ସହିତ ସର୍ବତୋଭାବେ କଦାପି ମେଳ ଖାଇବ ନାହିଁ । ଗଡ଼ବଡ଼ ଏଇଠୁ ଆରମ୍ଭ ହୁଏ, ଏଇଠୁ ଆରମ୍ଭ ହୁଏ ଫାଜିଲ୍‌ପଣିଆର ସମ୍ପ୍ରସାରଣବାଦ । ନିଜର 'ସକ୍‌ସେସ୍-ସ୍କୋର୍' ପାଇଁ କିଏ କେତେ ଅଧିକ ସଂଖ୍ୟକ ମନକୁ କେତେ ଅଳ୍ପ ସମୟ ମଧ୍ୟରେ କବଳିତ କରିପାରେ ତାହାହିଁ ହୋଇପଡ଼େ ଯୋଗ୍ୟତାର ମାନଦଣ୍ଡ ।

ଏତେ କଥା ଶୁଣି ପାଠକେ ଭାବୁଥିବେ, ବୋଧହୁଏ ଆଲୋଚନା ରାଜନୀତି ଇଲାକା ଛୁଇଁବ । ନା ଆଜ୍ଞା, କେବଳ ନୁହେଁ । ଏ କଦମ୍ବର

ଫାଇଲ୍‌ମାନେ କୋଉଠି ନାହାନ୍ତି ଯେ ! ଟିଚରରୁ ଡାକ୍ତର୍, ମନ୍ତ୍ରୀଆରୁ ମିନିଷ୍ଟର ସବୁଠାରେ ମିଳିବେ । ହଠାତ୍ ଚିହ୍ନା ପଡ଼ନ୍ତିନାହିଁ, ତାହା ଭିନ୍ନ କଥା ।

ଫାଇଲ୍‌ମାନଙ୍କୁ ମୋଟାମୋଟି ତିନିଭାଗରେ ବିଭକ୍ତ କରିବା ପୂର୍ବରୁ ପ୍ରଥମ ସର୍ତ୍ତ ହେଲା, ଆପେକ୍ଷିକ ଭାବେ କ୍ଷମତାର ଅଧିକାରୀ ଯେଉଁମାନେ ହୋଇପାରିବେ ବା ଫିଯାଦକର କ୍ଷମତାକୁ ନିଜ ବଟୁଆ ଭିତରେ ରଖିପାରୁଥିବେ ସେଇମାନେ ହିଁ କେବଳ ଫାଇଲ ପଦବାଚ୍ୟ ହେବେ । ତିନି ପ୍ରକାର କପରି ? ଥୋକେ ମନକଥା କହିପକାନ୍ତି; ଆଉ କେତେକ ବାରପ୍ରକାର ପେଖନା କାଢ଼ନ୍ତି, ଉଦ୍ଦେଶ୍ୟ—ଉପଭୋକ୍ତା ନିଜେ କସରତ୍‌କରି ବୁଝ୍ । ବେଶି ଅଛନ୍ତି ଯେଉଁମାନେ କହନ୍ତି ଗୋଟିଏ କଥା ଅଥଚ ମତଲବ୍ ଥାଏ ନଆରା କୋଉଠି ।

ମୋର ଦୁଇଜଣ ବନ୍ଧୁଙ୍କ କଥା । ଜଣେ ସ୍କୁଲ୍ ବେଳର ପାଠପଢ଼ା ସାଙ୍ଗ, ହୋଇଥାଏ ହାକିମ । ଅନ୍ୟଜଣକ କଲେଜ ସାଙ୍ଗ—ପେସ୍କାର, ପୁଣି ସେଇ ହାକିମଙ୍କର । ହାକିମ ଓ ତାଙ୍କ ପେସ୍କାରଙ୍କ ଭିତରେ ପରସ୍ପର ବନ୍ଧୁତା ଆସିବ ବା କାହିଁକି ? ଯାହା ସମ୍ପର୍କ, ନହାତ ଅଫିସିଆଲ୍ ।

ସହରଟା ସାରା ହାକିମଙ୍କର ଅପରସୀମ ନାଁ । ସାଧୁତାରେ ସତେ ଯେମିତି ଶୁଭ୍ର କାର୍ତ୍ତିକର ଆକାଶଦୀପ । ହାଣ୍ଡି ର କଣା ଭିତରୁ ଜୁଳୁଜୁଳୁ ହୋଇ ଯେତିକି ଆଲୁଅ ଦେଖାଯାଉଥାଏ ସେତିକି ବା ଜଗତକୁ ପୁଣ୍ୟମୟ କରିଦେଉଥାଏ ଯେମିତି । ଯେଉଁମାନେ ସମାଜରେ ଏମିତିକା ପଡ଼ିଆରି ହାସଲ କରିଥା'ନ୍ତି ସେମାନଙ୍କ ଧାପ ବି ଟିକେ ଟାଣ ଥାଏ । ନିଜ ଦପ୍ତରକୁ କିପରି ସମ୍ପୂର୍ଣ୍ଣ ପାପମୁକ୍ତ କରିପାରିଛନ୍ତି ସେ ବିଷୟରେ ହାକିମ ବହୁବାର ମହିମା ବର୍ଣ୍ଣନା କରି ଗୌରବାନ୍ୱିତ ହୁଅନ୍ତି ।

ମୋ ପେସ୍କାର ବନ୍ଧୁଟିର ଆକ୍ଷୁଦୋଷ ମୋତେ ଜଣାଥିଲା । ଅର୍ଥାତ୍ ମାଲ୍‌ନେବା କାରବାରରେ 'ଆବ୍‌ସଲିଉଟ୍ ସୋସିଆଲିଜିମ୍' । ସେଇ ଦପ୍ତରରେ ମୋର ଗୋଟିଏ କାମଥାଏ ଏବଂ ଅକସ୍ମାତ୍ ଚଗଲମିର ଭୂତ ମୁଣ୍ଡରେ ପଶିଗଲା । ପେସ୍କାରବାବୁ ମଧ୍ୟ ମୋର ବନ୍ଧୁ, ହାକିମ ସେ କଥା ଜାଣିନଥା'ନ୍ତି । ଏମିତି ଏକ ଅବସ୍ଥା ଉପୁଜିଲା ଯେଉଁଥିରେ ହାକିମ ନିଜେ

ଇଜ୍‌ଲାସ୍‌ରୁ ଉଠିଆସି ତାଙ୍କ ନିଜ ପେସ୍କାରଙ୍କୁ ମାଗିଲେ, "ବଡ଼ବାବୁ, ଅମୁକ ଫାଇଲ୍‌ଟା ଟିକେ ଦେଲ ।"

ଟେବୁଲ ସାମ୍ନାରେ ଠିଆ ହୋଇଥିବା ଯେ କୌଣସି ଲୋକଙ୍କୁ ହଠାତ୍ ଅନେଇଦେବା ଅର୍ଥ ସରକାରଙ୍କ ମର୍ଯ୍ୟାଦାକୁ ଭୂଲୁଣ୍ଠିତ କରିଦେବା । ଏ ପରମ୍ପରା ପ୍ରାୟ ଆମର ସବୁ ଦପ୍ତରରେ ଦେଖାଯାଏ । ପେସ୍କାରବାବୁ ତାଙ୍କ ନିଜ ହାକିମଙ୍କୁ ଅନାଉନାହାନ୍ତି । ବନ୍ଧୁଙ୍କର ଆତ୍ମଦୋଷ କଥା ଆଗରୁ କହିଛି । ସେ କ'ଣ କରୁଥା'ନ୍ତି ନା—ଗୁଡ଼ାଏ ଲେଖୁଥିବାର ଛଳନା କରି, କେହି ନଜାଣିଲାପରି ପାପୁଲି ମେଲେଇ ବାଁହାତଟିକୁ ଆଗକୁ ବଢ଼େଇ ଦେଇଛନ୍ତି । ସେ କଥା ମୁଁ ବୁଝୁଥାଏ ମାତ୍ର ହାକିମ ବୁଝିବେ ବା କୁଆଡ଼ୁ ? ସେ ନିଜେ ସାମ୍ନାରେ ଛିଡ଼ା ହୋଇଛନ୍ତି ଅଥଚ ପେସ୍କାର ଶୁଣୁନି, ଏତିକି ମାତ୍ର ତାଙ୍କର ଅହଂଭାବକୁ ଆହତ କରୁଥାଏ ।

ମୁଁ ପକେଟରୁ ଦଶଟଙ୍କାର ନୋଟ୍‌ଟେ କାଢ଼ି ସିଆଣିଆ ପାପୁଲିଟି ଭିତରେ ଗୁଞ୍ଜି ଦେଲାବେଳକୁ ସେ ଅନେଇଲେ । ହାୟ, ଆଖି ସାମ୍ନାରେ ହାକିମ ! ତା'ପରେ ମେଦ୍‌ନୀ କମ୍ପିଲା···

ସବୁକଥାର ସମାଧାନ ହୋଇଗଲା ଅବଶ୍ୟ । ସନ୍ଧ୍ୟାରେ ପେସ୍କାର ବନ୍ଧୁଙ୍କଠାରୁ ଜାଣିବାକୁ ପାଇଲି ଯେ, ହାକିମଙ୍କ ଦୁଇ ପିଲାଙ୍କର ଅଲଗା ଅଲଗା ଦୁଇଜଣ ଗୃହଶିକ୍ଷକ ଓ ଅମୁକ ଡେଜରାଡ଼ ଦୋକାନର ମାସିକିଆ ସଉଦା ଖର୍ଚ୍ଚ ଦିଏ କିଏ ? ଆଉରି କେତେ କଥା ଅଛି ।

"ହଇରେ, ତୁ ତଳକୁ ମୁହଁ ବାଁହାତ ପାପୁଲି ଏଇଥିପାଇଁ ବଢ଼େଇଦେଉ ?"—ଏହି ପ୍ରଶ୍ନର ଉତ୍ତରରେ ପେସ୍କାର ବନ୍ଧୁ ମୋର କହିଲା, "କ୍ଷମତା ମାପରେ ମୁଁ ଯେତେବେଳେ ଶ୍ରେଷ୍ଠ, କାହିଁକି ଦଶ ପଚାଶ ଲୋକଙ୍କ ମୁହଁକୁ ଅନେଇ ପାପ କରିବି । ଏପର୍ଯ୍ୟନ୍ତ ମୋ ମନକଥା ତ କାହାରି ପାଇଁ ଅବୁଝା ହୋଇନଥିଲା । ତୁ ହାରାମି ମୋତେ ଧରା ପକେଇଦେଲୁ ।"

ମୁଁ ତାକୁ ସାନ୍ତ୍ୱନା ଦେବାକୁ ଯାଇ କହିଲି, "ତୁ ଏକା ଧରା-ପଡ଼ିଲୁ ? ସାରା ପୃଥିବୀଟା ଏମିତି ଧରାପଡ଼ୁଯା'ନ୍ତେ କି···"



# ସେଇ ଟିକେ ଜାଣି ନ ପାରି

ଦୁଇଜଣ ବନ୍ଧୁ ସକାଳୁ ସକାଳୁ ଦେଖା ହୁଅନ୍ତି । ଜଣେ ଅପରର ଅବସ୍ଥା ଦେଖି ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇପଡ଼େ । ପଚାରେ— ଆରେ, ହେଲା କ'ଣ ? ତୋ' ଗାଲ ମୁହଁ ଏମିତି ଫୁଲିଛି ଯେ ।

ବାସ୍ତବିକ ଆର ବନ୍ଧୁଟି ଭାରି ଯନ୍ତ୍ରଣା ପାଉଥାଏ । କାନମୂଳ ଦରଜ, ଦାନ୍ତମାଡ଼ି ଶିର୍‌ଶିର୍ ହୋଇଯାଉଛି । ମୁହଁଟା ଫୁଲି ଅଦ୍ଭୁତାକାରଆ ଦେଖାଯାଉଛି । ପେଟରେ କ'ଣ କୋଉଠି ବାଜୁଛି ଜଣା ନାହିଁ, ବସିଲା ବେଳକୁ କାଟୁଛି, ଛିଡ଼ାହେଲା ବେଳକୁ କାଟୁଛି । ଆଣ୍ଠୁଟା ବି ଛେଚା ହୋଇଯାଇଛି । ପ୍ରଶ୍ନକୁ ଆଡ଼େଇ ଗଲାପରି ସେ କହିଲା, "ଛାଡ଼ିବେ, ଭାଗ୍ୟ ଖରାପ, ଯାହା ହେବାର ହେଲା ।"

ଜିଜ୍ଞାସୁ ବନ୍ଧୁର ଅନୁକମ୍ପା ଆହୁରି ବଢ଼ିଗଲା । ସେ ପଚାରିଲା, "କ'ଣ ହେଲା କିରେ ?"

"ସେ ଯୋଉ ମୋ ସାମ୍ନା ଫ୍ଲାଟ୍...", ଅତି କଷ୍ଟରେ ପୀଡ଼ିତ ବନ୍ଧୁଟି ଉତ୍ତର ଦେଉଥାଏ ।

"ମୃଣାଳିନୀ ଘରଟି । ତୁ ତାକୁ ଚିହ୍ନିଛୁ ? ସେ ନା ଆମ ସାଙ୍ଗରେ ପଢ଼ୁଥିଲା । ତୁ ଯେତେବେଳେ ବନାରସ ପଢ଼ିବାକୁ ପଳାଇଲୁ ସେତେ- ବେଳେ ତାକୁ ନେଇ ଯାହା କାଣ୍ଡ ହୋଇଛି, ଜାଣିଛୁ ?"

"ଜାଣିଛି ।"

"ଆବେ, ତା'ଘରେ କ'ଣ ଚୋର ପଶିଥିଲା ? ତୁ ମେନ୍‌ଡ୍ରେକ୍ ଦି ମାଜିସିଆନ୍ ହୋଇ ପହଞ୍ଚିଗଲୁ ନା କ'ଣ ? ତା' ସ୍ୱାମୀ ନା ଗୋଟେ ମଲ୍‌ଟି-ନ୍ୟାସ୍‌ନାଲ୍ ଫାର୍ମରେ ଅଛି । ବେଶ୍ ଥାଟ ଜମେଇ ରହିଛି ବି ।"

"ଜାଣିଛି ।"

"ବର୍ଷକୁ ଦୁଇତିନ ଥର ଫରେନ୍ ଯାଉଛି । ସବୁବେଳେ ତ ମାଡ୍ରାସ୍, ବମ୍ବେ, ଦିଲ୍ଲୀ ଯାଉଛି ।"

"ଜାଣିଚ୍ଛ ।"

"କାଲି ରାତିରେ ମୁଁ ଷ୍ଟେସନ୍‌କୁ ଯାଇଥିଲି । ସେ ବାଙ୍ଗାଲୋରରୁ ଫେରିଲା । ମୋର ଦେଖା ହୋଇଥିଲା । କହୁଥିଲା ଯେ ସେଠାରେ ଆଉ ତିନି ଚାରି ଦିନ ରହିବାର ଥିଲା, ହେଲେ ତା' ବସ୍ କୁଆଡ଼େ ତାକୁ ଟେଲିଫୋନ୍ କରି ଡାକିଦେଲା, ଶୀଘ୍ର ଲଣ୍ଡନ ଯିବାକୁ ହେବ ବୋଲି । କେଡ଼େ ଲକ୍‌କି ବେ ମୃଣାଳିନୀଟା ।"

ଆହତ ବନ୍ଧୁଟି କୁନ୍ଥେଇ କୁନ୍ଥେଇ କହିଲା, "ସବୁ ଜାଣିଚ୍ଛ ବେ, ଖାଲି ସେଇ ଫେରିବା କଥା ଠିକକ ଜାଣିପାରିଲିନି ବୋଲି ମୋର ଏ ଦଶା ।"

"ମା···ନେ", ଆଉ ବନ୍ଧୁଟି ଫ୍ଲାଟ୍‌ହୋଇ ଚଳି ପଡ଼ିଲା ।

ଅସଲ ବେଳରେ ଅସଲ କଥା ଠିକକ ନ ଜାଣି ପାରୁଥିବାରୁ କେତେ ନରଦେହୀ ନାରାୟଣମାନେ କେତେ ପ୍ରକାର ହନ୍ତସନ୍ତ ହୁଅନ୍ତି । ଏ ଉଦାହରଣ ଯେତେ ଖୋଜିବେ ସେତେ ମିଳିବ । ଏପରି ସବଳଙ୍କମାନେ ସବୁ କଥା କରୁକରୁ, ହଠାତ୍ ଦେଖାଯିବ, 'ସେଇ ଠିକକ' ଜାଣି ନ ପାରିବାରୁ ସେମାନଙ୍କ ଜୀବନର ସବୁ ପୀୟୂଷ ହଠାତ୍ ବିଷରେ ପରିଣତ ହୋଇଯାଏ ।

ମୋବାଇଲ୍ କୋର୍ଟ ଚାଲିଥାଏ । ଜଣେ ପୋଲିସ ବାବୁ ଭିଜିଲାନ୍‌ସ ରେଡ୍‌ରେ ଧରାପଡ଼ିଗଲେ । ଅସୁବିଧା ହୋଇଥିଲା, 'ସେଇ ଠିକକ' ସେ ଜାଣି ପାରିନଥିଲେ । ମୋବାଇଲ୍ କୋର୍ଟ ମାଜିଷ୍ଟ୍ରେଟ୍‌ଙ୍କ ପାଖରେ 'ପ୍ରଡ୍ୟୁସ୍' ହେବା ପୂର୍ବରୁ ତ ପୋଲିସ ଧରେ । ଏଇ କ୍ଷେତ୍ରରେ ଦେଖାଯାଏ, ଦୂରରୁ ଦୋଷର ବାଟ ଦେଖେଇ ଦେବାକୁ କଞ୍ଚା ମାଲ୍ ଏପାଖ ସେପାଖ ହେବା ଅତ୍ୟନ୍ତ ଆବଶ୍ୟକ ପଡ଼େ । ଚହଲି ରାସ୍ତାରେ ମାଲ୍ ଦେଇ ଚମ୍ପଟ ମାରିବାକୁ ମୁର୍‌ଗାମାନେ ହାଉଯାଉ ହେଉଥା'ନ୍ତି । ପୋଲିସ ବାବୁ ସେଇପରି ଜଣଙ୍କଠାରୁ ମାଲ୍ ନେଇଗଲେ ମୁର୍‌ଗା ଭବ । ହାୟ ! ସେ ଜଣେ ଭିଜିଲାନ୍‌ସ ଇନ୍‌ସ୍‌ପେକ୍ଟର୍ । ସେ ନୂଆ ଆସିଥା'ନ୍ତି ତେଣୁ ତାଙ୍କୁ ସେ ଚିହ୍ନି ପାରିଲେନି । ତାହା ବଡ଼ କଥା ନୁହେଁ । ତାଙ୍କ ପାଖରେ ଯିଏ ଛିଡ଼ା ହୋଇଥା'ନ୍ତି ସେ ଜଣେ ମାଜିଷ୍ଟ୍ରେଟ୍ । ପୋଲିସ ବାବୁଙ୍କର କହିବା କଥା

ହେଲ—ଟିକିଏ ଜାଣିପାରିଲେନି, ଆଗରୁ ଥରେ ତାଙ୍କ କୋର୍ଟରେ ସେ ସାକ୍ଷୀ ଦେଇଥିଲେ । ତାଙ୍କ ଚିନ୍ତାରେ ଆଉ ଟିକିଏ ଭୁଲ୍ ହୋଇଗଲା, ସେ ଜାଣିପାରିଲେନି, ଗୋଟିଏ ଜାଗାରେ ଦୁ'ଜଣ ମାଜିଷ୍ଟ୍ରେଟ୍ ବି ରହିପାରନ୍ତି ।

ଟିକିଏ ଜାଣି ନପାରିବା ବା ଟିକିଏ ଭୁଲ୍ ପାଇଁ ମାରାତ୍ମକ ପରିଣତିରେ ବସ୍ତୁତଃ କ୍ଷେତ୍ରମାନ ହେଲା ରାଜନୀତି ଠାଉଠିଆ ଓ ସାମ୍ବାଦିକତା । ତେବେ ଯଦି ବାଇଗୁନ୍‌ସ ଅଲଗା ପନ୍ଥା ଧରିନେଲା, ବାଇ ମନରେ, ବୁଲୁଥା' କେତେ କାଳ କିଏ ଜାଣେ !

ଅବଶ୍ୟ ପ୍ରଭୁ ଉପରୋକ୍ତ ଲାଇନ୍‌ର ସକ୍‌ସେସ୍‌ଫୁଲ୍ ଲୋକମାନଙ୍କୁ ପାଞ୍ଚ ବାଦ୍ ଆଉ ଗୋଟିଏ ଲେଖା ଇନ୍ଦ୍ରିୟ ଦେଇଛନ୍ତି । ଜ୍ଞାନେନ୍ଦ୍ରିୟ, ଇଂରାଜୀରେ ଯାହାକୁ କୁହାଯାଏ—'ସିକସ୍‌ଥ ସେନ୍‌ସ' । ନିଜ ପରିବେଶ କେଉଁଠି ଖାପ ଖାଇବ ତାହା ପର୍ଯ୍ୟବେକ୍ଷଣ କରିବା ପାଇଁ ସେମାନେ ଅହରହ ନିଜର ଏହି ଇନ୍ଦ୍ରିୟଟିକୁ ବୁଲାଉଥାନ୍ତି ।

ଏମିତି ଇତିହାସରୁ ଅପ-ଇତିହାସକୁ ଯିବାର ପଥ ସଂକ୍ଷିପ୍ତ । ସେହି ପଥ ଆହୁରି ସଂକ୍ଷିପ୍ତ ହୋଇପଡ଼େ, ଯେତେବେଳେ କ୍ଷମତାରେ ଥିବା ମଣିଷଗୁଡ଼ାଙ୍କ ଚିନ୍ତା ଦଉଡ଼େ ଉନ୍ମାଦନା ଆଡ଼କୁ ଏବଂ ସେଇ ବ୍ୟବଧାନ ନିଜର ସତ୍ତା ହଜେଇଦିଏ ବା ଅନ୍ୟାର୍ଥେ ସଂକ୍ଷିପ୍ତତମ ହୋଇପଡ଼େ, ଯେତେବେଳେ ସେହିପରି ଦଳେ ଲୋକ ସଙ୍ଘବଦ୍ଧ ହୋଇ ମିଥ୍ୟାର ପ୍ରଚାରରେ ମାତିଯାଆନ୍ତି । ଏପରି ଅବସ୍ଥା ଉଦ୍‌ଭବ ହେଲେ ସାଧାରଣ ମନ କହେ, 'ସେଇ ଟିକକ ଜାଣିହେଲାନି' ପରି ଭୁଲ୍ ଏପରି ଲୋକଗୁଡ଼ିକ ବାରମ୍ବାର କରନ୍ତେ କି ! ଜଗତଟା କେତେ ଶୁଚିସିକ୍ତ ଶୀତଳ ନ ହୋଇଯା'ନ୍ତାଟି !



# ମାନ ମହତର କଥା

ଖୋଜି ବସିଲେ ମାନର ଅର୍ଥ ଅନେକ—ବୈଷ୍ଣବ ଭାବର ଆସକ୍ତି ଓ ଅଭିମାନଠାରୁ ଆରମ୍ଭ କରି ପଦାର୍ଥର ଗୁଣ ପରିମାଣ ନିର୍ଣ୍ଣୟ ପର୍ଯ୍ୟନ୍ତ ଏହା ପରିବ୍ୟାପ୍ତ । ଅନାବଶ୍ୟକ ଇଲାକାଗୁଡ଼ିକ ବାଦ୍ ଦେଇ ଏହାର ପ୍ରୟୋଗ କେବଳ ସମ୍ମାନ ଅର୍ଥରେ । ମାନ ଓ ମହତ ଭିତରେ କିଛି ପାର୍ଥକ୍ୟ ଅଛି କି ? ଆମର ପରିଚିତ ହେଉଛି, ହଁ । ସୁନାଖଣି ଓ ସୁନା-ମୋହର ପରି । ଖଣି ସହିତ ସୁନା ଦେହେ ମିଶିଥିବାରୁ ସିଏ ଯେତେ କ୍ଲେଦସିକ୍ତ ହୋଇ, ଯେତେ ଘିରି ଘିରି ହୋଇ ସେଇଠି ଦରଣ୍ଡିଲେ ବି ସୁନା ଦେଖିବାକୁ ପାଇବ କି ? ଧୂଳିରୁ ଗୋଟେଇଲା ପରି ସମ୍ମାନ ସଂଗ୍ରହ କରାଯାଏ ମାନ ମହତର ବୁନିଆଦ ଅଛି । ଅସଭ୍ୟ ଅପଚୟ ନ ହେଲେ ମହତ୍ତ୍ୱ କଦାପି ଅସମ୍ମାନିତ ହୋଇପାରେନା । ମାନ ସମ୍ମାନ ? ଯେଉଁ ଧୂଳିରୁ ଆସିଥାଏ ସେଇ ଧୂଳି ଭିତରେ ଫୁସ୍‌କନା ଉଭାନ ହୋଇଯିବାକୁ ସମୟ ବେଶି ଲାଗେନା ।

ସଂସ୍କାରର ଝଡ଼ ଓ ସଂସ୍କାର ନାଁରେ ଝଡ଼—ଦୁଇଟି ଭିନ୍ନ ଭିନ୍ନ କଥା । ମାନ ଉଭୟ କ୍ଷେତ୍ରରେ ଗୋଟିଏ କଥା ନିଚୋଳ ଭାବେ ଦେଖାଯାଏ—ଦ୍ୱନ୍ଦ୍ୱବାଦ । ଏବେ ଯେଉଁ ଝଡ଼ ଉଠିଥିଲା ଏବଂ ଯାହା ସଂପୂର୍ଣ୍ଣ ଭାବେ ଅପସରି ଯାଇନାହିଁ, ତାହା ଉପରୋକ୍ତ ଦୁଇଟିରୁ କେଉଁ ପର୍ଯ୍ୟାୟଭୁକ୍ତ, କେବଳ ଅନୁଶୀଳନ କରିବା ଛଡ଼ା ଲେଖକର ଅଧିକା ତାକତ ନାହିଁ ।

ସରକାର ବାହାଦୁର କହିଲେ, ବ୍ୟକ୍ତି ଓ ସମାଜ ଭିତରେ ଚଳଣିର ଏକପ୍ରକାର ସୁଶୃଙ୍ଖଳ ସମନ୍ୱୟ ରହିବା ନିହାତି ଆବଶ୍ୟକ । ଯଦି ସରକାର ହୋଇ ଏଇ ସାଧାରଣ କଥାଟିର ହେପାଜତ ନ ନିଅନ୍ତି ତା'ହେଲେ ସେ କାର୍ଯ୍ୟ କରିବ କିଏ । ତେଣୁ ଆସିଲା ମାନହାନି ବିଲ୍ । ପ୍ରଚଳିତ ଫୌଜଦାରି ଦଫାର ସେଇ କ୍ଷେତ୍ରକୁ କମ୍ବଳ ବୋଲି ଭାବି

ତାହାକୁ ସଂପୂର୍ଣ୍ଣ ରୂପେ ନବୀକ କରି ସେଇ ସ୍ଥାନରେ ଗୋଟିଏ କାର୍ପେଟ ପକାଇ ଦିଆଗଲା । ବ୍ୟକ୍ତି-ସମ୍ମାନ ରକ୍ଷା କରିବାକୁ ସରକାର ଯେ ଉଦାସୀନ ଏ କଥା ଆଉ ତ କହିବା ଉଚିତ ହୋଇନଥାନ୍ତା ? ମାତ୍ର ତାହା ହେଲାନ । ଥୋଡ଼ାଏ ଆପଲ୍‌ର ଚକଚକିଆ ରଙ୍ଗକୁ ନଦ୍ଧା ନ ଦେଇ ଅଣ୍ଡାଳିଲେ ତା' ଭିତରେ ପୋକ କୋଉଠି ଅଛି ।

କଥା ବର୍ତ୍ତମାନ ଯେଉଁଠି 'ରେଷ୍ଟ' କରିଛି ସେଥି ସରହଦକୁ ନିରୀକ୍ଷଣ କଲେ କିଏ ବିଜେତା, କିଏ ପରାଜିତ ବା ଯୁଦ୍ଧକ୍ଷେତ୍ରରେ 'ସିଜ୍-ଫାୟାର'ର ଶାନ୍ତ ଅଥବା କେଉଁ ଯୋଦ୍ଧୃବର୍ଗ କପରି ଲଢ଼ିଥିଲେ କିଛି ହେଲେ ବାରିହେଉ ନାହିଁ । ଗୋଟିଏ କଥା ଅଲବତ୍ ଜଣାପଡ଼ୁଛି ଯେ ଉଭୟ ପକ୍ଷ ସ୍ଥିତାବସ୍ଥା ଓ ଆଗତାବସ୍ଥା ପାଇଁ ବାଫି ତରକିଛନ୍ତି !

ଆଗରୁ ଆଲୋଚନା କରିଛୁ ଓ ଆଉଥରେ ବି କହୁଛୁ—ମହତ ପରି ଚିଜରେ ହାତ ମାରିବାକୁ କାହାରି ତାକତ ନାହିଁ—ଯେତେ କାଢ଼ୁଆ ସରକାର ହେଉନା କାହିଁ ! ଉଦାହରଣ ପାଇଁ ମାଁଟିଏ ମନକୁ ପଇଁଛି । ନେଲ୍‌ସନ୍ ମଣ୍ଡେଲା, ମହତର ଅଧିକାରୀ । ଥୋକେ କ'ଣ କରୁଛନ୍ତି ନା, ଆଳକୁଚ ମାଳକୁଚ ପୂଜାଏ ଖଣ୍ଡେ ଆୟୋଜିତ ସମ୍ମାନ ଯୋଗାଡ଼ କରି, ତାକୁ 'ମହତ' ବୋଲି ମନେ ମନେ ବିଗୁରି, ଦୁଇଟି ଭିତରେ ଏମିତି ଖେଚେଡ଼ି କରି ଦେଉଛନ୍ତି ଯେ ଆମେ ସାଧାରଣ ଲୋକ ବାଟବଣା ହେଲା ପରି ଯିଏ ଜାଗାରେ ତାକୁ, ତା' ଜାଗାରେ ଯିଏକୁ ଧରି ପକାଉଛୁ । ଆମରି ଏ ଅବ୍ୟବସ୍ଥିତ ମତଗତି କଥା ଜାଣି ଚତୁରମାନେ ତାଙ୍କ ନିଜ ନିଜ ପଶା ଖେଳରେ କଚେ-ପୋ-ବାର୍ ଚଳେଇଛନ୍ତି ।

ସମ୍ମାନର ସଙ୍କଟ କଥା କିଏ ଚିନ୍ତା କରନ୍ତି ? କେତେ ଗମ୍ଭୀର ଭାବରେ ଚିନ୍ତା କରନ୍ତି ?

ସମ୍ମାନ ସମ୍ପର୍କରେ ଲୋକଙ୍କର କି କିମ୍ଭୂତକିମାକାର ଧାରଣା, ଗୋଟିଏ ଶ୍ରେଷ୍ଠ ଉଦାହରଣ ପାଠକମାନଙ୍କ ଜାଣିବା ପାଇଁ ଉପସ୍ଥାପିତ କରୁଛି । ଅଜ୍ଞାତ ବସ୍ତି ଅଞ୍ଚଳର ନିଜ ଘରେ ଶୋଇଥିବା ଗୋଟିଏ ଲୋକକୁ ରାତି ଅଧରେ ପୋଲିସ ଉଠାଇନିଏ । ବେଆଇନ ଭାବେ ଗୃହବନ୍ଦୀ ଥାନାରେ ଅଟକାଇ ରଖି ତାକୁ ବହୁତ ବାଡ଼ିଆବାଡ଼ି କରନ୍ତି । ସେ

ଲୋକ ତ କ୍ରିମିନାଲ୍ ମୋଟେ ନୁହେଁ, ତାହେଲେ ଅପରାଧ ତା'ର କ'ଣ ? ସେ ବାଳ ଦାଢ଼ି ରଖିଥିବାରୁ ବାବାଜି ପରି ଦେଖାଗଲା, ତେଣୁ ପୋଲିସର ସନ୍ଦେହ ହେଲା । ବାଳ ଦାଢ଼ି କାଟି ତାକୁ ନଣ୍ଡା କରିଦେଲେ । ତା ସ୍ତ୍ରୀ, ପିଲାକୁଆଙ୍କ ପ୍ରତି ଅସଭ୍ୟ ବ୍ୟବହାର କରି, ତାକୁ ମାରିଲ କାହିଁକି ? ଇନ୍‌ସପେକ୍ଟର ମହୋଦୟଙ୍କର କୈଫିୟତ ହେଲା—ଆମ ସମ୍ମାନରେ ଲାଗିବନି ? ସେ ପଚାରିଲା କ'ଣ ନା, ମୋତେ କାହିଁକି ଗିରଫ କଲ ! ଏତେ ହିମ୍ମତ !

ଏଇ କଥା ଯେତେବେଳେ ରାଜନୀତିର ଜାଲରେ ପଡ଼ିଗଲା ସେତେବେଳେ ସେଇ ଇନ୍‌ସପେକ୍ଟର; ଦୁଇ ଦିନ ତଳେ ମାଡ଼ ଖାଇଥିବା, ମାନ୍ୟବର ନାଗରିକଙ୍କ ଝୁମ୍ପୁଡ଼ିକୁ ଯାଇ ଘରର ଖଟ ଉପରେ ବସି ହାତ ଧରି କ୍ଷମା ମାଗିନେଲେ । ପରିହାସରେ ଜଣେ କହିଲା, "ଗୋଡ଼ ଆଡ଼କୁ ହାତ ବଢ଼େଇ ନାହାନ୍ତି ତ ?" ମାଡ଼ ଖାଇଥିବା ଲୋକଟି ଉତ୍ତର ଦେଲା, "ସେ ହାତ ବଢ଼ୋଉ ବଢ଼ୋଉ ମୁଁ ତାଙ୍କ ହାତକୁ ଧରିପକାଇ କାନ୍ଦିଲି ।"

ମୋର ସିଧା ପ୍ରଶ୍ନ : ଯେଉଁ ଅହଂକାରକୁ ଆଶ୍ରୟ କରି ଇନ୍‌ସପେକ୍ଟର ମହୋଦୟ ସମ୍ମାନର କଥା କହିଥିଲେ, ତାଙ୍କ ସମ୍ମାନବୋଧର ଜ୍ଞାନ କେତେ ?

ବାସ୍, ଏଣିକି ମୂଳକଥାକୁ ଆସିଯିବା । ସମ୍ମାନ-ସଙ୍କଟର ଶିକାର ହୁଅନ୍ତି କେଉଁମାନେ ? ଅଜାଣି ହେଉ ପଛେ, ସମ୍ମାନ ମାମଲାରେ ଯେଉଁମାନେ ଅପେକ୍ଷାକୃତ ସୁରକ୍ଷିତ ସେହିମାନେ ସଙ୍କଟ ଅବସ୍ଥାକୁ ଆଙ୍କେଇ କରି ଉପସ୍ଥିତ ହେବା ସ୍ୱାଭାବିକ । ନିର୍ବାଚିତ ରାଜନୀତିବାଲାଙ୍କର ପ୍ରିଭିଲେଜ୍-କବଚ ଓ ଖୁରି ଖାଉଥିବାମାନଙ୍କର ଅନ୍ୟ ବ୍ୟବସ୍ଥାମାନ ଅଛି । ଯାହା ପାଖରେ ବେଶ୍ ମାଲ୍ ଅଛି ସେ କିଛି ନ ହେଲେ କୋର୍ଟ ଜରିଆରେ ନିଜ ସମ୍ମାନକୁ ସୁରକ୍ଷିତ ବା ଭରଣା କରିପାରିବ । ଶିକ୍ଷକ, କର୍ମଚାରୀ, ଶ୍ରମିକଙ୍କ ଭିତରୁ ଅଉଲ ନମ୍ବରମାନେ ଟ୍ରେଡ୍ ୟୁନିଅନ ଜରିଆରେ ନିଜ ନିଜର ମାନ ରକ୍ଷା କରିପାରିବେ । ଖବରକାଗଜବାଲାଙ୍କ କଥା ଛାଡ଼ନ୍ତୁ; ତାଙ୍କ ମାନ୍‌ରେ ହାତ ମାରିବାର ତାକତ କାହାର ?

ଧର୍ମଧ୍ୱଜାଧାରୀମାନଙ୍କ ପାଇଁ ତ ବଳଆରଭୂଜମାନେ ସ୍ୱଦେହେ ଅବତୀର୍ଣ୍ଣ ହୋଇପଡ଼ନ୍ତ ।

ବୋଧହୁଏ ଯେଉଁମାନଙ୍କର ମାନ ନାହିଁ ସେମାନେ ହେଲେ ଅପାଙ୍‌କ୍ତେୟ ଗୋଚରର ଘାସ—ଆମେ ଆପଣଙ୍କ ପର ଅଗଣନ ଗୁଡ଼ାଏ ଯେଉଁମାନେ ଉପର କୌଣସି ପର୍ଯ୍ୟାୟର ନୁହଁନ୍ତ । ସଂସ୍କାରର ଝଡ଼ ଓ ସଂସ୍କାର ନାଁରେ ଝଡ଼ କଥା ମନେପକାଇ ଦେଉଛୁ । ସମସ୍ତେ ବହେ ଲେଖା ଚନ୍ତାକରନ୍ତୁ ନା !



# ଆଁ ବଳଦ...

ପୂର୍ବରୁ ଜଣେ ଲେଖକ ବନ୍ଧୁ ଗୋଟିଏ କୌତୁକଆ ବ୍ୟଙ୍ଗ ଉଦାହରଣ ପ୍ରୟୋଗ କରିଥିଲେ । ତାହା ମୋଟାମୋଟି ଭାବେ ଏଇଆ ଥିଲା : କଳା ତ ତା' ବାଟେ ବାଟେ ନେସ୍‌ନାଲ ହାଇୱେରେ ଯାଉଥିଲା, ମାତ୍ର ରେ ବାଇମନ, ତାକୁ ସୁସୁର ମାରି କଆଁ ଡାକିଲୁ ? ଡାକିଲୁ ତ ଡାକିଲୁ, ତହିଁରେ ନିଜ ଦେହର ସ୍କେଚ୍ ମ୍ୟାପ୍ ବି ତାକୁ ଦେଖେଇ-ଦେଲୁ । ଆମ ପ୍ରସ୍ତାବନାର ବିଷୟବସ୍ତୁ ପାଇଁ ଏଥିରେ ଆଉ ପଦେ ଯୋଡ଼ିବା । କଥାହେଲା, ଏତାଦୃଶ 'ଡାକିବା' କାର୍ଯ୍ୟଟି ସହଜ ସୂକ୍ଷ୍ମରେ କରି ନ ଯାଇ ତମାମ୍ ରାସ୍ତା ଟ୍ରାଫିକ୍ ପୋଲିସ ମୁତୟନ କରି କଳାକୁ ନନ୍‌ଷ୍ଟପ୍ ପ୍ରକାରେ ଅଣାଗଲା । ମିଶେଇ ପଢ଼ନ୍ତୁ, ପରିଣତି ଯାହା ହେଲା ତାହାହିଁ ଆମର ଗପ ।

ସୁଖର କଥା ବା ଦୁଃଖର କଥା ପରି ପ୍ରଚଳିତ ମନ୍ତବ୍ୟକୁ ଆଙ୍ଗିକଭାବେ ନଯୋଡ଼ି ସିରଫ୍ ଘଟଣାଟିଏ ବୋଲି କହୁଛୁ । ଓଡ଼ିଶାରେ ବୃହସ୍ପତି ଓ ଧନ୍ୱନ୍ତରିଙ୍କ ମଡର୍ଣ୍ଣ ଏଡ଼ିସନ୍‌ମାନେ ଯେଉଁ ଯେଉଁ ଧର୍ମଘଟ ପ୍ରତ୍ୟାହାର କରି ନେଇଛନ୍ତି । ରାଜଧାନୀର ପର୍କିଳ ଗଡ଼ ଭିତରୁ ସାରା ପୃଥିବୀରେ ବି ଜଣେ ମହାନ୍ ଧାର୍ମିକ ରୂପେ ମହାତ୍ମାଗାନ୍ଧୀଙ୍କ ସମ୍ମାନକୁ କେହି ଟଳେଇ ପାରିବେ ନାହିଁ । ମାତ୍ର ସେ ଗୋଟିଏ ଭବିତବ୍ୟ—ପାପ ପାଇଁ ଅଲବତ୍ ଦାୟୀ ହେବେ । ଧର୍ମଘଟ ପରି ତାଙ୍କର ଅମୋଘ ଔଷଧ ସମାଜର ଟୁଣ୍ଡୁଳା ଦାୟିତ୍ୱହୀନ ବଇଦମାନଙ୍କ କୋଥଳିକୁ ଗଳିଯିବ, ଏକଥା ସେ ଅନୁମାନ କରିପାରିଲେନି କାହିଁକି ? ଇଂରେଜମାନଙ୍କଠାରୁ ଶିଖିଥିବା ଆଣ୍ଟିଡୋଟ୍ ଫର୍ମୁଲା ଯଦି ତାଙ୍କୁ ଜଣାଥିଲା ତେବେ ତାହାକୁ ସଠିକ୍ ମୁକାମ୍‌ରେ ସେ ନ ପହଞ୍ଚାଇଥିଲେ କଆଁ ?

ୟୁ.ଜି.ସି. ତା'ର ବେତନ ହାର ଘୋଷଣା କରିଥିବା ସମ୍ବାଦର କାଲି ଆହୁରି ଶୁଖିନାହିଁ ଆମ ସରକାର ହୁଲୁହୁଲୁ ହୋଇ ୟୁ.ଜି.ସି. ନାଁ ନେଇ ଆଉ ଗୋଟିଏ ବେତନ ହାର ଘୋଷଣା କରିଦେଲେ । ଏଇଠି

ଗୋଟିଏ ସ୍ୱାଭାବିକ ପ୍ରଶ୍ନ ଉଦ୍‌ଭବ ହୁଏ, ଆମ ସରକାରଙ୍କ ଦାନ୍ତାଚଣର ବାନା କ'ଣ ଏତେ ଲମ୍ବା ହେଲା ଯେ ତାହା ପେଟେଗ୍ର ଫଟାଇ ପଦାରେ ଆସି ଫରଫର ହୋଇ ହଲିଲା ? ପରିଣତି ଏଇଆ ହେଲା ଯେ ଯେଉଁ ସରକାରୀ କଲେଜ ଶିକ୍ଷକମାନେ ଆଇଦରୁ ଏ ଯାବତ୍ ଆନ୍ଦୋଳନ କ'ଣ ଜାଣି ନଥିଲେ ସରକାର ବାହାଦୁରଙ୍କ ଅପାର କୃପାରୁ ସେମାନଙ୍କୁ ଆଣି ରାଜରାସ୍ତାରେ ଛିଡ଼ା କରାଇଦିଆଗଲା । ସେମାନେ ଭାଣ୍ଡୁଆ ହେଲେ କି ନା ସେକଥା ସୁଦୀର୍ଘ କାଳ ହିଁ କହିବ ।

କଥା ଏତିକିରେ ସରିଲାନି । ଆନ୍ଦୋଳନକାରୀ ଶିକ୍ଷକମାନଙ୍କ ଅସହାୟ ଅବସ୍ଥା ନଦେଖିବା ଲୋକ ବୁଝିପାରିବେ ନାହିଁ । ଗଙ୍ଗା ଯାଇ ଫଳ ପାଇ ସାରିବାପରେ ମାନରକ୍ଷି କେମିତି ଫେରିବେ, ସେତିକି ରାସ୍ତା ବି ପାଉ ନଥା'ନ୍ତି । ଶିକ୍ଷା ବିଭାଗ ସେତିକିବେଳେ ବିରୁଦ୍ଧ ବସାରେ କାଠି ଖେଞ୍ଚିଲାପରି କାମଟିଏ କରିଦେଲେ । କହିଲେ କ'ଣ ନା, ଆମେ ଯଦି ତୁମକୁ ଦେବୁ, ଆଉ କିଏ କାଲେ ମାଗିବେ !

ଏପରି ମନ୍ତବ୍ୟର ଅର୍ଥ ଅତି ସ୍ପଷ୍ଟ ହୋଇପଡ଼ିଲା । ସ୍ୱାସ୍ଥ୍ୟ ବିଭାଗର ବୁଢ଼ା ବାଡ଼ିଭାଙ୍ଗି ଛେଳି ମେଣ୍ଢାଗୁଡ଼ିକ ତଆଁ ମାରିବାକୁ ଲାଗିଲେ । ଗୋଟିଏ କଥା ମନେପକାଇ ଦେଉଛୁ । ରାଜ୍ୟର ସମସ୍ତ ସ୍ୱାସ୍ଥ୍ୟ-ସେବା ମେଡ଼ିକାଲ କଲେଜ ନୁହେଁ ଅଥବା ମେଡ଼ିକାଲ କଲେଜଗୁଡ଼ିକର ସବୁ ଡାକ୍ତର ଶିକ୍ଷକ ନୁହଁନ୍ତି । ସ୍ୱାସ୍ଥ୍ୟସେବାରେ ଅବହେଳା ହେତୁ ପ୍ରତିଦିନ ଏତେ ଏତେ ଲୋକ ମରୁଛନ୍ତି ବୋଲି ଯେଉଁ ସରକାର ପ୍ରଚାର କରୁଥିଲେ, ଜନମତକୁ ଆନ୍ଦୋଳନକାରୀ ଡାକ୍ତରମାନଙ୍କ ବିରୁଦ୍ଧରେ ପ୍ରବଳରୁ ପ୍ରବଳତର କରାଇବାକୁ ଯେଉଁ ସରକାର ଚେଷ୍ଟା କରୁଥିଲେ, ଧର୍ମଘଟ ପ୍ରତ୍ୟାହାର ପରେ ସେଇ ସରକାର ସବୁ ମୃତ୍ୟୁକୁ 'ସ୍ୱାଭାବିକ' ବୋଲି ବର୍ଣ୍ଣନା କରିଦେଲେ । ଶାସନ ନାଁରେ ସୁବିଧାବାଦର କି ଅପୂର୍ବ ମଧୁଚନ୍ଦ୍ରିକା !

ପ୍ରାୟ ସମସ୍ତେ ଦେଖିଥିବେ ଧର୍ମଘଟକାଳରେ ଆନ୍ଦୋଳନକାରୀ ଡାକ୍ତରମାନେ ନିଜ ନିଜ କ୍ଲିନିକ୍‌ରେ ଓଭରଟାଇମ୍ କରିବାପାଇଁ ବ୍ୟସ୍ତ । ସେମାନେ କୈଫିୟତ ଦେଉଥା'ନ୍ତି—ଖାଇବା ପିଇବାକୁ ଆମକୁ ବେଳ ମିଳୁନି କାରଣ ଧର୍ମଘଟ ଚାଲିଛି କି ନା ! ଅତ୍ୟନ୍ତ ପବିତ୍ର ଆଶା ପୋଷଣ

କରି ମଧ୍ୟ କଳ୍ପନା କରିହେଉନାହିଁ ଯେ ସେମାନେ ଯେତେବେଳେ 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ' ଠାରୁ ଅବୈତନିକ ସେବାକାର୍ଯ୍ୟମାନ କରୁଥିଲେ ।

ଧର୍ମଘଟକାରୀ ଜଣେ ଶିକ୍ଷକ ବନ୍ଧୁ କହିଲେ, "ଆମେ ଏତେ ଧନ କୋଶ କରିବଡ଼ ହେଲୁ, ଆମ କଥାଠାରୁ ଅପେକ୍ଷାକୃତ ଭାବେ ଶୀଘ୍ର ସରକାର ଡାକ୍ତରମାନଙ୍କ କଥା ଶୁଣିଲେ । ଘୋର ଅନ୍ୟାୟ ।" ବନ୍ଧୁଙ୍କ ଆହତ ପ୍ରାଣର ବେଦନା ବୁଝିହେଉଛି । ମୁଁ ତାଙ୍କୁ ପ୍ରସ୍ତାବ ଦେଲି : ଡାକ୍ତରମାନେ ଯେମିତି 'ନନ୍‌ପ୍ରାକ୍‌ଟିସିଂ ଆଲାଉନ୍‌ସ' ପାଉଛନ୍ତି ଆପଣମାନେ ସେପରି 'ନନ୍‌ଟିଉସନ ଆଲାଉନ୍‌ସ' ପାଇଁ ଦାବି କଲେ ନାହିଁ କିଆଁ ? ଉକ୍ତିପାଇ ଡାକ୍ତରମାନେ ଯେପରି ଘରେ ରୋଗୀ ଚିକିତ୍ସା 'କରୁନାହାନ୍ତି' ଆପଣମାନେ ସେମିତି ଟିଉସନ୍ କରି ନଥା'ନ୍ତେ । ୟୁ. ଜି. ସି. ଆଦି ମାତ୍ରଗତ ପ୍ରଶ୍ନଯୋଗୁ ସରକାର ଟିକେ ଓଲମ୍‌ବଲମ୍ ହୋଇଗଲେ, ହୁଏତ ଏଇ ଦାବିକୁ ମାନିବା ତାଙ୍କ ପକ୍ଷେ ସହଜ ହୋଇଥାନ୍ତା ।

ଆସନ୍ତା ବୈଠକରେ ବନ୍ଧୁ ଆମର ଏହି ପ୍ରସ୍ତାବ ଆଗତ କରିବେ ବୋଲି ଭାବିଛନ୍ତି ।

ମାଣ୍ଡିଆ ଜାଉକୁ ଝୁଦ ପିତା/ ଭାବୁଣୀ ହୋଇଛୁ ଜଗତଜିତା/ ହଲେଇ ହଉଚ କାନମଲକର୍ତ୍ତି /ଦେଖେଇ ହେଉଛି ବାହା ଚିତା । ଜୟ, ଆମ ସରକାରଙ୍କର ଜୟ ହେଉ । ଅକସ୍ମାତ୍ ସଦ୍‌ବୁଦ୍ଧି ଯୋଗୁ ଯଦି ଶିକ୍ଷକମାନଙ୍କ ନିମନ୍ତେ ସରକାର 'ନନ୍‌ଟିଉସନ୍ ଆଲାଉନ୍‌ସ' କଥା ବିଚାର କରନ୍ତି ତାହେଲେ ଆଉ ଗୋଟିଏ ଆପତ୍ତି ବିଚାର କରିବାକୁ ଆମର ଅନୁରୋଧ ରହିଲା ! ତାହାହେଲା, ସମସ୍ତ ସରକାରୀ କର୍ମଚାରୀଙ୍କୁ 'ନନ୍‌ବ୍ରାଇବ୍ ଆଲାଉନ୍‌ସ' ଦିଆଯାଉ ଯଦ୍ଦ୍ୱାରା 'ଘ୍ୟାରଣ୍ଟି' 'ଯୁନଫର୍ମିଟି' କରୁନାହାନ୍ତି ଅଭିଯୋଗରେ ସରକାରଙ୍କୁ କେହି ଟିପ ବି ଦେଖେଇପାରିବ ନାହିଁ । ଗଣତନ୍ତ୍ର ଆଉ କାହାକୁ କହନ୍ତି କି ?

## ବ. ଦ୍ର. : "'ଆ' ବଳଦ..." ସମ୍ପର୍କରେ ଲେଖକଙ୍କ ସ୍ପଷ୍ଟୀକରଣ

ମହାଶୟ,

'ସମ୍ବାଦ' ୧୪-୧୦-୮୮, 'କଥା କଂଶର' ସ୍ତମ୍ଭରେ 'ଆ ବଳଦ...' ପ୍ରକାଶିତ ହେବାଠାରୁ ଆଜ ପର୍ଯ୍ୟନ୍ତ ଅନେକ ସହୃଦୟ ପାଠକଙ୍କଠାରୁ ସେହି ଲେଖାର ବିଭିନ୍ନ ଦିଗ ସମ୍ପର୍କରେ ପ୍ରତିକ୍ରିୟା ପ୍ରକାଶ ପାଉଥିବା ପତ୍ରମାନ ପାଉଛି । ବ୍ୟକ୍ତିଗତ ପାଠକଙ୍କ ସ୍ୱକୀୟ ମତାମତକୁ ସମ୍ମାନ ଦେଖାଇବା ସଙ୍ଗେ ସଙ୍ଗେ କେତେକ ସ୍ଥଳରେ ତାହା ଲେଖକ ପାଇଁ ନିନ୍ଦାସୂଚକ ହେଲେ ମଧ୍ୟ ତାହାକୁ ଅସ୍ୱାଭାବିକ ନ ଭାବି ଗ୍ରହଣ କରିନେଉଛି ।

ସେହି ଲେଖାରେ ବ୍ୟବହାର ହୋଇଥିବା ଗୋଟିଏ ଢଗ : ମାଣ୍ଡିଆ ଜାଉକୁ ଖୁଦ ପିତା / ବନ୍ଦୀ ହୋଇଛି ଜଗତଜିତା / ହଲେଇ ହଉଚି କାନମଲକଡ଼ି / ଦେଖେଇ ହେଉଛି ବାହା ଶିତା— ବୁଝିହେଉନାହିଁ ବା ଅପ୍ରାସଙ୍ଗିକ ବୋଲି କେତେକ ପାଠକ ଲେଖିଛନ୍ତି । ସେଇଠି ପ୍ରାଞ୍ଜଳ ଭାବେ ଢଗଟିକୁ ବୁଝାଇବା ପାଇଁ ଯେତିକ ସ୍ଥାନ ଆବଶ୍ୟକ ହୋଇଥାନ୍ତା, ତାହା ସମ୍ପାଦକ ମୋତେ ଦେଇନଥାନ୍ତେ । ଯାହାହେଉ ଏହି ଗାଉଁଲି ଢଗଟିର ଅର୍ଥ ନିମ୍ନ ପ୍ରକାର ବୋଲି ବୋଲି ଆମେ ଜାଣୁ ।

ଆଗକାଳେ ଜମିଦାର ଏବଂ ସାମନ୍ତମାନେ 'ପୋଇଲି' ରଖୁଥିଲେ । ଯେହେତୁ ପୋଇଲି, ସାଆନ୍ତାଣୀଙ୍କଠାରୁ ତା'ର ଷ୍ଟାଟସ୍ କମ୍ ହେବା କଥା । ମାତ୍ର, ଅନେକ କ୍ଷେତ୍ରରେ ପୋଇଲି ଖାମିନ୍ଦର ଦୁର୍ବଳ ରୋମାଞ୍ଚକତାକୁ କୁତୁକୁତୁ କରୁଥିବା ଯୋଗୁ ସେ ଯେଉଁ ମାନସିକ ସଙ୍ଘାତରେ ଜୀବନ କାଟୁଥିଲା ସେଥିରେ ସେ ଆଦୌ ସାଆନ୍ତାଣୀ ହେବାର ସମ୍ଭାବନା ନଥିଲା ବା ଠିକ୍ ଠିକ୍ ସେବିକା ବି ହୋଇପାରୁ ନଥିଲା । ପରିବାରରେ ବନ୍ଦିନୀ ହୋଇ ସେମାନେ ରହୁଥିଲେ । ଉପରୋକ୍ତ କାରଣ ଯୋଗୁ ତହିଁରେ ମଧ୍ୟ ପାରଦର୍ଶିତା ଦେଖେଇବାକୁ ସେମାନଙ୍କ ମନ ବଳୁନଥିଲା । କାନମଲକଡ଼ି ହଲେଇ ହେବା ଓ ବାହାଶିତା ଦେଖେଇ ହେବା ଇତ୍ୟାଦିକୁ make up of complex କୁହାଯାଇପାରେ ।

ଲେଖାର ଯେଉଁ ସ୍ଥାନରେ ଏ ଢଗଟି ପ୍ରୟୋଗ କରାଯାଇଛି ସେ ସମ୍ପର୍କରେ ଆଉ ଆଲୋଚନା କରିବା ସୁନ୍ଦର ହେବ ନାହିଁ ।



# ବିଲେଇ, ଆଖିବୁଜା ଓ ଦୁଧପିଆ

ମା'ଦୁଧ ଅନ୍ୟଠାରୁ କାହିଁକି ଉତ୍କୃଷ୍ଟ ବୋଲି ପ୍ରଶ୍ନ ପୁଚ୍ଛା କରନ୍ତେ କୁଆଡ଼େ କିଣ୍ଡରଗାର୍ଟନ୍ ଶ୍ରେଣୀର ପିଲାଟିଏ ଉତ୍ତର ଦେଇଥିଲା—ଏଥିପାଇଁ ଗୁଆଲକୁ ଅପେକ୍ଷା କରିବାକୁ ପଡ଼େନାହିଁ; ଚୁଲିରେ ବସିଥିବା ବେଳେ ଅବହେଳା ଯୋଗୁଁ ଏହା ଉତୁରି ପଡ଼େନାହିଁ; ଛିଣ୍ଡି ଯାଏନା ଏବଂ ସର୍ବୋପରି କିସି କାଳେ ତାକୁ ବିଲେଇ ଖାଇପାରେନା । ଏ ଗପ ସମସ୍ତେ ଜାଣିଥିବେ ।

ଅନେକ କଥା ସହ ବିଲେଇର ନାଁଟି ଏଠି ଆସିଛି । ବିଲେଇ ଗୋଟିଏ ଚତୁର ପ୍ରାଣୀ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ପ୍ରଶ୍ନ ହେଉଛି—ବିଲେଇମାନେ ସତରେ ଆଖିବୁଜି ଦୁଧ ପିଅନ୍ତି କି ? ଯଦି ହଁ, କାହିଁକି ? ଏ ଲେଖକ ପରୀକ୍ଷା କରିବାପାଇଁ ଅନେକ ଥର ଘରର ବିଲେଇମାନଙ୍କ ଆତଯାତ ପଥରେ ଦୁଧ ଥୋଇ ବାଧା ରଖେ କିନ୍ତୁ କେହିହେଲେ ଥରକ ପାଇଁ ହାଣ୍ଡିରେ ମୁହଁ ମାରନାହାନ୍ତି । ମାତ୍ର ଯଦି ବିଧିବଦ୍ଧ ହିସାବ ରଖାଯାଇ ପାରଥା'ନ୍ତା ତା'ହେଲେ ପ୍ରମାଣିତ ସୂଚନା ମିଳଥା'ନ୍ତା ଯେ ଆମ ଘରେ (ବା ଯେ କୌଣସି ଘରେ) ଯେତିକି ଦୁଧ ଉତୁରେ ଓ ଛିଣ୍ଡେ ତା'ଠାରୁ ବହୁ ବେଶି ବିଲେଇମାନେ ପିଇଯାଆନ୍ତି ।

ମୂଳକଥାକୁ ଫେରିଆସିବା । ସେମାନେ 'ଆଖିବୁଜି' ଦୁଧ ପିଅନ୍ତି କି ନା ଏହି ସମ୍ପର୍କରେ କୌଣସି ପ୍ରମାଣିତ ସିଦ୍ଧାନ୍ତ ଅନ୍ତତଃ ଲେଖକ ପାଖରେ ନାହିଁ । କେବଳ ପ୍ରଚଳିତ ବିଶ୍ୱାସ ଉପରେ ନିର୍ଭର-କରି ତର୍ଜମା କରିବା—କାହିଁକି ?

ଚକ୍ଷୁ ଏକ ଇନ୍ଦ୍ରିୟ, ତେଣୁ ଜ୍ଞାନ ପାଇଁ ଏହା ନିଶ୍ଚୟ ଗୋଟିଏ ବାଟବସ୍ତା । ଜ୍ଞାନକୁ କୁହେଳିକାମୟ କରାଇ ନିଜକୁ ନିଜେ ଭଣ୍ଡିବାପାଇଁ ମଣିଷମାନେ ଯେତେବେଳେ ଅହରହ ସଚେତନ ଉଦ୍ୟମ କରୁଥିବା କଥା ଆମେ ଦେଖୁଛୁ, ବିଲେଇ ଯଦି ବି ଆଖିବୁଜି ଦେଉଥାଏ, ତାକୁ ପିଆଣିଆ

ବୋଲି ଆକ୍ଷେପ କରାଯାଇପାରେ, ମାତ୍ର ଆମଠାରୁ ବେଶି ନୁହେଁ । ତେଣୁ ପ୍ରାଣୀ ଜଗତରେ, ଏଇ ମାମଲାରେ, ବିଲେଇ ଆମର ଗୋଟିଏ କ୍ୟାରେକ୍ଟର୍-ଫ୍ରେଣ୍ଡ୍ !

ଯେତେବେଳେ ବିଲେଇମାନେ ଦେଖନ୍ତି ଯେ ସେମାନେ ଯାହା ଖାଇବାକୁ ଯାଉଛନ୍ତି ତାହା କନ୍‌ସୋଲିଡେଟେଡ୍ ଫଣ୍ଡ୍ ଏବଂ ତାହା କୌଣସି ସଂସଦୀୟ ତର୍କର ଇଲାକା ଛୁଇଁପାରିବ ନାହିଁ, ସେମାନେ ବେହେଲ ପ୍ରାୟ ନିଜ ନିଜର ଚତୁଆର ଗୁଡ଼ିବେ କାହିଁକି ? ତେଣୁ ଟିକିଏ ଆଖି ବୁଜିଦେଲେ କଥା ସରିଲା । ବାରମ୍ବାର ଖାଉଥିବେ ଏବଂ ବାରମ୍ବାର ଖାମିଦ ପାଖରେ ଜାକିଜୁକି ହୋଇ ଯୋଗାରେ ବସୁଥିବେ । ଅନ୍ୟ କ୍ଷେତ୍ରରେ, ଓଲେଇ ବିଲେଇ ବି ଅଛନ୍ତି, ଆପଣ ବାଡ଼ି ଧରି ହାସୁ-ହାସୁ କରୁଥିଲେ ବି ସେମାନେ ନ ମାନି ଯୋମଣି ମାରିଦିଅନ୍ତି ମାତ୍ର ମାତ୍ରାଧିକ ବିଲେଇ, ଆଗରୁ ବର୍ଣ୍ଣନା କରିଥିବା ପରି, ଦେଖିଲା ବେଳେ ସାଧୁ । ସେମାନଙ୍କ ନିକଟରେ ଫଣ୍ଡ୍‌ଟା କେଉଁ ଗ୍ରାଣ୍ଟ୍‌ରୁ ଆସିଛି ତହିଁର ବାଛ ବିଚାର ନଥାଏ ।

ଆମେ ଦେଖୁଛୁ, ସ୍ୱାଧୀନତା ପରେ ଆମ ଦେଶରେ ଦୟାମୟ ଗୋଟିଏ ବ୍ୟବସ୍ଥା—ଯାହା ନାଁ ଗଣତନ୍ତ୍ର—ତାହାର ବାହୁଛାୟା ତଳେ ବହୁ ତରବର ଚେହେରା କୌତୁକିଆ ମାର୍ଜାର (fel:s domesticus)-ମାନଙ୍କ ବଂଶବୃଦ୍ଧିର ମାତ୍ରା ଅତି ସତ୍ୱର ହୋଇଚାଲିଛି । ଜନଗଣନା ପରି କୌଣସି ବିଧିବଦ୍ଧ ବ୍ୟବସ୍ଥା ଜରିଆରେ ଏପରି ବିଲେଇମାନଙ୍କ ସଂଖ୍ୟା ନିରୂପଣ କରି ନ ଯାଇଥିଲେ ସୁଦ୍ଧା ନିମ୍ନଲିଖିତ ତଥ୍ୟମାନ ମୋଟାମୋଟି ଅନୁଶୀଳନ କଲେ, ଆମେ ଯୁକ୍ତି ଛଳରେ ମିଛ କହୁନାହୁଁ ବୋଲି ପାଠକମାନେ ଦୟାକରି ସହମତ ହେବେ । ପ୍ରତିଥର ଗ୍ରସ୍ ନ୍ୟାସ୍‌ନାଲ ପ୍ରଡ଼କ୍ଟ (G.N.P.) ବଢ଼ୁଛି, ଟିକସ ହାର ବଢ଼ୁଛି, ଯୋଜନା ଖର୍ଚ୍ଚ ବଢ଼ୁଛି, ଲୋକସଂଖ୍ୟାର ବୃଦ୍ଧିହାର କମୁଛି ବୋଲି ପ୍ରଚାର ହେଉଛି ଅଥଚ ଦାରିଦ୍ର୍ୟ ସୀମାରେଖା ବୋଲି ଧୋଡ଼ାଡମ୍ବାଚକ ଜନସାଧାରଣଙ୍କ ପାଇଁ ବାରି ହୋଇପାରୁ ନଥିବା ରେଖାଟି କ୍ରମେ କ୍ରମେ ଉପରକୁ ଯାଉଛି ସିନା, ତଳକୁ ତ କେବେ ଖସୁନାହିଁ । ତଥାପି ଯଦି କେହି କହନ୍ତି ଯେ

ଏଥିପାଇଁ ବଟଲଇମାନେ ଦାୟୀ ନୁହନ୍ତି ବା କିଏ ଦାୟୀ ତାହା ନିର୍ଦ୍ଧାରଣ କରିବା ଅନାବଶ୍ୟକ, ତା'ହେଲେ ଆମେ ଭକୁଆ ଦଳ ନାଗରିକ । ଧର୍ମ ଓ ଗଞ୍ଜେଇ ଆଖଡ଼ାର କୃଷ୍ଣ କୀର୍ତ୍ତନ ପରି ଆମୋଦିତ ଅଚିନ୍ତ୍ୟ ମାନସିକତା ସୃଷ୍ଟି କରିବାକୁ 'ଆମ' ଗଣତନ୍ତ୍ର ସମାନଭାବେ ସକ୍ଷମ ବୋଲି ଯଦି ମତ ଦିଆଯାଏ ତା'ହେଲେ ଆମକୁ ହୁଏତ ଦେଶଦ୍ରୋହୀ ବୋଲି ଦଣ୍ଡିତ କରାଯାଇପାରେ, ତେଣୁ ଏ ବିଷୟର ବିଚାରରୁ ଆମେ ନିବୃତ୍ତ ରହିଲୁ ।

ବହୁଦିନ ପୂର୍ବେ ମୋର ଜଣେ ଚୌକସ ବନ୍ଧୁ ଏ ବିଷୟରେ ଗହନ ଆଲୋଚନା କରୁ କରୁ ତାଙ୍କ ମୁଣ୍ଡରେ ଭୂତ ପଶିଲା । ସେ କହିଲେ, ଦେଖିବାକୁ ଗୃହଲକ୍ଷ୍ମୀ କେତେ ବଟଲେଇ କେମିତି ଆଖିବୁଜି ଦୁଧ ପିଉଛନ୍ତି । ବନ୍ଧୁଙ୍କ ପାରଦର୍ଶିତା ଉପରେ ମୋର ପ୍ରଚଣ୍ଡ ବିଶ୍ୱାସ । ସେ ପ୍ରତିଜ୍ଞା କରିଥିଲେ ଯେ ନାଗରିକ ଇଲାକାର ବଟଲେଇଗୁଡ଼ିକ ତାଙ୍କ ହିସାବ ଭିତରକୁ ଆସିବେ ନାହିଁ ମାତ୍ର ଗୋଟିଏ ସରକାରୀ ବଟଲଇ ନିର୍ଣ୍ଣୟ କରି-ପାରିଲେ ସେ ନିଜ ମସ୍ତକରୁ ଗୋଟିଏ କେଶ ଉତ୍ପାଟନ କରିବେ ।

ଏବେ ହଠାତ୍ ଦିନେ ସେ ବନ୍ଧୁଙ୍କ ସାଙ୍ଗରେ ଦେଖାହେଲା । ଚିହ୍ନି ପାରିଲି ନାହିଁ । ଶୁଣିଲି, ସେ ତାଙ୍କ 'ମିସନ୍' ଛାଡ଼ି ଦେଇଛନ୍ତି । ତହିଁର କାରଣ ଯାହା, ମୁଁ ତାଙ୍କୁ ଚିହ୍ନି ନପାରିବାର କାରଣ ମଧ୍ୟ ସେଇଆ । ମୁଣ୍ଡରେ ତାଙ୍କର ଆଉ ଗୋଟିଏ ବି କେଶ ନାହିଁ । ସେ କହିଲେ, ଆଉ ଉପାଡ଼ିବା କାହାକୁ ? ବହୁ ଏରିଆ ଆହୁରି ବାକି ଅଛି ।

ସର୍ବୋପରି ତାଙ୍କ ମତ ଉଦ୍ଧାର କରୁଛି କାରଣ ତାଙ୍କ 'ଗବେଷଣା' ଯୋଗୁଁ, ହୁଅନ୍ତୁ ପଛେ ପରିସ୍ଥ, ସେ ବ୍ୟକ୍ତିରୁ 'ଅଥରିଟି'ରେ ପରିଣତ ହୋଇଯାଇଛନ୍ତି । ସେ କହନ୍ତି—ସବୁ ବଟଲେଇ ଆଖିବୁଜି ଦୁଧ ପିଅନ୍ତି । ମୁଁ ଭାବୁଥିଲି, କେତେ ସମୟ ଏଇ ତଥ୍ୟ ଠିକ୍‌କି ଜାଣିବା ପାଇଁ ଅଯଥାରେ ମୁଁ ବରବାଦ୍ ନକରିଛି ଟି ।



# ତ୍ୟାଗ ଓ ଭୋଗର ମଣିଷ

ଇସପ୍ ଗପରୁ ଗୋଟିଏ : ସକାଳୁ ଛେଳି ଛୁଆଟିଏ ପାହାଡ଼ ଉପରକୁ ଚରିବାକୁ ଯାଇଛି । କଣ୍ଟା ଗୁଳ୍ମ ଖାଉଖାଉ ଗୋଟିଏ ପରେ ଗୋଟିଏ ପଥର ଅତିକ୍ରମ କରି ସେ ତା'ର ଚାଲିଛି ଆଗକୁ । ବହୁ ଦୂରରୁ ସେ ଶୁଣିଲା, "ହେ ବାଳୁତ, ତୁ କେତେ ଶିଖରେ ସେ କଥା ଜାଣିପାରୁଛୁ ? ଗୋଡ଼ ଯଦି ଟିକିଏ ଖସେ ତୋ କଅଁଳ ହାଡ ସବୁ ଚୂନା ହୋଇଯିବରେ । ତଳକୁ ଚାଲି ଆ ।" ଛେଳିଛୁଆ ପଛକୁ ମୁହଁ ବୁଲାଇ ଦେଖିଲା ତଳେ ଛିଡ଼ାହୋଇଛି ଗଧିଆଟିଏ । କପଟ କରୁଣାରେ ତା' ଅନ୍ତରର ଅଶ୍ରୁ ଯେମିତି ନୟନ ବାଟ ଦେଇ ଝରିପଡ଼ୁଛି କି ଆଉ !

ଛେଳିଛୁଆ କହିଲା—ମୁଁ ଏଇଠି ଟିକେ ନିରୋଳାରେ ଚରୁଛି, ଚରୁଥାଏ ।

ଗଧିଆ—ନାଇଁରେ ବାଳୁତ, ତୋ'ର କାଳେ କ'ଣ ହୋଇଯିବ ସେଥିଯୋଗୁ ମୋ ମନରେ ଶଙ୍କା ଉପୁଜୁଛି । ତଳେ ଏ କଅଁଳ ସବୁଜ ଘାସ କାହିଁରେ କେତେ, ଓହ୍ଲାଇ ଆସି ଏଇଠି ଖାଉନୁ ।

ଛେଳିଛୁଆ—ଅଙ୍କଲ୍, ଯାହା ଜଣାପଡ଼ୁଛି, ତୁମର ଆଜି ବୋଧେ ବ୍ରେକ୍‌ଫାଷ୍ଟ ହୋଇନ ନା ! ଚତୁରପଣିଆ ଏଠି ଚଳିବନି, ଆଗକୁ ଚାଲ ।

ଏ ମନ ସିନା ଚତୁର୍ଦ୍ଧା ମୂରତିରେ, ମୂର୍ତ୍ତ ମତ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ବା ସୁଦର୍ଶନ କେହି ନାହାଁନ୍ତିରେ, ସବୁ ପଡିଆରେ । ଏ ଶ୍ରେଷ୍ଠ ଗପଟିର ଅବତାରଣା କାହିଁକି କରାଗଲା ? ହଁ, ଗଧିଆ ଭେକନେଇ ଥୋକେ କହୁଛନ୍ତି—ଖାଲି ତ୍ୟାଗ କର । କାହିଁକି, ତୁମମାନଙ୍କ 'ବ୍ରେକ୍‌ଫାଷ୍ଟ' ପାଇଁ ? ଏଇଠୁ ଆମ ଆଲୋଚନା ଆରମ୍ଭ କରିବା ।

ଜଣେ ଭୋଗୀ ନ ହୋଇ ଯୋଗୀ ହୋଇପାରେ ମାତ୍ର ପ୍ରାପ୍ତି ନଥାଇ ତ୍ୟାଗ ଆସିବ କେଉଁଠୁ ? ପ୍ରଥମଟି ଅନ୍ତମାନସ ସ୍ତର, ଦ୍ୱିତୀୟଟି ନିଷ୍କ୍ରିୟଭାବେ ପାର୍ଥିବ । ଖବରକାଗଜ, ଦୂରଦର୍ଶନ, ଇଣ୍ଟରନାଲ ସର୍କୁଲର, ଏପରିକି କେତେକ କ୍ଷେତ୍ରରେ ଲଟେରୀ (ଅନ୍ୟାର୍ଥେ ଜୁଆଖେଳ) ଜରିଆରେ ଅହରହ ତ୍ୟାଗ ପାଇଁ ଆହ୍ୱାନ କରାଯାଉଛି । ଦେଖାଯାଉଛି, ଯେଉଁ ମଣିଷମାନଙ୍କ ଭୋଗର ଦୁଧହାଣ୍ଡି ଉଚ୍ଛୁଳି ଚୂଲିରେ ପଡିଯାଉଛି ସେଇମାନଙ୍କଠାରୁ ତ୍ୟାଗର ଗୁହାରି ବେଶି ଶୁଣାଯାଏ । ଖ୍ରୀଷ୍ଟପୂର୍ବ ତୃତୀୟ ଓ ଦ୍ୱିତୀୟ ଶତାବ୍ଦୀ ମଧ୍ୟରେ ଗ୍ରୀସ୍, ରୋମ୍ ଦ୍ୱାରା କବଳିତ ହେବା ପୂର୍ବରୁ ଯେଉଁ ଦୁଇଟି ନିୟମ କଥା ଶୁଣାଯାଉଥିଲା ତାହା ଥିଲା Jus civile (ନିଜ ପାଇଁ ଗୋଟେ ନିୟମ) ଓ Jus gentium (ଅନ୍ୟ ସଭିଙ୍କ ପାଇଁ ଆଉ ଗୋଟେ କିସମ୍‌ର ନିୟମ) । ଏଇ କଥା ଆଜି ଯୁଗରେ ମଧ୍ୟ ଭୋଗ ଓ ତ୍ୟାଗ କ୍ଷେତ୍ରରେ ପୂରାପୂରି ଫିଟ୍ ହୋଇଯାଉଛି ।

ଗୋଟିଏ ଉଦାହରଣ ଦେଉଛି । ଏ ଲେଖକ ପରି ହଜାର ହଜାର ଲୋକ ଜ୍ଞାତ ଅଜ୍ଞାତ ମୁମୂର୍ଷୁମାନଙ୍କ ପାଇଁ ରକ୍ତ ଦାନକରନ୍ତି । କେତେକ ସଂସ୍ଥା ଦ୍ୱାରା ଥରେ ରକ୍ତ ଦେଲେ କିଛି ଟଙ୍କା ମିଳିବାର ବ୍ୟବସ୍ଥା ଅଛି । ଅତ୍ୟନ୍ତ ଦୁଃଖରେ ନଥିବା ଯୋଗୁ ହେଉ ବା ସ୍ୱାଭିମାନ ଯୋଗୁ ହେଉ ଅନେକ ସେହି ଅର୍ଥକୁ ରେଡ୍‌କ୍ରସ୍ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଦିଅନ୍ତି । ଅଥଚ ରେଡ୍‌କ୍ରସ୍‌ର କ ମାଉଫୁଲିଆ ଖର୍ଚ୍ଚ, ଏକଥା କେହି ଜାଣନ୍ତି ? ଏ.ସି.-ଟିଏ ନ ହେଲେ ସଭ୍ୟମାନେ ବୈଠକରେ ଯୋଗ ଦେଇ ପାରନ୍ତି ନାହିଁ । ବୈଠକ ଆଦୌ ନ ହେଲେ ଯେ କ ନହାଲ ହୋଇଯାଆନ୍ତା, ଏ କଥା କେହି କାହାରିକୁ ବୁଝାଇବାକୁ ମଧ୍ୟ ଖାତିର କରନ୍ତି ନାହିଁ ।

ଚାଣକ୍ୟ ତାଙ୍କ ଅର୍ଥଶାସ୍ତ୍ରରେ ଚାରୋଟି ରାଜ୍ୟ ଶାସନ ପଦ୍ଧତି ବିଷୟରେ ବର୍ଣ୍ଣନା କରିଛନ୍ତି । ବିଚାର କେନ୍ଦ୍ରିକ—ଯେଉଁ ଶାସନ ମୁନିଋଷିଙ୍କ ପରାମର୍ଶ ଅନୁଯାୟୀ ଚଳେ । ଭୟ କେନ୍ଦ୍ରିକ - ଯେଉଁ ଶାସନ ଦଣ୍ଡଧାରୀ ବା ରାଜାଦେଶରେ ଚଳେ । ଗଠନ କେନ୍ଦ୍ରିକ—ମଲ୍ଲୀଫୁଲିଆ କଥାଟେ, ଅର୍ଥାତ୍ ପ୍ରଜାତନ୍ତ୍ର ବା ଗଣତନ୍ତ୍ର । ଆଉ ଗୋଟିଏ ହେଲା, ବଳ କେନ୍ଦ୍ରିକ—ଅର୍ଥାତ୍, ଉପରୋକ୍ତ କୌଣସି ପଦ୍ଧତି ନଥାଇ ବଳ ଖଟେଇ

ଯିଏ ରାଜ୍ୟକୁ ଅକ୍ତିଆର କରିନେଇ ମନମର୍ଜି ଶାସନ କରିପାରିଲା, ଯାହାର ନାଁ ପ୍ରାୟ ବିଂଶ ଶତାବ୍ଦୀର ଆରମ୍ଭରେ ଡିକ୍‌ଟେଟରସିପ୍‌ ବୋଲି ଦିଆଯାଇଛି । ଏଇ ସ୍ବୈରତାନ୍ତ୍ରିକ ଶାସନରେ ତ୍ୟାଗର ଆହ୍ବାନ ଆପେକ୍ଷିକ ଭାବେ ନିଜର ରୂପ ସଜାଡ଼ିନିଏ ।

ପ୍ରକରଣ ନିର୍ଣ୍ଣୟରେ ନିର୍ଭୁଲ୍‌ ଭାବେ ଆମେ ଦେଖିବାକୁ ପାଇବା ଯେ କ୍ଷମତା ପରିଧିର ବାହାରେ ଥିବା ଲୋକେ ନେତାଙ୍କଠାରୁ ତ୍ୟାଗ ଖୋଜନ୍ତି–ନାହିଁ । କାରଣ କ'ଣ ? ସେ 'ତ୍ୟାଗ'ଗୁଡ଼ିକୁ ନେଇ ସେମାନେ କରିବେ କ'ଣ ବା ସେମାନଙ୍କ ପାଇଁ 'ତ୍ୟାଗ' କିଏ କାହିଁକି କରିବାକୁ ଯିବ !

ଆମମାନଙ୍କୁ ବାରମ୍ବାର ଶୁଣାଇ ଶୁଣାଇ ବିଶ୍ବାସ କରାଇ ଦିଆଯାଇଛି ଯେ ଆମ ପରି ଗଣତନ୍ତ୍ରରେ କୁଆଡ଼େ ସଂଖ୍ୟାଧିକ୍ୟ ଯୋଗୁ ଭୋକିଲା ପେଟମାନଙ୍କର ବହପ ବେଶି । ତେଣୁ ସମ୍ପୂର୍ଣ୍ଣ ବିରୋଧାଭାଷର ମୂର୍ତ୍ତିମନ୍ତ ସ୍ବରୂପ ଆଜି ଆମ ନିକଟରେ ଉଭା ହୋଇଯାଇଛି । ଅଚ୍ୟୁତଙ୍କ ଭାଷାରେ—"ପିମ୍ପୁଡ଼ି ଟାଳନ୍ତେ / ପର୍ବତ ଟଳନ୍ତେ / ହେମଗିରି ଧ୍ରୁବ ଗିଳିଲା ମଶା । ଶୃଗାଳ ଯୁଦ୍ଧରେ / ସିଂହ ହାରିଗଲା / ଗ୍ରାସ ଦେଖି ବାଘ ତେଜିଲା ବସା ।" କି କଥା ହେ, ମହାମାୟାବୀ ପୁରୁଷଗଣ, ଆମେ ତ ଜମାରୁ ବୁଝିପାରୁନୁ ତ୍ୟାଗ କିଏ କରିବ ଓ କାହିଁକି କରିବ ? ଆପଣମାନେ ତ୍ୟାଗ କାହିଁକି ଖୋଜୁଛନ୍ତି । ନିଜ ନିଜ ଭୋଗରୁ ଟିକିଏ ଟିକିଏ ତ୍ୟାଗ କରିଦେଲେ ତ ଜଗତ ଉଦ୍ଧାର ହୋଇଯାଆନ୍ତା ।

ଜୀବନର ସମସ୍ତ ପ୍ରତ୍ୟୟ ସହ କୌଣସି ଆଲମ୍ବିତ ଆତ୍ମମୁଖ୍ୟର ହାଣ୍ଡି ନ ନେଇ ଯେଉଁ ଶେଷ ବ୍ୟକ୍ତି ଭାରତବାସୀଙ୍କଠାରୁ 'ତ୍ୟାଗ' ଗ୍ରହଣ କରିଥିଲେ ସେ ଥିଲେ ମହାତ୍ମାଗାନ୍ଧୀ । ବାକି ଯେତିକି ତାଙ୍କ ପଦାଙ୍କ ଅନୁସରଣ କରୁଛନ୍ତି ବୋଲି ଭାବୁଛନ୍ତି ସେମାନେ ଜାଣିପାରୁନାହାନ୍ତି ଯେ ଲୋକେ ତାଙ୍କୁ କାର୍ଟୁନ୍‌ ଛଡ଼ା ଅନ୍ୟ କିଛି ଭାବୁନାହାନ୍ତି ।



# ନାବାଳକ

ହୟଗ୍ରୀବ ବାବୁ ଜଣେ ଦସ୍ତୁର୍ମସ୍ତ ପୋଖତ ଲୋକ । କାନୁନ୍ ଜଗତରେ ଯେତିକ ନିୟମ କଥା ସବୁ ତାଙ୍କ ଜିଭଅଗରେ ଥୁଆ । ପ୍ରଶ୍ନ ପଚାରନ୍ତୁ, ତତ୍‌କ୍ଷଣାତ୍ ଥୁକ୍ କରିଦେବେ—ଆପଣ ଯେତେ ପାହାଚ ଚଢ଼ି ଯାଇଥାଆନ୍ତୁ ପଛେ, କଥା ଭଙ୍ଗି ଗଲା ବୋଲି । ଏପରି ଲୋକେ ସାଧାରଣତଃ ପୃଥିବୀରେ ବି ଦେଖା ନ ଯାଉଥିବା ଜନ୍ତୁର ପଛପଟଟିକୁ ଜାଣିଥିବେ । ଏତାଦୃଶ କ୍ରିୟାକଳାପ ଅବଚେତନ ଭାବେ ଅଭ୍ୟାସରେ ପରିଣତ ହୋଇଯାଇଥାଏ । ଏତେ ଗହନ ଯେ, ଏଇଥିରୁ ବିଗୁଡ଼ି କରନ୍ତୁ—ଏ ଧାତୁର ଲୋକେ ଇଚ୍ଛାକଲେ ଯାଇ ହସିବେ ।

ଦିନେ ଝିଟିଝିଟିଆ ସକାଳର କଥା । ଗୋଟିଏ ରାସ୍ତା ଖୋଜୁଖୋଜୁ ଭୁଲରେ ଡ୍ରାଇଭର ଯେଉଁ ଗଳିବାଟେ ଗାଡ଼ିଟା ପୂରାଇଦେଲା ସେହି ରାସ୍ତାରେ ହୟଗ୍ରୀବ ବାବୁଙ୍କ ଘର । ସେ ଗମ୍ଭୀର ହୋଇ ପଇଁତରା ମାରୁଥାଆନ୍ତି । ପୂର୍ବରୁ ମିଶି ନ ଯାଇଥିଲେ ଆମେ ଚମକି ମାରିବା ଲୋକ, ମାତ୍ର ଓହ୍ଲାଇବାକୁ ବାଧ୍ୟ ହେଲୁ । ସେ ଆଦର ସହକାରେ ପାଚୁଛନ୍ତି ନେଲେ । ଭିତରକୁ ଚା' ପାଇଁ କୁହାଟଟାଏ ଗୁଡ଼ଗୁଡ଼ ଗୋଟିଏ ମନ୍ତବ୍ୟ ସେ କରିଦେଲେ—ହଏ ହୋ ଦିଲ୍ଲୀର ଲୁକେ, ତମେ ଜାଣ ଟି.ଭି. ସିରିଏଲ୍ ନାଇଁ ଦେଖିବାର କାଏଁ, ଯେ ବୁଢ଼ା କଟେ ଦେବାର ଲାଗି ଏଡ଼୍‌କ କୁଛୁ ହେଉ । ଆମର୍ ଚାଲିଚଳନ ଦୁସରା ହେ ।

ଯାହାହେଉ, ହୟଗ୍ରୀବ ବାବୁଙ୍କ ମୁହଁରୁ ଅପେକ୍ଷାକୃତ ପଜେଟିଭ୍ କଥାଟିଏ ଶୁଣି ଆମର ଆତ୍ମା ପୂରିଗଲା । ଭାବିଲି, ସକାଳଟା, ତମାମ୍ ଦିନଲାଗି ଶୁଭ ସୂଚନା ଦେଲା । ଚା' ଟବ ସରିବା ପରେ ସେ ଅସଲି ସମ୍ବଲପୁରୀ ଭଙ୍ଗ୍ ଟିପେ ପାଟିରେ ପୂରାଇ, 'ଆଉ୍ ଖବର୍ କାଣା, ବୋଲ୍' ବୃତ୍ତି ଆଲୋଚନା ଆରମ୍ଭ କରି ବସିଲେ ।

ସେ କହିଲେ, ଜାଣିଛ ନା, ଭୋଟ ଦେବାର ବୟସ ଅଠର ବର୍ଷକୁ ଖସାଇ ଦିଆଯିବ । ଭଲ ହେବ କି ନା, କୁହତ ! ମୁଁ, ଏପରି ଅସ୍ୱାଭାବିକ

ପ୍ରସ୍ତାବନା ଆସିପାରେ, ଏକଥା ଆଶଙ୍କା ମଧ୍ୟ କରିନଥିଲି ତଥାପି ଚଟାପଟ୍ କହିଦେଲି, ଭଲ କ'ଣ, ମନ୍ଦ କ'ଣ ? ଏଠିକୋଇଶରୁ ଉପର ବାଲିଏ ଭୋଟ ଦେଇ କୋଉ ଦେଶକୁ ଉଦ୍ଧାର କରି ଦେଉଥିଲେ ବା ନର୍କକୁ ଟାଣି ନେଉଥିଲେ ଯେ !

ସେ---ନାଇଁ ହୋ, ଏବେ ସବୁ ରାଜନୈତିକ ଦଳ କହିବେ, ଆମେ କରିଦେଲୁ । ଯାହାର କଣ୍ଠଜୋର୍ ଯେତେବେଶି ସେ ଲୋକଙ୍କ ପାଖରେ ସେତେ ପତ୍ତଆସ୍ତ ଦେଖେଇବ । ଆଉ ଗୋଟାଏ କଥା ମନକୁ ଆସୁଛି—ନିର୍ବାଚନ ଖର୍ଚ୍ଚ ମଧ୍ୟ ବଢ଼ିଯିବ ।

: କାରଣ ?

: ଭୋଟର ବଢ଼ିଗଲେ, ବୁଥ୍ ବଢ଼ିଯିବ । ସରକାରୀ, ବେସରକାରୀ, ଖୋଲା ଲୁଚା ସବୁ ଖର୍ଚ୍ଚ ବଢ଼ିଯିବ । କେତେ ଭୋଟର ବଢ଼ିଥିବେ ଜାଣିଛ ? ଏତିକ କହି, ହୟଗ୍ରୀବ ବାବୁ ଜନଗଣନାର ଖଣ୍ଡେ ମୋଟା ବହି ଥାକରୁ ଟାଣିଆଣିଲେ ।

ଟପିକ୍ ଉପରେ ତାଙ୍କର ଏତେ ଆଗ୍ରହ ଦେଖି ମୋତେ ଭାରି ଝୁସି ଲାଗୁଥାଏ । ନିଜଆଡ଼ୁ ଅର୍ଡ଼ର କରିଦେଲି--ଭାଉଜ ଆଉ କପେ ଚା' ଆସୁ । ଭିତର ବାରଣ୍ଡାରୁ ହସି ହସି ଭଦ୍ରମହିଳା ବୋହୋଇ ଘରକୁ ଚାଲିଗଲେ । ହୟଗ୍ରୀବ ବାବୁ ତନ୍ମୟ ହୋଇ ବହିରୁ କ'ଣ ଖୋଜୁଥାନ୍ତି । ମୁଁ କହିଲି—କାହିଁକି ଆଖି ଚେଷ୍ଟା କରୁଛନ୍ତି, ଫିଗର୍ ମୋଟେ ମିଳିବନି ।

ସେ ଆଖି ତରାଟି ପଚାରିଲେ—କାହିଁକି ହୋ ?

: କାରଣ, ହିସାବ ଢଙ୍ଗରେ ସାତବର୍ଷ ତଳର । ସେନ୍‌ସସ୍-ବାଲାଙ୍କୁ କେହି ଗୁରୁତ୍ୱ ସହକାରେ ଗ୍ରହଣ କରନ୍ତି ନାହିଁ ବା ଏନ୍ୟୁମେରେଟରମାନେ ସଠିକ୍ ହିସାବ କରନ୍ତି ନାହିଁ । କଣ୍ଡକ୍ଟରଙ୍କ ହାତଲେଖା ବସ୍ ଟିକେଟ୍‌ରେ ପହଞ୍ଚିବା ଜାଗାର ନାଁ ପଢ଼ିବାକୁ ଚେଷ୍ଟାକରିବା ଯେମିତି ବୃଥା, ସେନ୍‌ସସ୍ ହିସାବରୁ ସତ କାଢ଼ିବା ଉଦ୍ୟମ ମଧ୍ୟ ସେମିତି ବୃଥା । ଆଉ ଗୋଟିଏ କଥା ହେଲା ଏଇ ସାତବର୍ଷ

ଭିତରେ କେତେ ମରିଥିବେ ବା କେତେ ବଢ଼ିଥିବେ, ସେ ହିସାବ କେମିତି ମିଳିବ ?

ମୁଁ ଦେଖିଲି 'ଅବଜେକ୍ସନ୍ ସଷ୍ଟେଣ୍ଡ୍' ପରେ ହୟଗ୍ରୀବ ବାବୁଙ୍କୁ ମୋ କଥାଟା ଠିପ୍ କରି ଲାଗିଛି । ସେ ବିରକ୍ତ ହୋଇ ବହିଟିକୁ ବନ୍ଦ କରିଦେଲେ । ଇତିମଧ୍ୟରେ ଚା ଆସିଯାଇଥାଏ ।

ସେ କହିଲେ—ଏଇ ରାଜନୀତିବାଲାଏ ହିଁ ସବୁ ଧ୍ୱଂସ କରି-ଦେଲେ । ପୁଅଟାକୁ ଆଜିର ସହର ପୂରଣାହିଁ ସେ ଖବରକାଗଜରୁ ଏଇ କଥା ପଢ଼ି କହୁଛି କ'ଣ ନା ମୁଁ ଭୋଟଦେବ । ଭୋଟର ଭୂତ ଥରେ ମୁଣ୍ଡରେ ପଶିଲେ ଆଉ ପାଠ କୋଉଠି ପଶିବ ?

ମୁଁ—ଆଜ୍ଞା, ଆପଣ ତ ପୁଣି ଭୋଟ ଦେଉଛନ୍ତି, ଆପଣଙ୍କ ମୁଣ୍ଡରେ ସାରା ଅଫିସ୍‌ଟା କେମିତି ସହଜ ସୂକ୍ଷ୍ମରେ ପଶିଯାଉଛି ?

ସେ—ଆମେ ଆଉ ଏମାନେ !

ହୟଗ୍ରୀବ ବାବୁଙ୍କ ମୁଡ୍ ଦେଖି ଭାବିଲି ନିଜ ପୀଢ଼ିର ପ୍ରଶଂସା ଠାରୁ ଆଉ ସୁନ୍ଦର ବୋଧେ କିଛି ହୋଇନପାରେ । ଅଃ, ଗନ୍ଧରେ ଚନ୍ଦନ, ଫୁଲରେ ପାରିଜାତ, ମନରେ ପ୍ରୀତିଭାବ ଓ ଶୋଭାରେ ସ୍ୱରୂପ ଯେମିତି ! ଭାବିଲି ତାଙ୍କ ଘରେ ତାଙ୍କ ଖର୍ଚ୍ଚରେ ଆଲୋଚନା କରିବାର ଅବକାଶ ପାଇ ବଗୁଲିଆମି କରିବା ଉଚିତ ନୁହେଁ । କିନ୍ତୁ ଅଠର ଓ ଏକୋଇଶ ଭିତରେ କିଛି ଫରକ ନାହିଁ ଏକଥା ତାଙ୍କୁ କିପରି ବୁଝାଇବି ବା କିପରି ବୁଝାଇବି ଯେ ସେ ଯେତିକି ଡରୁଛନ୍ତି କେବଳ ସେତିକି ନୁହେଁ, ଚଉଦ ପନ୍ଦର ବାଲା ବି ଅଠର ଭିତରେ ପଶିବେ । କାରଣ ଏଥିପାଇଁ ତ ସ୍କୁଲ ଲିଭିଂ ସାର୍ଟିଫିକେଟ୍ ଦରକାର ହେବନି । ତଥାପି କହିଲି—ଗୁଣକ୍ୟ କହିନାହାନ୍ତି, ପ୍ରାପ୍ତେଷୁ ଷୋଡ଼ଶ ବର୍ଷେ ପୁତ୍ରଂ ମିତ୍ର ବଦାଚରେତ୍ ?

ତାଙ୍କ ପ୍ରତିକ୍ରିୟା ଅତି ଚଞ୍ଚଳ ହୋଇପଡ଼ିଲା । ସେ କହିଲେ—ଗୁଲିମାର ହୋ'ଗୁଣକ୍ୟଙ୍କୁ । ଅଠରବାଲାଙ୍କୁ ବାନା ବୋହିବା ଲାଗି, ସ୍ଲୋଗାନ ଦେବାଲାଗି ଓ ପୋଷ୍ଟର ମାରିବା ଲାଗି ନିଆଯାଉଛି । ଯେତେ

ଦଳ ଏଥିପାଇଁ ବାହାବା ନେବାକୁ ବାହାରୁଛନ୍ତି କେହିହେଲେ ଆଜିଯାଏଁ ଦାବି କରିନାହାନ୍ତି କାହିଁକି ଯେ ଏକାସାଙ୍ଗରେ ସମ୍ବିଧାନର ୫୮ (ଖ), ୬୬ (ଖ), ୮୪ (ଖ) ଓ ୧୭୩ (ଖ) ଧାରାଗୁଡ଼ିକ ମଧ୍ୟ ସଂଶୋଧନ କରାଯାଉ ।

: ସେଥିରେ ଅଛି କ'ଣ, ଆଜ୍ଞା ?

: ଯଥାକ୍ରମେ, ରାଷ୍ଟ୍ରପତି ପାଇଁ ସର୍ବନିମ୍ନ ବୟସ ସୀମା ୩୫ରୁ ୩୨, ଉପରାଷ୍ଟ୍ରପତି ସେଇଆ, ରାଜ୍ୟସଭା ସଭ୍ୟ ପାଇଁ ସେଇଆକୁ ଲୋକସଭା ୨୨, ବିଧାନ ପରିଷଦ ୩୨କୁ ବିଧାନସଭା ବୟସ ୨୨ କରାଯାଉ । ସବୁ ତିନି ତିନି ବର୍ଷ କମ୍ । ନାଇଁ ହୋ, ମତଲବ ଅଛି । ସେ କଥା କରିବେନି । କାରଣ ମାମଲତି ରହିବନି ।

ଅସଲ ହୟଗ୍ରୀବ ବାବୁଙ୍କ ରୂପଟି ମୋ ଆଗରେ ଦିଶିଲା । ନିଜକୁ ନିଜେ ଝିଙ୍ଗାସିଲି—ବେଟାରେ, ଧକପ୍ ଗ୍ଟ' ଖାଇଛୁ ଏବେ ଯିବୁ କୁଆଡ଼େ । ମୋର ଟିକେ ରାଜନୀତିଆ ଆଲୁଦୋଷ ଅଛି, ତେଣୁ ହୟଗ୍ରୀବ ବାବୁ ଯାହାକୁ ଯେମିତି ଗାଳି ଦେଉଥାନ୍ତୁ ନା କାହିଁକି ମୋ ଦେହରେ ଜୁଈ ଫୋଡ଼ିହେଲା ପରି ଲାଗୁଥାଏ । ତାଙ୍କ କହିବାକୁ ବି ଫୁରସତ୍ ନଥାଏ ।

ତା'ପରେ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରର ଗୋଟିଏ ପଂକ୍ତି ଉଦ୍ଧାର କଲି, "ଦ୍ୱାଦଶବର୍ଷା ସ୍ତ୍ରୀ ପ୍ରାପ୍ତବ୍ୟବହାରା ଭବତି, ଷୋଡ଼ଶବର୍ଷ ପୁମାନ୍", (୩ୟ ଅଧିକରଣ, ୩ୟ ଅଧ୍ୟାୟ, ଶ୍ଳୋକ-୧) ଏହି ସାବାଳକତ୍ୱର ପ୍ରମାଣ କେଉଁ ଆବହମାନ କାଳରୁ ରହିଆସିଛି । ଆପଣ କାହିଁକି ଅରାଜି ହେଉଛନ୍ତି ? କାହିଁକି ରାଗୁଛନ୍ତି ?

"ତୁମେ ଭାଇ ଶୀଘ୍ର ଯାଅ, ମୋର ଅନ୍ୟ କାମ ଅଛି," କହିବା-ପୂର୍ବରୁ ହୟଗ୍ରୀବ ବାବୁଙ୍କର ଶେଷ ବାକ୍ୟ ଥିଲା, 'ଯେଉଁ ଗଣତନ୍ତ୍ର ୪୧ ବର୍ଷ ପରେ ନିଜର ନାବାଳକତ୍ୱ କଟେଇ ପାରିନି, ସେ ଆଉ କାହାକୁ ସାବାଳକ କରିପାରିବ ହୋ ?'



# ହଳଦୀବସନ୍ତ

ମନକୁ ପଇଠ୍‌ଥିବା ଯେତେ ନାଁ ତନଖି ଦେଖିଲି, ଆମ ଭାଷାରେ ଗୋଟିଏ ମାତ୍ର ଚଢ଼େଇ—ହଳଦୀବସନ୍ତ—ଯାହାର ନାଁ ସ୍ୱାଧୀନ ନୁହେଁ ବା ମୌଳିକ ନୁହେଁ । ଉଧାରି ଓ ଖେଚଡ଼ି, ଇଂରାଜୀରେ ଯାହାକୁ କୁହାଯିବ borrowed ଓ composite । ପୋକ ଭିତରେ ଯେମିତି ସାଧବବୋହୂ । ସାଧବ, ବୋହୂ, ହଳଦୀ ଓ ବସନ୍ତ—ଏହି ଶବ୍ଦଗୁଡ଼ିକ ଭିତରୁ କୌଣସିଟି ଚଢ଼େଇ ବା ପୋକ ନୁହନ୍ତି । କେବଳ ଏତିକି ଯଥେଷ୍ଟ ନୁହେଁ, ଉଭୟ 'ସେଟ୍' ଭିତରେ କୌଣସି ସମ୍ପର୍କ ବି ନାହିଁ । ପ୍ରଜାପତି ଏହି ପର୍ଯ୍ୟାୟର ବୋଲି କାହାରି ମନରେ ପ୍ରଶ୍ନ ଉଠିପାରେ । ମାତ୍ର, ଆଜ୍ଞା ନୁହେଁ । ଏଗୁଡ଼ାକ ଜଣାଶୁଣା ଠକ ଦଳ । କାମନା ପ୍ରବଳ କିନ୍ତୁ କାହାରିକୁ ଆପଣାର କରିବାକୁ ଅଭିଳାଷ ବି ନଥାଏ । ଶୁଙ୍ଘନ୍ତି, ଭାଗନ୍ତି । ଏକଥା ସମସ୍ତେ ଜାଣନ୍ତି । ତେଣୁ ଆମ ଆଲୋଚନାରୁ ଆମେ ଏଇ ନାଁଟିକୁ ଆଗରୁ 'ମାଇନସ୍' କରିଦେଉଛୁ ।

କାମଳ ସାମ୍ବାଦିକତା ସହିତ ହଳଦୀବସନ୍ତର ସାମଞ୍ଜସ୍ୟ ପ୍ରତିଷ୍ଠା କରିବା ପାଇଁ ଆମେ ଉଦ୍ୟମରତ ହେଉଥିବା ଯୋଗୁ ଉପର-ଆଲୋଚିତ ସାଧବ-ବୋହୂଙ୍କୁ ମଧ୍ୟ ତ୍ୟାଗ କଲୁ । କାମଳ (yellow)—ହଳଦୀ । ମନଲୋଭା ରଙ୍ଗ, ଅର୍ଥ ଏକା । କାବ୍ୟିକ ଉଦାହରଣ ଯେତେ ଖୋଜିଲେ ସେତେ ମିଳିବ । ଏଥିରେ 'ପ୍ରବଲେମ୍' ନାହିଁ । ତର୍କଶାସ୍ତ୍ର ଅନୁଯାୟୀ ପ୍ରତିପାଦନ କରିବାକୁ ରହିଲା ବସନ୍ତ ଓ ସାମ୍ବାଦିକତା ଭିତରେ 'କନେକ୍‌ସନ୍' । ସ୍ୱ-ଅର୍ଥ ବ୍ୟତୀତ, ବସନ୍ତକୁ ବୟସର ଅନ୍ତ ବୋଲି ବ୍ୟାଖ୍ୟା କଲେ ମଧ୍ୟ ଚଳିବ । ଏହା ଯେମିତି ଏକ ଉନ୍ମାଦନାମୟୀ କାଳ, ସେମିତି ଏକ ଉଲ୍ଲାସମୟ ଭାବନା ମଧ୍ୟ । ବୟସ ଲୋଡ଼ା ନାହିଁ । ସାମ୍ବାଦିକତାରେ ମଧ୍ୟ ବୟସ ଲୋଡ଼ାନାହିଁ । ନିଜ ମନର ବସନ୍ତ ଫୁଲଝରି ନେଇ କଦାପି ଉତ୍ତୁରିବ ନାହିଁ ଯଦି ପରି-ପାର୍ଶ୍ୱରେ ଆବଶ୍ୟକ ଲଘୁରୂପ ସୃଷ୍ଟି ହୋଇଥିବାର ସନ୍ଧାନ ନମିଳେ ।

ହଁ, କାଇଦା କରି ଲଘୁଗୁରୁ ସୃଷ୍ଟି କରାଯାଇପାରେ ଅବଶ୍ୟ । ସାମ୍ବାଦିକତା କ୍ଷେତ୍ରରେ ଏ କଥାଟି ମଧ୍ୟ 'ଏକ୍ସାକ୍ଟଲି' ସେଇଆ ।

ଗତ ଅକ୍ଟୋବର ମାସ କଥା । ପ୍ରଧାନମନ୍ତ୍ରୀ ଇନ୍ଦିରାଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ କରିବାକୁ ଆସିଥିବା ବିଷୟକୁ ଲକ୍ଷ୍ୟ କରି ବିଭିନ୍ନ ସମ୍ବାଦପତ୍ର ଭିନ୍ନ ଭିନ୍ନ କଥାମାନ ଛାପିଲେ । ଗୋଟିଏ ଓଡ଼ିଆ ଖବରକାଗଜରେ 'ଲୋକବୁହା' ହେଉଥିବାର ଅନେକ ଫଟୋ ପ୍ରକାଶିତ ହେଲା । ଲୋକମାନଙ୍କୁ ସମ୍ବାଦପତ୍ରଗୁଡ଼ିକ କାହିଁକି ଦ୍ରବ୍ୟପରି ଭାବି 'କମନ୍‌ସେନ୍‌ସ' ହରାଉଛନ୍ତି ଓ ସେଥିଯୋଗୁ ଭାଷାର ଶାଳୀନତା ରକ୍ଷା କରିପାରୁ ନାହାନ୍ତି —ମୋଟାମୋଟି ଭାବେ ଏହାହିଁ ଆମର ପ୍ରଶ୍ନ ।

ଅନେକ କଥା ଓ ଅନେକ ଫଟୋରୁ ଗୋଟିଏ ଥିଲା : OSX 1 1 1 ରାଜସ୍ୱମନ୍ତ୍ରୀଙ୍କ ଗାଡ଼ି, ତା'ଆଗରେ ଗୋଟିଏ 'ଲୋକବୁହା' ଗାଡ଼ିକୁ ଜଗି ଜଗି ଯାଉଥିବାର ଫଟୋ । ଉଭୟ ଗାଡ଼ି ଚାଲୁଥିଲା ବା ଛିଡ଼ା ହୋଇଥିଲା ତାହା ଫଟୋରୁ ଜାଣିବା ସମ୍ଭବ ହେଉ ନଥିଲେ ମଧ୍ୟ କେତେଗୁଡ଼ିଏ ପ୍ରଶ୍ନ ମନକୁ ଆସୁଛି : 'ବୁହା ହେଉଥିବା ଲୋକ' କ'ଣ କ୍ରୀତଦାସ ଦଳ, ଡେଇଁ ପଳାଇଥା'ନ୍ତେ କି ? ରାଜସ୍ୱମନ୍ତ୍ରୀଙ୍କ ଗାଡ଼ି ବୋଲି ତାହା ଅନ୍ୟ କୌଣସି ଗାଡ଼ିର ଆଗରେ ବା ପଛରେ ଚାଲିବା ବା ଠିଆହେବାର ଅଧିକାର ହରାଇ ବସିବ କି ?

ମଜା କଥାଟି ହେଲା, ଯେଉଁ ଫଟୋଗ୍ରାଫର୍ ପଛରୁ ଥାଇ ଫଟୋ ଉଠାଇଲେ, ତାଙ୍କ ପଛରୁ ଆଉ କେହି ଯଦି ତାଙ୍କ ସମେତ ଉଭୟ ଗାଡ଼ିର ଫଟୋ ନେଇପାରିଥା'ନ୍ତେ ତା'ହେଲେ ପ୍ରକାଶ ପାଇଥିବା ଫଟୋର ଫଟୋଗ୍ରାଫର୍‌ଙ୍କୁ କ'ଣ ବୋକ୍ସବୁହା କୁହାଯାଇଥା'ନ୍ତା କି ?

ଫଟୋଗ୍ରାଫର୍‌ଙ୍କର କୌଣସି ଦୋଷ ନାହିଁ କାରଣ ସେ ମନ ନେଇ କାମ କରିଛନ୍ତି । କଥା ଏଇଠି ଥାଉ । ତଥାପି ଆମେ ଦୃପ୍ତ କଣ୍ଠରେ ଘୋଷଣା କରି କହିବୁ ସମ୍ବାଦପତ୍ରର ସ୍ୱାଧୀନତା ଦରକାର । ଠିକ୍ ସେହିପରି ଦରକାର ବସନ୍ତ, ମଳୟ ଓ ଯୌବନର ଶୀତ୍କାର । ବଯ୍ସରର ମାମଲା ନାହିଁ ବା ଦାୟିତ୍ୱ କଥା ପଚାରିବାକୁ କାହାରି ହକ୍ ନାହିଁ । ଗୋଟେ କଥାଟିଏ

ସହିତ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବନା କାହିଁକି ଆଗତ କରାଯାଉଛି ବୋଲି ପାଠକମାନେ ନାପସନ୍ଦ କରିପାରନ୍ତି, ମାତ୍ର ଆମେ ଆଗରୁ ସ୍ପଷ୍ଟ କରି ଦେଉଛୁ—ତତ୍ତ୍ୱ ଆଲୋଚନା କରିବା ଆମର ଲକ୍ଷ୍ୟ ନୁହେଁ ବା ଆମେ ସେଥିପାଇଁ ମଧ୍ୟ ଭାଜନ ନୋହୁଁ ।

ଖବରକାଗଜଗୁଡ଼ିକରେ ସମ୍ବାଦ କପରି ଅ-ସମ୍ବାଦରେ ପରିଣତ ହୁଏ ? କାରଣଗୁଡ଼ିକୁ ନିର୍ଣ୍ଣୟ କଲେ କେତେକ ସଚେତନ, ଯଥା— ପୂର୍ବରୁ ବର୍ଣ୍ଣନା କରାଯାଇଥିବା ପରି ଓ ଅନ୍ୟ ସବୁ ଅଚେତନ । ବଡ଼ ବଡ଼ କଥା ଛାଡ଼ି ଦିଆଯାଉ, ଆମେ ଯାହା ସାଧାରଣତଃ ଦେଖୁଛୁ କେତେକ 'ବିଖ୍ୟାତ' ଓ 'ଶକ୍ତିବାନ୍' ଲୋକେ ଯେମିତି ହେଲେ ଖବରକାଗଜକୁ ମିଥ୍ୟା ବା ଅ-ଖବର ପ୍ରଚାରରେ ଲଗାଇ ଦିଅନ୍ତି । ଅଚେତନ ଯୋଗୁ 'କନ୍‌ଫେସନ୍' ପାଉଥିଲେ ମଧ୍ୟ ଗୋଟିଏ ଦୋଷରେ ସମ୍ବାଦପତ୍ରଗୁଡ଼ିକ ଅଲବତ୍ ଦାୟୀ ହେବେ । ତାହା ହେଲା, ସ୍ୱୟମ୍ବର ସଭାରେ ହୁକୁହୁକୁ ହୋଇ ପଶିଥିଲି ବୋଲି ସିନା ବେକରେ ମାଳ ପଡ଼ିଲା ! ଅଧିକନ୍ତୁ, ଆପଣମାନେ ଦେଖୁନାହାନ୍ତି, ଗନ୍ଧି କି ଗଜରା ବାହାରି ଆସୁଛନ୍ତି ଏବଂ ଜାଣୁନାହାନ୍ତି ଯେ ଲୋକହସା ହେଉଛନ୍ତି ବୋଲି ।

ଆମେ ଜାଣୁ, ଲୋକନାୟକ ନାମ୍ବରର ଜଣେ ନେତା ଯୁଗ ଭିତରେ ଗୋଟିଏ ବଡ଼ ସନ୍ଦର୍ଭ ପ୍ରକାଶ କରିଦେଲେ ଯାହାର ମର୍ମ ଥିଲା 'କ୍ୟାପିଟେସନ୍ ଫି' ନାଁରେ ଘରୋଇ ଶିକ୍ଷା ଅନୁଷ୍ଠାନଗୁଡ଼ିକ ଛାତ୍ର-ଛାତ୍ରୀଙ୍କୁ ଶୋଷଣ କରୁଛନ୍ତି । ଆମେ ଏକଥା ମଧ୍ୟ ଜାଣୁ ଯେ ପ୍ରମାଣିତ ଭାବେ ସେ ମଧ୍ୟ ସେହି 'ଦୁର୍ମତି'ରୁ ମୁକ୍ତ ନୁହଁନ୍ତି । ଶଠମାନଙ୍କ ମୁହଁରୁ ପ୍ରଣବ ମନ୍ତ୍ର ଶୁଣାଯିବା ପାଇଁ ଭାରତ ଏକ ଉତ୍କୃଷ୍ଟ ଶସ୍ୟ-ଶ୍ୟାମଳା ଦେଶ ! ଏହାକୁ ଆହୁରି ସମୃଦ୍ଧ କରିବାକୁ ଖବରକାଗଜଗୁଡ଼ିକର ଭୂମିକା ମଧ୍ୟ କମ୍ ନୁହେଁ ।

କବୀରଙ୍କର ଗୋଟିଏ ଦୋହା ଉଦ୍ଧାର କରୁଛି : ଚଲନ୍ ଚଲନ୍ ସବ୍‌କୋ କହତ୍ ନା ଜାନେ ବୈକୁଣ୍ଠ କହାଁ/ଯୋଜନ୍ ଏକ୍ ପ୍ରମିତି ନହୁଁ ଜାନୋ ବତାନା ହୈ ବୈକୁଣ୍ଠ ବଚନେ । (ସମସ୍ତେ କହୁଛନ୍ତି ବୈକୁଣ୍ଠକୁ ଚାଲ ମାତ୍ର ମୁଁ ଜାଣିପାରୁନି ବୈକୁଣ୍ଠ କେଉଁଠି । ବୈକୁଣ୍ଠକୁ ରାସ୍ତା

ସେଇମାନେ ଦେଖାଉଛନ୍ତି ଯେଉଁମାନେ ଯୋଜନଟିଏ ବି ସଠିକ୍ ମାପି ଜାଣିନାହାନ୍ତି ।)

ବେଶି କହିଲେ କାହାକୁ କାଳେ ବାଧିବ ତେଣୁ ଆମେ ତହିଁରୁ କ୍ଷାନ୍ତ ହେଲୁ । ମାତ୍ର ଏପରି ଏକ ସନ୍ଦେହାତ୍ମ ଅବସ୍ଥାରେ ବୈକୁଣ୍ଠ ପରି ସ୍ୱାଧୀନତାର ସନ୍ଧାନ ମିଳିବା ପର୍ଯ୍ୟନ୍ତ, କାନନ ସାମ୍ବାଦିକ ବୋଲି ଯାହାକୁ ବିବେଚନା କରାଯିବ ସେମାନଙ୍କୁ ମର୍ଯ୍ୟାଦାସମ୍ପନ୍ନ ଭାବେ ହଳଦୀ-ବସନ୍ତ ନାମରେ ନାମିତ କରାଯାଉ ।

ସମସ୍ତେ ଭାବନ୍ତୁ—ଚଢ଼େଇ ଥିବ, ମନ ଥିବ, ପବନ ଥିବ, ଉନ୍ମାଦନା ଥିବ, ସ୍ୱପ୍ନର ରାଜ୍ୟ ସୃଷ୍ଟି ହୋଇଯିବ । ହେଲେ, ଆଖି ଖୋଲି ଦିଅନ୍ତୁ— ଭୋଜବିଦ୍ୟା ଫୁସ୍, ସବୁ 'ଆଉଟ୍' ।



# ଇଚ୍ଛାର ନାମ ଉଚ୍ଛୁଳା ନଈ

'କାମନାର ବିନାଶରେ ଦୁଃଖର ବିନାଶ ।' ଥିଲେ ସେ ବୁଦ୍ଧଦେବ, ଏ କଥା କହିଦେଇ ଖସି ଯାଇଛନ୍ତି କୋଡ଼ିଏ ଅଢ଼େଇ ହଜାର ବର୍ଷ ପୂର୍ବରୁ । କ୍ରୋଧ, ଲୋଭ, ମୋହ ପରି ଲହଲହ ଜିହ୍ୱାର ଅଗ୍ନିମାନଙ୍କୁ ହେତେବେଳେ ସେ କିପରି ନିର୍ବାପିତ କରିଥିବେ, ତାହା ଅଲଗା କଥା; ମାତ୍ର ତାଙ୍କ ଭବ ବନ୍ଧନର ମୁକ୍ତିକୁ ନିର୍ବାଣ କୁହାଗଲା । ଯେଉଁ ପରିବେଶ ଓ ତହିଁରେ ଗୌତମ ଯେମିତି ବୁଦ୍ଧଦେବ ହେବା କଥା ଆମେ ଶୁଣିଛୁ, ଆଜି ଯୁଗରେ ସେଇ ଯଦି ଥା'ନ୍ତେ—ଆମ ଅନ୍ଦାଜ ଠିକ୍ ହେବନି—ତାଙ୍କୁ ପ୍ରମାଣ କରିବାକୁ ପଡ଼ିଥା'ନ୍ତା, କେତେ ଶହ କେତେ ଅମୁକ ଜ୍ଞାନ-ଯଜ୍ଞ ସେ ସମ୍ପନ୍ନ କରିଛନ୍ତି ଯେ ପେଣ୍ଡାଲ୍‌ରେ ବସିବାକୁ ଏଣ୍ଟାଇଟିଲ୍‌ଡ଼୍ ହେବେ ! କଉପୁନି ବା ଅଙ୍ଗ ବସ୍ତ୍ରପାଇଁ ତାଙ୍କୁ ଟେଣ୍ଡର୍ ଫର୍ମ ମିଳିଥା'ନ୍ତା କି ନାହିଁ, ସନ୍ଦେହ । ମୌଳୀ ମକରନ୍ଦର ମର୍ଯ୍ୟାଦା···? ହଇ ହୋ, ଗୌତମେ—ଦିଲ୍ଲୀ ବହୁତ ଦୂର ! ଆଜି କମ୍ପ୍ୟୁଟର୍ ଯୁଗ କି ନା, ବଟନ୍ ଟିପିଲେ ଡାଟା ବାହାରିଲା । ଗଫ୍‌ଲତି କରିବାକୁ ବାଟ ନାହିଁ ।

ମୁନି ମୂଷାକୁ କ୍ରମେ କ୍ରମେ ବାଘରେ ପରିଣତ କରିଦେଲେ ଓ ପରେ ବିଗିଡ଼ିଯାଇ 'ପୁନର୍ମୂଷିକ ଭବ' ବୋଲି ଅଭିଶାପ ଦେବା କଥା ଶୁଣି ଶୁଣି ଆମେ ଯାହା ଇମ୍ପ୍ରେସନ୍ କରି ନେଇଛୁ ତାହା କେବଳ ମୂଷାଟି ବିଷୟରେ; ତା'ର ଅହଂକାର ବିରୁଦ୍ଧରେ, ଔଦ୍ଧତ୍ୟର ପ୍ରତିବାଦରେ । ମୁନିଙ୍କର ଏପରି ପାଗଳ ଇଚ୍ଛାମାନ କାହିଁକି ଜୁଆର ଓ ଭଟ୍ଟା ସମ ଚଢ଼ିଗଲା ବା ଗଡ଼ିଗଲା, ଏ କଥା କଦାପି କେହି ଅନୁଶୀଳନ କରୁନାହୁଁ । ଇଚ୍ଛାର ମଞ୍ଜି ଖୋଜିଲେ ଆମେ ପ୍ରମାଣ କରିପାରିବୁ ଯେ ଏ କୌତୁକପୂର୍ଣ୍ଣ ଗପରେ ଦୋଷୀ ମୂଷା ନୁହେଁ, ଅଟନ୍ତି ମୁନି ।

ଆମ ଭାଷାର 'ଇଚ୍ଛା' ଅର୍ଥଗତ ଭାବେ ଏତେ ପରିବ୍ୟାପ୍ତ ଯେ ଇଂରାଜୀରେ ତାହାକୁ ଉଇସ୍, ଉଇଲ୍, ଡିଜାଏର୍, ଇନ୍‌କ୍ଲିନେସନ୍ ବା

ଅପ୍‌ସନ୍ ଅଥବା ଆଉ ଯାହା କିଛି ଦ୍ୱାରା ପରିପ୍ରକାଶ କରିବାକୁ ଉଦ୍ୟମ କରାଯାଉ ନା! କାହିଁକି, ତାହା କଅଣ ହେବ । ଭାରତରେ ୟୁରୋପୀୟ ଉପନିବେଶର ଶେଷସ୍ଥଳୀ ହେଲା ଗୋଆ । ତାହା ଭାରତ ସହିତ ମିଶିଲା ୧୯୬୧ରେ । ୧୫ଶ ଶତାବ୍ଦୀରେ ପଶ୍ଚିମ ଉପକୂଳ ପ୍ରାୟ ପର୍ତ୍ତୁଗୀଜମାନେ କବଳିତ କରିଥା'ନ୍ତି । ବହୁପରେ, ୧୫୧୦ରେ ସେମାନେ ଗୋଆ ଅଧିକାର କଲେ । ଏଇଠି ଜଣଙ୍କ ଇଚ୍ଛା ସମ୍ପର୍କରେ ଗୋଟିଏ ମଜା କଥା ଶୁଣାଯାଏ । ଗୋଆ ଅକ୍ତିଆର କରି ପକାଇଥିବା ଯୋଗୁଁ ଉନ୍ମତ୍ତପ୍ରାୟ ହୋଇ ପର୍ତ୍ତୁଗୀଜ୍ ଗଭର୍ଣ୍ଣର ଆଫୋନ୍‌ସ ଡ'ଅଲ୍‌ବୁକାର୍କ (Affonse d' Albuquerque) କୁଆଡ଼େ ଇଚ୍ଛା କଲେ—ସମଗ୍ର ଭାରତଟାକୁ ଅକ୍ତିଆର କରିନେଲେ କେମିତି ହୁଅନ୍ତା । ଏ କଥା ସେ ଜଣେ ନେଟିଭ୍ ବାବାଜିଙ୍କୁ ପଚାରିଲେ । ବାବାଜି ସମୁଦ୍ରରୁ ଆଞ୍ଜୁଳାଏ ପାଣି ଆଣି ଅଲ୍‌ବୁକାର୍କଙ୍କୁ ପଚାରିଲେ, "ଇଏ କ'ଣ ସମୁଦ୍ର; ତୁମ ଇଚ୍ଛାକୁ ସଂଯତ କର ।" ଗଭର୍ଣ୍ଣର ଯଦି ତାଙ୍କ ଇଚ୍ଛାକୁ ସଂଯତ କରି ନ ଥା'ନ୍ତେ, ଭାରତର ସ୍ୱାଧୀନତା ଲଢ଼େଇର କାଳରେ ଅନ୍ୟୂନ ଗୋଟିଏ ଅପବାଦ ନେହରୁଙ୍କ ମୁଣ୍ଡରୁ ଖସି ଯାଇଥା'ନ୍ତା ।

ଆଲୋଚନା ହୁଗୁଳିଲାଣି, ଖେଳ ମାରିବା । ମଣିଷ ମାନେ କିଛି ନା କିଛି ଇଚ୍ଛା କରନ୍ତି । ସମ୍ଭାବ୍ୟ ଇଚ୍ଛା କଥା ବାଦ୍ ଦିଆଯାଉ । ଛନ୍‌ଛନିଆ ଘାସ ଦେଖି ଗାଈଆଳ 'ଗାଈକୁ ଏଇଠି ଟିକେ ମୁହଁ ମାରେଇ ଆଣେ' ଠାରୁ 'ମୋ ପ୍ରସ୍ତାବ ଏଇଠି ପଡ଼ନ୍ତା କି'—ଏଗୁଡ଼ିକ ସବୁ ସମ୍ଭାବ୍ୟ ଇଚ୍ଛା । କହାଣି ଯେ ଥୋମଣିରେ ଦି' ପାହାର ନ ବାଜିବ ବା ଆଉଟ୍ ପାଉଟ୍ ହୋଇ କେତେ ରାତି ଅନିଦ୍ରାରେ ନ କଟିବ ଏପରି କୌଣସି ଗ୍ୟାରେଣ୍ଟି ନାହିଁ । ତଥାପି ଚଳମାପୁ ।

ଆମେ ଗୋଟିଏ ଗବେଷଣା ଅନୁଷ୍ଠାନ ଜରିଆରେ ଇଚ୍ଛାର ବହୁବିଧ ଚରିତ୍ର ନିର୍ଣ୍ଣୟ କରିବାକୁ ବରାଦ ଦେଇଥିଲୁ । ଆମକୁ ସେଠାରୁ ଯାହା ମିଳିଛି ତାହା ଏକ ବିସ୍ତାରିତ ସନ୍ଦର୍ଭ । ଯାହା ହେଉ, କ୍ୟାଟାଗୋରି-ଓ୍ୱାଇଜ୍ ମଣିଷ ଇଚ୍ଛାକୁ ତହିଁରେ ସମୁଦାୟ ଛ'ଭାଗରେ ବିଭକ୍ତ କରାଯାଇଛି । ନିରୀହ ଉଦ୍ଭଟ ଇଚ୍ଛା, ସନ୍ଦିଗ୍ଧ ଉଦ୍ଭଟ ଇଚ୍ଛା, ମାର୍ଜିନ୍

ଇଚ୍ଛା, ଓଲୁ ଇଚ୍ଛା, ଅପ୍ରତ୍ୟକ୍ଷ ଇଚ୍ଛା ଓ ଗଲୁ ଇଚ୍ଛା । ସବୁକୁ ଠିକ ଠିକେ ବର୍ଣ୍ଣନା କରିଦେବା ।

ନଗ୍ନିହ ଉଭଛି ଇଚ୍ଛା : ଘାତମତ୍ ଫାଙ୍କାପି । ଫୁର୍ସତ୍ ପାଇ ବା ରାତରେ ଶୋଇଲାବେଳେ ମେରେଲିନ୍ ମନ୍‌ରୋଠାରୁ ଜର୍ଜ ବୁଶ୍‌ଙ୍କ ପର୍ଯ୍ୟନ୍ତ ନିଜକୁ ଯୋଡ଼ି ଯେମିତି ଫିଟ୍ କରାଇ, ସକାଳ ହେଲେ ଫାଇଲ୍ ବସ୍ତାନି ଧରି ଦପ୍ତର ଦଉଡ଼ । ଏ ଇଚ୍ଛା ଯୋଗୁଁ ନିଜ ମନର ନିକଟତମ ଜଳବାୟୁ ମଧ୍ୟ ଟିକିଏ ହଲଚଲ୍ ହୁଏ ନାହିଁ । ଏଇ ଆମ ଟି.ଭି.ରେ ଚାଲିଥିବା ମୁଙ୍ଗେରୀଲାଲ୍ ତାମ୍‌ସା ପରି ।

ସକ୍ରିୟ ଉଭଛି ଇଚ୍ଛା : ଉପରୋକ୍ତ ଇଚ୍ଛାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଯାଇ ଯଦି ମାଡ଼ ଘରେ ଗୁଆ ପକେଇ ଆସି ଥିଇରି କରି ଘରେ ବସିଯିବା ? ଫଳ ତା'ର ନିଜ ବାଟରେ ଆସିବ ।

ମାର୍ଜିନ୍ ଇଚ୍ଛା : ଟିକିଏ ଖୋଜିଣି ଢିଲା କଲେ ଯେଉଁ ଇଚ୍ଛା ହୁଏତ ପୂରଣ ହୋଇଯାଇପାରେ । ଯଥା : ଏ ଥାନାରେ ଅଛୁ—ଆଉ ଟିକେ ମାଲ୍‌ଦାର୍ ଥାନାକୁ ଯିବା । ଏପରିକି ଯେତେ ସ୍ଥାନ ବା ଯେତେ କଥା ।

ଓଲୁ ଇଚ୍ଛା : ଇଚ୍ଛାକାରୀ ଯେଉଁ କ୍ଷେତ୍ରରେ ଆଦୌ ବୁଝିପାରେନି ଯେ ସେ ବୁଝିପାରୁନି ବୋଲି ।

ଅପ୍ରତ୍ୟକ୍ଷ ଇଚ୍ଛା : ନିଜର ଇଚ୍ଛା ନଥାଏ । ଅନ୍ୟ ଦ୍ୱାରା ତାହା ସୃଷ୍ଟି କରାଯାଏ ଏବଂ କ୍ରମେ କ୍ରମେ ତାହା ବ୍ୟକ୍ତିର ବିଶ୍ୱାସରୁ ପ୍ରତ୍ୟୟ, ପ୍ରତ୍ୟୟରୁ ଦୃଢ଼ତା ଓ ଦୃଢ଼ତାରୁ ପ୍ରତିଜ୍ଞାରେ ପରିଣତ ହୋଇଯାଏ ।

ଗଲୁ ଇଚ୍ଛା : ଏ ଇଚ୍ଛା ଉଦ୍ରେକ ହେଉଥିବା ଜନଗଣଙ୍କ ସଂଖ୍ୟା ବହୁତ ବେଶି । ଏହା ମଣିଷକୁ ଗ୍ରାସ କଲେ ଉପରର ଯେ କୌଣସି ଇଚ୍ଛାର ସିମ୍ପଟମ୍ ଗ୍ରାସିତ ବ୍ୟକ୍ତିଟି ପାଖରେ ମିଳିପାରେ । ଏଥିରୁ ଯାଦୁ କୁଣ୍ଢେଇ ହେବାର ସୁଖ ଯେମିତି ମିଳେ, ରକ୍ତାକ୍ତ ହେବାର ଆଶଙ୍କା ମଧ୍ୟ ସେତିକି ଭୟାବହ । ଉପରୋକ୍ତ ପରିଣାମ ପାଇଁ ନିର୍ଭରଯୋଗ୍ୟ ରୂପେ ଭବିଷ୍ୟତ ଆସନ୍ନ ଜାଣି ମଧ୍ୟ ବ୍ୟକ୍ତି ଏଇ ଇଚ୍ଛା ଭିତରକୁ କେଜାଣି

କେମିତି ଗଳିଯାଏ । ବୋଧହୁଏ ଏଇଥିପାଇଁ ଉଚ୍ଛୁଳା ସୁଅ ବେଶି ବନ୍ଧ ଭାଙ୍ଗେ ।

ବୁଦ୍ଧଦେବଙ୍କ 'ଦୁଃଖର ବିନାଶ' ତତ୍ତ୍ୱକୁ ଆଉଟ୍‌ଡେଟେଡ୍ ଓ ମୁନିଙ୍କ ମୂଷା ପ୍ରସଙ୍ଗକୁ ସାଡ଼ିଜମ୍ (Sadism)ର ଇଲାକା ଭିତରକୁ ଠେଲି ଆମେ ଆପଣଙ୍କ ପରି ମଣିଷମାନଙ୍କ ସହିତ ସେସବୁର ବିଶେଷ ସମ୍ପର୍କ ନାହିଁ ବୋଲି ଧରିନେଲୁ । ହେଲେ, ଇଚ୍ଛା କେମିତି ନ ଉଚ୍ଛୁଳିବ—ଏହି ପ୍ରତିକାର ପାଇଁ ଅନ୍ତତଃ ନିହାତି ନିଜେ ଜାଣିବା ଦରକାର ଯେ କିଏ କେଉଁ ଇଚ୍ଛା ଭିତରେ ଅଛନ୍ତି ! ନଈ ବନ୍ଧ କେତେ ନୁଆଁଣିଆ ଓ ସୁଅ କେତେ ଉଚ୍ଚ !



# ବିଶେଷଣର ବିଶେଷଣ

ବହୁ ମନଃଶୀଳ ବ୍ୟକ୍ତିଙ୍କ କଥା ଶୁଣି ଶୁଣି ଆମର ହୃଦ୍‌ବୋଧ ହୋଇଛି ଯେ ସଂସାରରେ ମଣିଷ ଗୃରପ୍ରକାର ଥାଆନ୍ତି, ଉପସ୍ଥିତ ମୁହୂର୍ତ୍ତରୁ ମୋଟେ ଆଗକୁ ଭାବିପାରନ୍ତି ନାହିଁ । ଆଉ ଦଳେ, ହୁଏତ ସମାଧି ଖୋଳି ସେଥିରୁ ପୂର୍ବୀକର ମଡ଼ାକୁ ଓଟାରୁଥା'ନ୍ତି ଅଥବା ଆଗାମୀ ଦିନଗୁଡ଼ିକ-ପାଇଁ ଅପ୍ରମିତ କଳ୍ପନା-ବିହ୍ୱଳ ହୋଇପଡ଼ନ୍ତି । ତୃତୀୟ ଦଳଟି ନିଜ ନିଜକୁ ଅତି ପ୍ରାକ୍‌ଟିକାଲ୍ ବୋଲି ବିଚାରି ଏମିତି 'ବନାଓ୍ୱଟ' କରନ୍ତି ଯେ ଫୁଟ୍‌ପାଥ ହୋଟେଲବାଲା ଗରମପାଣି ପକେଇ ଚମଡ଼ା ଛଡ଼େଇ ଦେଇଥିବା ଅବାଧ୍ୟ କୁକୁର ପରି ଆଚରଣ ଦେଖାନ୍ତି ଅଥଚ କହନ୍ତି ଦୁନିଆ ସେମାନଙ୍କୁ କିଆଁ ବୁଝେ । ତା'ହେଲେ, ବର୍ଣ୍ଣନାର ଶେଷ ଦଳଟି କିଏ ? ଉତ୍ତର ଅତି 'ସିଂପୁଲ୍' । ଉପର ତିନି ପର୍ଯ୍ୟାୟର ହୋଇନଥିବେ, ଅଥଚ ମଣିଷ ହୋଇଥିବେ !

ଯେକୌଣସି ମଣିଷ ବିଶେଷଣଟିଏ ହାତରେ ନ ଧରିଲେ ତା' ସକାଳର ସୂର୍ଯ୍ୟକୁ ସେ ଉଦୟ କରାଇ ଦେଉନାହିଁ । ସହରୀ ଓ ତଥାକଥିତ ଇଣ୍ଟେଲେକ୍‌ଚୁଆଲ୍ ଜୀବନ-ପ୍ରଣାଳୀରେ ଏଥିରୁ ଯେମିତି ପାନ ମସଲାର ସୁଆଦ ମିଳୁଛି । 'ପରମ ତେଲୁଆ' ବୋଲି ନିନ୍ଦୁକମାନେ କହୁଥିବା ଦଳ ହିଁ ହେଲେ ଚତୁର୍ଥ ବର୍ଗ । କେବଳ ବ୍ୟାକରଣିକ ଅର୍ଥରେ ନୁହେଁ, ବ୍ୟବହାର କ୍ଷେତ୍ରରେ ଏଇ ଇଲାକାଟିକୁ ଅପର୍ଯ୍ୟାପ୍ତ ପରିମାଣରେ ସେଇମାନେ ଦଖଲ କରି ନେଇଛନ୍ତି । ଜଣେ ହାକିମ ମନ୍ତ୍ରୀଙ୍କୁ କହିଲେ, "ସାର୍, ଅମୁକ ଇସୁଟା ଆପଣ ଯେମିତି କାଇଦା କରି ଟ୍ୟାକେଲ୍ କଲେ ନା···", ଶୁଣି ମନେହେଉଥିଲା, କାଳେ କହି ବାକ୍ୟ ଶେଷ କରିବେ କି—ସିନ୍ଧୁ ସଭ୍ୟତାଠାରୁ ଆଜି ପର୍ଯ୍ୟନ୍ତ କେହି ସେମିତି କରିପାରିନାହାନ୍ତି ବା ତୃତୀୟ ବିଶ୍ୱଯୁଦ୍ଧ ପର୍ଯ୍ୟନ୍ତ କେହି କରିପାରିବେ ନାହିଁ ? ନା, ତାହା ହେଲାନାହିଁ । କାରଣ ସାର୍ ଟିକେ ହସିଦେଲେ, ଇସାରା କାଫି ହୋଇଗଲା । ସେଇଠିଥିବା ବଗୁଲିଆ ରଜାମିଡିଆ ଟୋକାଟେ କହିଦେଲା —ଏକଥା ତେର ଜିଲ୍ଲାର ଯେତେ ଅଫିସର୍ ସରକାରୀ ଟି. ଏ. ନେଇ

ମନ୍ତ୍ରୀଙ୍କୁ ତାଙ୍କ ଘରେ ଦେଖାକରି କହି ଆସିପାରିବେଣି । ଆପଣ ବହୁତ ତେଜ କରିଦେଲେ, ଆଜ୍ଞା । ଯେହେତୁ ଅନେ ସେ ଶିବଙ୍କର ସାପ, ନ ହେଲେ କ'ଣ ଗରୁଡ଼ ଗୁଡ଼ଥା'ନ୍ତା ? 'ପୁଜସନ୍' ବି ଠିକ୍ ନଥିଲା । ଉପରକୁ ତେଲ ମାରୁଥିବାଲୋକ ତଳଆଡ଼ୁ ତେଲ ଆସିବ ବୋଲି ଆଶା କରିବା ମୋଟେ ଅସ୍ୱାଭାବିକ ନୁହେଁ । ନିକଟରେ କଲିକତାର ବେହେଲା ଅଞ୍ଚଳରେ ଭେଜାଲ ତେଲ ଯୋଗୁ ଯେଉଁ ମର୍ମନ୍ତୁଦ ଦୁର୍ଘଟଣା ଘଟିଥିଲା ତାହା ପାଠକମାନଙ୍କର ମନେଥିବ । ପୂର୍ବବର୍ଣ୍ଣିତ ତେଲମରା ବ୍ୟାପାରରେ ଯେ ସେପରି ଭେଜାଲ କାରବାର ନହେଉଥିବ, ସେ କଥା ନିଶ୍ଚିତ ରୂପେ କହିହେବ ନାହିଁ ।

ଆମ ସହରରେ ଜଣେ ଅଫିସର ଥା'ନ୍ତି । ତଳୁ ଉପରଯାଏ ସେ ସମସ୍ତଙ୍କ ପ୍ରିୟପାତ୍ର । ଏଫିସିଏଣ୍ଟ ଏଫିସିଏଣ୍ଟ ବୋଲି ଜୟ ଜୟକାର । ରହସ୍ୟ ମୋଟେ ବୁଝିହେଉ ନଥାଏ । କାରଣ ତଳେ ବିକ୍ଷୁବ୍ଧ ସମୁଦ୍ର ଓ ଉପରେ ନିଶ୍ଚଳ ତରଙ୍ଗ । ସର୍ପ ଧନଧରି ଏକଥା କେମିତି ସମ୍ଭବ ହେଉଛି ? ଯାହା ଜାଣୁଥାଉ, ଯାହା ଶୁଣୁଥାଉ ତାହା ବିଶ୍ୱାସ କରିବାକୁ ମନ ବଳିଲା ବେଳକୁ ତାଙ୍କ ସପକ୍ଷ ପ୍ରଶସ୍ତି ଆମକୁ ଚଣ୍ଡିଆ ମାରି ଦୂରକୁ ପେଲି ଦେଉଥାଏ । ଥରେ ଗୋଟିଏ ମଜାକଥା ନ ଘଟିଥିଲେ ବୋଧହୁଏ ଏ ଗପ ବି ଆମେ ଲେଖିପାରି ନଥା'ନ୍ତୁ ।

ତାଙ୍କ ପୁଅର ଗୋଟିଏ ନିର୍ଦ୍ଦିଷ୍ଟ ସାର୍ଟିଫିକେଟ୍ ଦରକାର ହେଲା ଯାହା ତାଙ୍କ ବିନା ଆଉ କେହି ଦେଇପାରିନଥା'ନ୍ତେ । ପୁଅଟି ବଗୁଲିଆ କନ୍ଥ ବାପାର ଦସ୍ତୁର ଜାଣେ । ସେ କ'ଣ କଲା ନା, ଜଣେ ଏଜେଣ୍ଟ ଜରିଆରେ ଟାଇପ୍ ହୋଇଥିବା ସେଇ ସାର୍ଟିଫିକେଟ୍ ସହ ଶହେ ଟଙ୍କିଆ ନୋଟ୍ ଖଣ୍ଡିଏ ପଠାଇଦେଲା । ସାହାବଙ୍କର ଦରକାର ଯାହାଥିଲା ତାକୁ ଭି'ରେ ପୂରାଇ ଦସ୍ତଖତ ମାରିଦେଲେ । ଏମିତି ଅନାବଶ୍ୟକ ଭାବେ ଆଖି ବୁଲାଉ ବୁଲାଉ ଦେଖିଲେ ପ୍ରାପ୍ତକାରୀର ନାଁ ଏସ୍. ଏନ୍. ଅମୁକ, ପିତାଙ୍କ ନାମ ବି. ଏନ୍. ଅମୁକ । ଗୁଣ୍ଡଟା ତାଙ୍କର ଟିକିଏ ଧକ୍‌କଲା । ତା'ପରେ ସେ ଭାବିଲେ ତିନିଲକ୍ଷରୁ ଊର୍ଦ୍ଧ୍ୱ ଲୋକସଂଖ୍ୟା ସହରରେ ଅକସ୍ମାତ ସଂଯୋଗରେ ନାଁ ଆଇପାରେ ହୁଏତ । ହେଲେ, ବଜାଣ୍ଟି ବାଳକଟି କଥାଟିକୁ ସ୍ପଷ୍ଟ କରିଦେଲା । ଏ ଘଟଣାଯୋଗୁ ତାଙ୍କର ପାରିବାରିକ ଅଶାନ୍ତି ହୋଇଥାଇପାରେ ମାତ୍ର ବୃତ୍ତିଗତ କ୍ଷତି କିଛି ହୋଇନାହିଁ ।

ଆମ କଥା ଏଠି ନାହିଁ । କଥାହେଲା, ବିଶେଷଣ ବା ବିଶେଷଣାତ୍ମକ ବ୍ୟକ୍ତିମାନଙ୍କ ଭୂମିକା କ'ଣ ? ଯେତେବେଳେ କେହି ନିଜର ପ୍ରେୟସୀକୁ କହେ, "ଜଗତରେ ମୋତେ ତୁମଠୁ ସୁନ୍ଦର କେହି ଦେଖାଯା'ନ୍ତି ନାହିଁ ।" ଯେତିକିବେଳେ ଲାଜରେ ହୋଇ ହେଉ ବା ଫୁଲେଇ ହେଇ ହେଉ ପ୍ରେୟସୀ କହେ, "ତୁମଠାରୁ ମିଛୁଆ ଏ ଜଗତରେ କେହି ନାହାନ୍ତି ।" ଏଇ ଉକ୍ତିଟିକୁ ତର୍ଜମା କରନ୍ତୁ ତ । ତ୍ରୁଟିତଳେ ସରଗ-ଗଜର ଫେଉଫେଉକା ଲହଡ଼ି ଭାଙ୍ଗୁଥିଲେ ବି ଅସଲ ମିଛ କହିଥାଏ ପ୍ରେୟସୀ । ଉନ୍ମାଦନାର ଅଳୀକ ସ୍ୱପ୍ନ ବା ତତ୍‌ସଂଲଗ୍ନ କଥାବାର୍ତ୍ତାର ବିସ୍ତା କୁଆଡ଼େ ଯିବ, ତାହା ଆମ ଆଲୋଚନାର ବିଷୟବସ୍ତୁ ମଧ୍ୟ ନୁହେଁ । ଆମେ ବିଶେଷଣ ଖୋଜୁଛୁ । ପ୍ରୟୋଗକାରୀମାନଙ୍କୁ ଖୋଜୁଛୁ ।

ବ୍ୟାକରଣର କଠୋରତା ଅନୁଯାୟୀ ବିଶେଷଣ ବିଶେଷ୍ୟକୁ ଅନୁଗମନ କରିବା କଥା । ବେଳେବେଳେ ନିଜର ଓ ବିଶେଷ୍ୟର ଶୋଭା-ବର୍ଦ୍ଧନ ପାଇଁ ନିଜ ଜାତିର କାହାକୁ କେମିତି ସାଙ୍ଗରେ ନେଇପାରେ । ଯେମିତି ଷଣ୍ଢ, ଷଣ୍ଢର ଚୂଳ ଓ ଚୂଳପାଇଁ ସଜା ହୋଇଥାଏ ଯଦି ଗୋଟିଏ ମୁକୁଟ । ବିଶେଷଣ ହଜିଗଲେ ବିଶେଷ୍ୟର ସ୍ଥିତି ଲୋପ ହୋଇ ନଥାଏ, ଆମ ଧାରଣାର ପ୍ରଚଣ୍ଡତା କେବଳ ଟିକିଏ ଊଣା ଜଣାପଡ଼େ । ଆମେ ଆଜ ଯାହା ଦେଖୁଛୁ ବିଶେଷ୍ୟଗୁଡ଼ିକ ଏମିତି ବିଶେଷଣମାନଙ୍କ ଗହଣରେ ହଜିଯାଉଛନ୍ତି ଯେ ଚେଷ୍ଟାକଲେ ମଧ୍ୟ ସେଗୁଡ଼ିକଙ୍କ ସନ୍ଧାନ ମିଳୁନାହିଁ । ଯୋଜନାରେ ଅର୍ଥ ବରାଦ ଏବଂ ଉପକୃତ ହେବାପାଇଁ ଥିବା ଉଦ୍ଦିଷ୍ଟ ବ୍ୟକ୍ତିମାନେ ହେଲେ ବିଶେଷ୍ୟ । ବିଶେଷଣ କିଏ ତାହା ପାଠକମାନେ ଅନୁମାନ କରନ୍ତୁ ବୋଲି ଛାଡ଼ିଦେଲି ।

ବୁକାଧରେ ଥାଇ ମଉନରେ ଖାଇ/ ହାଣ୍ଡିକ ତେନ୍ତୁଳ ସଇଲା । ମାହାନ୍ତି ସାଇରେ ହୁରି ପଡ଼ିଅଛି/ ଚତୁରୀ କୋଉଠି ରହିଲା । ସବାଆଗେ ଯେଉଁ ସ୍ୱର କସମର ମଣିଷଙ୍କ କଥା ବର୍ଣ୍ଣନା କରାଯାଇଛି, ଆମର ସନ୍ଦେହ ହେଉଛି, ସେମାନଙ୍କ ଭିତରୁ ଚତୁର୍ଥ ବର୍ଗଟି ଗୋଟାଏ ବିରାଟ ସମବାୟ-ସମିତି କରିଦେଇଛନ୍ତି । ନିଜେ ଚତୁରୀ ପରି ଛପିଯାଇ ବିଶେଷ୍ୟଗୁଡ଼ିକୁ ଗୋପ୍ୟ କରି ଦେଉଛନ୍ତି । ଆମେ ଦେଖୁଛୁ, ବିଶେଷଣର ଫାଇଲ୍‌ଗୃଷ ।



# ଛୁ' ମନ୍ତର

ହରପାବଣ ଯାଇଥିଲେ ଝାଟିକାଟି
ତେଣୁ ଆଣିଲେ ହାତ କାଟି
ଛୁଡ଼ ଛୁଡ଼ ବୋଲ କାହାର ଆଜ୍ଞା
କାଉଁରିକାମାକ୍ଷୀ ଚଣ୍ଡୀର ଆଜ୍ଞା

ନଶୁଣିଥିବା କଥା ଶୁଣିସାରିବା ପରେ ତହିଁରୁ ଅର୍ଥ ଉଣ୍ଡାଳିବା ଠିକ୍ ନୁହେଁ । ଉପରଟି ଏକ ଗୁପ୍ତ-ମନ୍ତ୍ର । କେବଳ ଶିଷ୍ୟ / ଶିଷ୍ୟା 'ଡିଆରି' ବ୍ୟତୀତ ଗୁରୁମାନେ ଆଉ କାହାରିକୁ କହନ୍ତି ନାହିଁ । ଆନୁଷଙ୍ଗିକ ଉପଚାର ସହ ଏହାକୁ ଏପରି ଅର୍ଦ୍ଧ-ଅନୁଚ୍ଚାରିତ ସ୍ୱର, କୌଶଳ ଓ ଷ୍ଟାଇଲ୍‌ରେ ପଢ଼ାଯାଏ ଯେ ତହିଁର ପ୍ରକୋପରେ ସବୁ କ୍ୟାଟେଗୋରିର ଭୂତ, ପ୍ରେତ, ଡାହାଣୀ, ପିଶୁଣୁଣୀ, ଚଣ୍ଡୀଠାରୁ ଆରମ୍ଭ କରି ମଣିଷକୁ ଅକଡ଼େଇଥିବା ଦେହର ରୋଗ ପର୍ଯ୍ୟନ୍ତ ଝାଡ଼ ହୋଇଯା'ନ୍ତି । ଏପରି ଝଡ଼ାଝଡ଼ି କରୁଥିବା ଲୋକମାନଙ୍କୁ ସାଧୁଶବ୍ଦରେ ତାନ୍ତ୍ରିକ ବା ଗାଉଁଲିଭାବେ ଓ ସମ୍ଭବତଃ ନ୍ୟୂନମତେ ଗୁଣିଆ କୁହାଯାଏ । 'ନ୍ୟୂନମତେ' ବୋଲି ଏଇଥିପାଇଁ କହିଲୁ ଯେ ପ୍ରତ୍ୟେକ ଗୁଣିଆ ନିଜକୁ ତାନ୍ତ୍ରିକ କହି ଗୌରବାନ୍ୱିତ ମଣନ୍ତି ।

ମେକ୍ସିଆନ୍‌ମାନେ ଉଚ୍ଚାରଣ କରୁଥିବା ଅବୋଧ୍ୟ ଶବ୍ଦପୁଞ୍ଜ, ଯଥା—ଇଲ୍ଲାକଲଲ୍ଲଲଗିଲ (ପି. ସି. ସରକାର) ବା ଇଂରାଜୀରେ abracadabra ଆଦିକୁ ସେମାନେ ମନ୍ତ୍ର ବୋଲି ଦାବିକରନ୍ତି ନାହିଁ । ମେଜିକ୍ ସୋ'ରେ ଦର୍ଶକମାନଙ୍କୁ ଭୁଲୁଆ କରିବା ପାଇଁ ବିଭିନ୍ନ କୌଶଳର ଆଶ୍ରୟ ନେବାକୁ ପଡ଼ିଥାଏ, ଏକଥା ସେମାନେ ମନା କରନ୍ତି ନାହିଁ ମଧ୍ୟ । ଆମ ଦେଶରେ ବାରି ହେଉଥିବା ପରି ମାତ୍ର ତିନୋଟି ଗୋଷ୍ଠୀ ଯେଉଁମାନଙ୍କ ସ୍ୱ-ଡିକ୍ସିନାରିରେ କିଛି ଅସାଧ୍ୟ ନୁହେଁ । ସେମାନେ ହେଲେ— ପେଷାଦାର ରାଜମାନ୍ତିଆ ଲୋକେ, ଓକିଲ ଓ ଗୁଣିଆ । କେହି ଯଦି ଦାବି-କରନ୍ତି ଯେ କୌଣସି ରାଜମାନ୍ତିଆ ଲୋକ କହୁଛି, 'ମୋ ହାତ ଏ ସମସ୍ୟାର

ସମାଧାନ ହୋଇପାରିବ ନାହିଁ’ ବା କୌଣସି ଓକିଲ କହୁଛି, ‘ନା ବାବା, ମୁଁ ଏ କେଶ୍‌ରେ ତୁମକୁ ଜିତାଇ ପାରିବିନାହିଁ’, ତା’ହେଲେ ହେମଙ୍କୁ ସୋ’ର ଦର୍ଶକ ମୋତେ ମିଳିଗଲେ । ଖୋଜିବା ଦରକାର ନାହିଁ । ଗୁଣିଆଙ୍କ ମାମଲା ଏହାଠାରୁ ଢ଼େ’ପାହୁଣ୍ଡ ଅଧିକ । ଆମ ଗାଁ ମୁଣ୍ଡ ନେଳିଣ ପଡ଼ିଆରେ ବହୁବର୍ଷ ପୂର୍ବେ ଗୋଟାଏ ବାଳମୁକୁଳି ପିମ୍ପୁଡ଼ି କୁଆଁଡ଼ି ମାଡ଼ିଥିଲା । ଅଞ୍ଚଳର ତିନି ଜଣ ଗୁଣିଆ ଏକ ସମୟରେ ଦର୍ପମୟ ହୋଇ ପ୍ରତ୍ୟେକ କହୁଥା’ନ୍ତି--ମୁଁ ତାକୁ ‘କିଳି’ ଦେଇଛି । ଯେଉଁ ଜଣକୁ ମଧ୍ୟ, ଅନ୍ୟ ଦୁଇଜଣଙ୍କ ସମାନ ଦାବି ବିଷୟରେ ପଚାରିଗଲେ ଚଟାପଟ୍ ଉତ୍ତର ମିଳେ—ଫୁଃ, ସେଗୁଡ଼ାକ ଗୁଣିଆ, ମୁଁ ଏକା ତାନ୍ତ୍ରିକ । ସେତେବେଳେ ନିଜର ବୟସ ଅତି କମ୍ ଥିବାରୁ ଏସବୁ କଥାକୁ ଗହନ ତତ୍ତ୍ୱ ବୋଲି ବିଚାରୁଥିଲୁ । ମାତ୍ର ସନ୍ଦେହାଚ୍ଛନ୍ନ ହୋଇ ନବୁଝିବା ଶ୍ରେୟ ମଣୁଥିଲୁ । ଏବେ ବୟସର ସମସ୍ୟା ନାହିଁ କିନ୍ତୁ ତଥ୍ୟମାନ ଏତେ ଗହନ ହୋଇ-ପଡ଼ିନ୍ତି ଯେ ସେତେବେଳେ ମନ ଯେମିତି ଅବୁଝା ଥିଲା ଏବେ ବି ସେଇଆ । ଖାଲି ଯାହା ବୟସ ଗଡ଼ିଯାଇଛି ।

ଜଣେ ପରିଚିତ ଭଦ୍ରବ୍ୟକ୍ତିଙ୍କ ଘରେ ଦିନେ ବସିଥାଏ । ଘର ଭିତରପଟୁ ବାହାରି ମୋ ନିକଟରେ ବସିଥିବା ଗୃହସ୍ୱାମୀଙ୍କୁ ଜଣେ ପଚାରିଲେ ସେ ଇନ୍‌ସପେକ୍ଟର ଆସିଲା ନା ନାହିଁ ? ଏତିକି ପଚାରି ସେ ପୁଣି ଭିତରକୁ ଚାଲିଗଲେ । ଆମ ଦୁଇଜଣଙ୍କର କଥାବାର୍ତ୍ତା ଚାଲିଛି, ସେଇ ସମୟରେ କଥିତ ଇନ୍‌ସପେକ୍ଟର ଆସିଗଲେ । ଖବର ପାଇ ପୂର୍ବ ବାବୁ ଯେମିତି ପହଞ୍ଚିଲେ, ଇନ୍‌ସପେକ୍ଟର ନିଜ ସିଟ୍‌ରୁ ଉଠି ସାଲ୍ୟୁଟ୍ କରିଦେଲେ । ଏପର୍ଯ୍ୟନ୍ତ ମୋ ସନ୍ଦେହର କୌଣସି କାରଣ ନଥିଲା କିନ୍ତୁ ଇନ୍‌ସପେକ୍ଟର ଯେତେବେଳେ ତାଙ୍କ ସହିତ ଘର ଭିତରକୁ ଚାଲିଗଲେ ମୋ ପୂର୍ବ ଅନୁମାନ ଅସତ୍ୟ ବୋଲି ଭାବିବାକୁ ମୁଁ ବାଧ୍ୟ ହେଲି । ଆଗରୁ ଭାବିଥିଲି ହୁଏତ ବାବୁ ଜଣକ କୌଣସି ବଡ଼ ପୋଲିସ୍ ହାକିମ ହୋଇଥାଇ ପାରନ୍ତି ମାତ୍ର ସବ୍‌ଅର୍ଡ଼ିନେଟ୍‌ଙ୍କୁ ଘର ଭିତରକୁ ଡାକିବା ତ ସେମାନଙ୍କ ଜାତକରେ ନାହିଁ । ସନ୍ଦେହକୁ ମନରେ ରଖି କାରଣ ପୁଚ୍ଛା କରନ୍ତେ ଜାଣିଲୁ ସେ ଜଣେ ତାନ୍ତ୍ରିକ । ଏତେ କୁର୍ତ୍ତିସ, ଯା’ଙ୍କ ପାଖରେ ତାଙ୍କର କାମ କ’ଣ ? ଉତ୍ତର ମିଳିଲା—ପୋଷ୍ଟିଂ । ଇଏ କେମିତି ସେଥିରେ ସାହାଯ୍ୟ କରିପାରିବେ ? ବିଖ୍ୟାତ ତାନ୍ତ୍ରିକ । ତାଙ୍କ ହସ୍ତାନତ ଅତିଥିଙ୍କ

ସମ୍ପର୍କରେ ମୋର କୌତୁକ ଅନୁସନ୍ଧିତ୍ସା କାଳେ ଗୃହସ୍ୱାମୀଙ୍କୁ ଅପ୍ରସ୍ତୁତ କରିପାରେ ସେଥିପାଇଁ ଆମେ ଅନ୍ୟ ଟପିକ୍‌କୁ ପଳାଇଲୁ ।

Wizardry (ଗୁଣିଆ ବିଦ୍ୟା) ଓ Logic (ତର୍କଶାସ୍ତ୍ର) ମଧ୍ୟରେ ସମ୍ପର୍କ କ'ଣ ସେ କଥା ବିଚାରିବାକୁ ମଧ୍ୟ ଏ ଲେଖକର ତାକତ ନାହିଁ କାରଣ ଉଭୟର ସ୍ଥିତି ଖୋଳ ନିଆଁ, ଖୋଳ ପାଣି ପରି । କୋଉଥିରୁ କେଉଁଟି ବେଶି ହେଲେ ଆରଟି ନିପାତ ହୁଏ, ତାହା ତ ଇକ୍ୱେସନ୍‌ର କଥା । ଅବସ୍ଥା ଦେଖି ମନରେ ମାତ୍ର ଗୋଟିଏ ପ୍ରଶ୍ନ ଉଠୁଛି ଯେ ଏଇ ଗୁଣିଆ ବା ତାନ୍ତ୍ରିକମାନେ ସମସ୍ତଙ୍କଠାରୁ ଅଢ଼ଳ ନମ୍ବର ହେଲେ କେମିତି ? ରିଥିଆ ରିକ୍‌ସାବାଲାଠାରୁ ରାଜୀବ ଗାନ୍ଧୀଙ୍କ ପର୍ଯ୍ୟନ୍ତ ସମସ୍ତେ ସେଇମାନଙ୍କ ନିକଟରେ ବଶୀଭୂତ ହୋଇପଡ଼ୁଛନ୍ତି ବୋଲି ଶୁଣିବାକୁ ମିଳୁଛି । ଭୂତ, ପ୍ରେତ, ଡାହାଣୀ, ଚିରଗୁଣୀ ଆଦି ଅଦେଖା ହୋଇଥିବାରୁ ଗୁଣିଆମାନେ ସେଗୁଡ଼ିକୁ କିପରି 'କଳନ୍ତି' ତାହା ଜାଣିବା ଅସାଧ୍ୟ । କିନ୍ତୁ ବହୁ ବହୁ ମଣିଷ ଯେ 'କଳିତ' ହେଉଛନ୍ତି ଏକଥା ଦାଣ୍ଡରେ ପଡ଼ି ବାଟରେ ଗଡ଼ୁଛି ।

ଭୁଲ୍‌ଭଟକାରେ ତାନ୍ତ୍ରିକ କ୍ରିୟାକର୍ମକୁ କେହି କେହି ଧାର୍ମିକ ଆଚରଣ ବୋଲି କହନ୍ତି, କାରଣ ଠାକୁର-ଠାକୁରାଣୀଙ୍କ ନାଁ ତହିଁରେ ଯୋଡ଼ା ହୋଇଥାଏ । ଯୁକ୍ତି ଯଦି ଏଇଆ ହୁଏ, ଧର୍ଷଣ ବା ବେଶ୍ୟାବୃତ୍ତିକୁ ପ୍ରେମ କହିଲେ ଚଳିବ । ପରସ୍ପରକୁ ପାଇଁବାପାଇଁ ଦୁଇଟି ମନର ଶୋଷ ବ୍ୟତୀତ ବାକି ସବୁକଥା ଏଥିରେ ଥାଏ । ସତ-ଧର୍ମ ଓ ସତ-ପ୍ରେମର ଭାବପ୍ରବଣତା ମଣିଷ ମନରେ ଆଗ୍ନେୟଗିରିର ଉଦ୍‌ଗିରଣଠାରୁ କମ୍ ଲେଲିହାନ ଲମ୍ଫ ଡାଳେନା; କମ୍ ଭୟାନକ ରୂପ ନେଇ ଉଭା ହୁଏନା । ଉପରେ ଯାହା ଆଲୋଚନା କରାଯାଇଛି—ଯଥା : ପଦବୀ, ପ୍ରମୋସନ, ପୋଷ୍ଟିଂ ଇତ୍ୟାଦି—ଇଏତ ସବୁ ଛ' ଅଣା ଦି' ପଇସିଆ ମାମଲା ।

ଯାହାହେଉ, ତନ୍ତ୍ରର ତାତ୍ତ୍ୱିକ ଦିଗକୁ ଆଜି ଯୁଗରେ ଫିଟ୍ କରାଇ 'ସାଧନା'କୁ ଅକ୍ଷତ ରଖିବାକୁ ହେଲେ 'ପଞ୍ଚମ-କାର'ର ନୂତନ ବିଶ୍ଳେଷଣ ଦରକାର, ନୂତନ ସଂଜ୍ଞା ଦରକାର । ତଦନୁଯାୟୀ ତାହା ଯଦି କିମ୍ଭୂତପ୍ରକାର ହୁଅନ୍ତା, କାହାକୁ କେମିତି ଲାଗିବ କେଜାଣି ! ମନ୍ତ୍ର (ମନ୍ତ୍ରୀ ଅର୍ଥରେ), ମଦମାଲ୍ (ଟଙ୍କା ଅର୍ଥରେ), ମାଂସ ଓ ମହିଳା ।

# ଗୋବିନ୍ଦଙ୍କ ଗପ

ସନାତନୀମାନେ ଯେପରି ବ୍ୟାଖ୍ୟା କରୁଥାନ୍ତୁ ନା କାହିଁକି, ଗୋବିନ୍ଦ ନାମକ ସତ୍ତ୍ୱଙ୍କୁ ଉପଲବ୍ଧ କରିବା କେବଳ ପ୍ରଜ୍ଞା-ପ୍ରସୂତ ନୁହେଁ, ମତଲବ-ସଂଲଗ୍ନ । ଏକଥା ପାଇଁ ଆଉ କାହାର ସାର୍ଟିଫିକେଟ୍ ଦରକାର ନାହିଁ କାରଣ ଖୋଦ୍ ଗୋବିନ୍ଦ କହିଛନ୍ତି : ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍/ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ (ଶ୍ରୀମଦ୍ଭଗବଦ୍‌ଗୀତା ଅଧ୍ୟାୟ-୪, ଶ୍ଳୋକ-୧୧) । ଦଶାବତାରରେ ଗୋବିନ୍ଦ କ'ଣ ନ ହୋଇଛନ୍ତି ? ମାଛ, କଇଁଛ, ଘୁଷୁରି ପରି ଇତର ରୂପ ଗ୍ରହଣ କରି ନେଇଛନ୍ତି ସେ କେବଳ ଭକ୍ତମାନଙ୍କ ନିମନ୍ତେ । ସେ ୟୁନିଭର୍ସାଲ୍, ତାଙ୍କୁ ଅଣ୍ଡର୍-ଏଷ୍ଟିମେଟ୍ କରନାହିଁ ।

ଆମ ସମାଜରେ ଏମିତି କେତେକ ଲୋକ ଅଛନ୍ତି ଯେଉଁମାନେ ସଂସାର-ଜଞ୍ଜାଳରେ ନିଜ ମନକୁ ବାନ୍ଧିଗଲି ନ କରି ସର୍ଟକଟ୍‌ରେ ବାବାଜି ହୋଇଯାଆନ୍ତି । ସେମିତିକା ଜଣେ ବାବାଜିଙ୍କ କଥା । ଆସକ୍ତିରୁ ନିବୃତ୍ତି ପାଇନାହାନ୍ତି । ତାହା ତାଙ୍କର ଅଭିଳାଷ ମଧ୍ୟ ନୁହେଁ । ଯାହା ଖାଲି ବଦଳିଯାଇଛି ତାହା ହେଲା ଭେକ ଓ ଆନୁଷଙ୍ଗିକ ବ୍ୟବହାରଗୁଡ଼ିକ । ଗାଁ ଗାଁ ବୁଲି ମୋଫତ୍ ଆହାର, ସନ୍ଧ୍ୟା ହେଲେ ଆଶ୍ରମକୁ ଫେରି ଧୂନି ଜଳେଇ ଗରମ ଟାଣିବା ସାଙ୍ଗକୁ ଗଞ୍ଜା ଧୂଆଁର ଚିଲମ-ଆରତି । ଆଃ, ଗୋବିନ୍ଦ ଆଉ ଥା'ନ୍ତି କୋଉଠି କି !

ସେଇ ବାବାଜି । ଦିନେ ଧୁମ୍‌ଧାମା ଖରାବେଳେ ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଯାଉଥା'ନ୍ତି । ବାଟରେ ପୋଖରୀଟିଏ ପଡ଼ିଲା । ହୁଡ଼ାରେ ବହୁତ ଜାଲ-ଝଙ୍ଗା ଚିହ୍ନ । ମାଛ ଧରାଳିମାନେ ସ୍ୱାଭାବିକ ଭାବେ ଗେଣ୍ଡା, କଙ୍କଡ଼ା ଗୁଡ଼ଉଯାଇଛନ୍ତି । ସେଗୁଡ଼ାକ ପଙ୍କରେ ଲଟପଟ ହେଉଥା'ନ୍ତି । ବାବାଜି କନ୍‌କନ୍ ଚାହିଁ ଚାରିଆଡ଼କୁ ଅନେଇଲେ । ଭଲ ହୋଇଛି, କେହି କୋଉଠି ଦେଖା ଯାଉନାହାନ୍ତି । ସେ ହୁଡ଼ା ସାରା ବୁଲିବୁଲି କଙ୍କଡ଼ା ସବୁ ଗୋଟେଇ ନିଜ ଥଳିରେ ପୂରାଇଲେ । ଥଳିରୁ

ଗାମୁଛା ଖଣ୍ଡିକ କାଢ଼ି କାନ୍ଧରେ ପକେଇ, ଖଣ୍ଡେ ବାଣି ଯୋଗାଡ଼ କରି ଥଳର ମୁହଁଟିକୁ ବାନ୍ଧିଦେଲେ । ମାଛଖିଆ ବଲେଇ ନାପ୍‌କିନ୍‌ରେ ମୁହଁ ପୋଛୁ ଚତୁର ରୂପେ ବୈଷ୍ଣବ ସାଜିଲେ ଯେମିତି ଦେଖାଯା'ନ୍ତା, ବାଆଜି ଆମର ଯେମିତି ହୋଇ ଚାଲିଲେ ଗାଁ ଅଭିମୁଖେ । ଦୃଶ୍ୟମାନ ହେବା ପ୍ରଥମ ଭକ୍ତ ନିବେଦନ କଲା—ମାହାରାଜେ, ଆମ ଘରେ ଭୋଜନ ଦିଓଟି ହେଉ ?

—ହଉ ବାବା, ସବୁ ଗୋବିନ୍ଦଙ୍କ ଇଚ୍ଛା । ବ୍ୟଞ୍ଜନ ଆମିଷ-ସ୍ପର୍ଶ ହୋଇନାହିଁ ତ ବାପା ?

—ନାଇଁ, ମାହାରଜେ ।

—ହଉ, ଚାଲ । ଏତିକ କହି ବାଆଜି ଚାଲିଲେ । ଘରେ ପ୍ରଣାମ, ଆଦର, ଅଭ୍ୟର୍ଥନା ସବୁ ମିଳିବା ପରେ ଭୋଜନ ପାଇଁ ଆସନ ପଡ଼ିଲା । ହାତ ମୁହଁ ଧୋଇ, ହ'ଗୁରି ପଦ ଗୁଣୁଗୁଣୁ ମନ୍ତ୍ର ଗାଇ, ଖାଦ୍ୟ ସହ ନିଜକୁ ପାଣି ଛଟେଇ, ବିବିଧ ପ୍ରକାର ହଟରମଟ କରି ସେ ଖାଇ ବସିଲେ । ଖାଇବା ଅଧାସରିକି ହେଲାଣି, ଅଦୂରରେ ଥିବା ବାଆଜିଙ୍କ 'ବେଏଗ୍'ଟି ହଲ୍‌ଚଲ୍ ହେବା ଦେଖି ପରିବାରର ଜଣେ କୌତୂହଳୀ ବ୍ୟକ୍ତି ବାଆଜିଙ୍କୁ ସେଇ ସୂଚନା ଦିଅନ୍ତେ ସେ ସାମାନ୍ୟ ଅପ୍ରତିଭ ହୋଇ-ଗଲେ ମାତ୍ର ଉଦ୍‌ଗୀର୍ଣ୍ଣ ସ୍ୱରତ୍ ତାଙ୍କ ଜିଭ ଆଗରେ ହଲ୍‌ହଲ ହେଲା । ସେ କହିଲେ—ଦେଖ ହୋ ଗୋବିନ୍ଦଙ୍କ ଗଡ/ମୁଣି ପେଲିଣ ଚାଲିଛନ୍ତି ।

ଏଇ କଥାଟି ଏମିତି ଦାବାନଳ ପରି ବ୍ୟାପିଗଲା ଯେ, ବାଆଜିଙ୍କ ଭୋଜନ ସରିଲା ବେଳକୁ ଗାଁଟା ସାରା ମିଣିପେ ମାଈପେ ମୁଣିକୁ ମୁଣ୍ଡିଆ ମାରିବାରେ ଲାଗିଛନ୍ତି । ବାଆଜିଙ୍କ ମନ ଭିତରୁ ଶୁଖିଲା ତାଳପତ୍ର ପରି ଧୁଡ଼୍‌ଧୁଡ଼୍ ହେଉଥିବା 'ହଲଚଲ୍' ଅପସରି ଯାଇ ସେଇ ଜାଗାରେ ଗୋଟେ ପ୍ରକାର ଆଧିଭୌତିକ ପ୍ରତ୍ୟୟ ଆସନ ମାଡ଼ି ବସିଲାଣି । ଭକ୍ତମାନେ 'ବେଏଗ୍'କୁ ମୁଣ୍ଡିଆ ମାରୁଥା'ନ୍ତି ବାଆଜିଙ୍କୁ ମୁଣ୍ଡିଆ ମାରୁଥା'ନ୍ତି, ପୁଣି 'ବେଏଗ୍'କୁ ମୁଣ୍ଡିଆ ମାରୁଥା'ନ୍ତି ବାଆଜିଙ୍କୁ ମୁଣ୍ଡିଆ ମାରୁଥା'ନ୍ତି । ଏହି ଲୀଳା ଚାଲିଥାଏ ।

ଏହା ପରର ଘଟଣାଟି ନିହାତି ଅସଭ୍ୟ, ଅସମ୍ଭାବ୍ୟ ଏବଂ ଅସ୍ପୃହଣୀୟ ହୋଇପଡ଼ିଲା । ଗୋଟାଏ କାଳି ବଲେଇ କୋଉଠୁ ଆସି ମୁଣିଟାକୁ ଝୁଣିଦେଲା । ଏପରି ଅପ୍ରତ୍ୟାଶିତ ବିପଦ ଆସିପାରେ, ଏକଥା

ତ ବାଆଜ ଭାବ ନଥିଲେ । ମୁଣି ମୁହିଁ ଟାଇଟ୍ କରି ସେ କାହିଁକି ବା ବାନ୍ଧଥା'ନ୍ତେ ? ହଠାତ ଏପରି ନିର୍ଲଜ୍ଜ ଆକ୍ରମଣରେ ମୁଣିରୁ ବାହାରି କଙ୍କଡ଼ାଗୁଡ଼ିକ ଛୁଟିକି ହୋଇ ପଡ଼ିଲେ । କଙ୍କଡ଼ାର ଆଗଗୋଡ଼ିକୁ ନଡରେ କିଏ ? ଲୋକଙ୍କ ଭିତରେ ଟିକିଏ କୋଳାହଳ ହୋଇଗଲା । ସେଇ ସୁଯୋଗ ନେଇ ବାଆଜ ଯେ ସ୍ଲିପ୍ ମାରିଛନ୍ତି ତାଙ୍କ ଆଶ୍ରମ ଟକାଏଛି, ସେଇ ଅଞ୍ଚଳରୁ ପୂର୍ବ ସେ ଉଭାନ ହୋଇଗଲେ ।

ଡାଫେନ୍ସଲେସ୍ ବ୍ୟକ୍ତିଙ୍କୁ ଆକ୍ରମଣ କରିବା ଆମ ପାଇକଧର୍ମ କହୁନାହିଁ । ଆମ କାହାଣୀର ବାଆଜ ସେହିପରି ଏକ ଡାଫେନ୍ସଲେସ୍ ବ୍ୟକ୍ତିତ୍ୱ । କିନ୍ତୁ ବାଆଜଙ୍କ ପରି ବହୁ ବେହେଲ ଆମ ସମାଜର ଭିନ୍ନ ଭିନ୍ନ ସ୍ଥାନରେ ଥାନପତି, କୁନଥାନପତି ଓ ହମାନ୍ୱୟେ କୁନତର, କୁନତମ ଆଦି ଆସନ ମାଡ଼ିବସିଛନ୍ତି । କେହି କୌଣସି ଆସନରେ ବସିବା ଆପତ୍ତିଜନକ ନୁହେଁ; ମାତ୍ର ସେମାନେ ଲାଠି, ତଲୁଆର ଦେଖେଇ କଙ୍କଡ଼ା-ମାନଙ୍କୁ ଗୋବିନ୍ଦ ବୋଲି ଯେ ଦଣ୍ଡବତ କରିବାକୁ ଆମମାନଙ୍କୁ ବାଧ କରୁଛନ୍ତି, ତାହା ହିଁ ଆପତ୍ତିଜନକ ।

ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଭାଗ ନେଇଥିଲେ ଦେଶ ସ୍ୱାଧୀନ ହେବା ପରେ ସେମାନେ ସ୍ପଷ୍ଟ ତିନି ଭାଗରେ ବିଭକ୍ତ ହୋଇ-ଗଲେ । ବୃହତ୍ ସଂଖ୍ୟକ ଗୋଟିଏ ଭାଗ ଯେଉଁ ଗାଁଗଣ୍ଡା ବା ଯେଉଁ ବୃତ୍ତିରୁ ଆସିଥିଲେ ସେଇଠାକୁ ଫେରିଗଲେ । ସେମାନଙ୍କ ମନରେ କୌଣସି ପ୍ରାପ୍ତିର ଲୋଭ ନଥିଲା ବା ସେମାନେ ଖୁରି ଖାଇ ହେଲେ ନାହିଁ ।

ଆଉ ଗୋଟିଏ ଭାଗ ସୁଯୋଗ ପାଇ ହେଉ ବା ସୁଯୋଗ ଯୋଗାଡ଼ କରି ହେଉ, ଦେଶ ଗଠନରେ ମନଦେଲେ । ସର୍ବଶେଷ ଦଳଟି 'ସଂଗ୍ରାମ'ର ସାର୍ଟିଫିକେଟ୍ ଧରି ବୁଲିଲେ । ଗୃନ୍ସ ପାଇଲେ ଶାସକ, ଗୃନ୍ସ ନ ପାଇଲେ ବିରୋଧୀ ଦଳ । ଏଇ ଦଳଟି ବେଶି ଗୋବିନ୍ଦଙ୍କୁ ସ୍ମରଣ କରନ୍ତି, ହାକିମତି ଦେଖେଇ ସମସ୍ତଙ୍କଠାରୁ ଦଣ୍ଡବତ ଆଦାୟ କରନ୍ତି । ଏଇମାନଙ୍କ ପାଇଁ ଗୋବିନ୍ଦ ସାକାର ରୂପେ ଉଭା ହୋଇଛନ୍ତି ଯେମିତି । କାରଣ ଅବାଧ କସମର ବଟଲଇମାନଙ୍କର ବି ଦର୍ଶନ ନାହିଁ ।



# ଭାଉଚର ଦପ୍ତର

କାମନା ବିନା ଯୌବନ ସମ୍ଭବ ହୋଇପାରେ, ମିଥ୍ୟା ପ୍ରତିଶ୍ରୁତି ବିନା ରାଜନୀତି ସମ୍ଭବ ହୋଇପାରେ, ଆଦୌ ମିଛ ନ ଲେଖି ଖବରକାଗଜ ପ୍ରକାଶ କରିବା ସମ୍ଭବ ହୋଇପାରେ, ବାହାସ୍ଫୋଟ ନଥାଇ ଠାଉଟେରି କରିବା ସମ୍ଭବ ହୋଇପାରେ, ଆଶା ନଥାଇ ଲଟେରି ଟିକେଟ କିଣିବା ସମ୍ଭବ ହୋଇପାରେ, ଏପରିକି ଧୂଳି ନଥାଇ ଝଡ଼ ଓ ମଳୟ ନଥାଇ ବସନ୍ତ ସମ୍ଭବ ହୋଇପାରେ—ମାତ୍ର, ବିଦ୍ୟାରାଣ ପକାଇ କହୁଛି, ଭାଉଚର ବିନା ସରକାରୀ, ଅର୍ଦ୍ଧସରକାରୀ ଦପ୍ତର ଆଦୌ ସମ୍ଭବ ନୁହେଁ । ପୁନଶ୍ଚ, ଏପରି ଭାଉଚରମାନେ ଗଳାରେ ରୁଦ୍ରାକ୍ଷମାଳା ପକାଇ ଫାଇଲ୍‌ର ଗମ୍ଭୀରି ଭିତରେ ନିଷ୍ଠା-କାର୍ତ୍ତିକ ପାଳନ କରୁଥିବା ପରି ପ୍ରତ୍ୟୟମାନ ହେଉଥିଲେ ମଧ୍ୟ ପବିତ୍ରତାରେ ଖୁଣ ଲାଗିଯାଏ । ତେଣୁ ଦୋଗୁରୁଣୀକୁ ପତିବ୍ରତା କହିବା ଯାହା ଏପରି ଭାଉଚରର ସତ୍ୟତା ମଧ୍ୟ ସେଇଆ ।

କେତେକ ନିର୍ମମ ଉକ୍ତି ବୟାନ କରିବାକୁ ଯାଉଛୁ ଏବଂ ଏତଦ୍ୱାରା କେହି ଆଘାତ ପାଇବେ ନାହିଁ—ଏପରି ଅସମ୍ଭବ ଆଶାପୋଷଣ କରିବା ସମ୍ଭବ ନୁହେଁ । ସୌଜନ୍ୟତା ଉପଲକ୍ଷେ ଦୁଃଖ ମଧ୍ୟ ପ୍ରକାଶ କରୁନାହୁଁ ।

କଥାହେଲା, ଆମ ସହର କୁଆଡ଼େ ଆୟତନ ଏବଂ ଲୋକସଂଖ୍ୟା ଦୃଷ୍ଟିରୁ ରାଜ୍ୟର ସବୁଠାରୁ ବଡ଼ ସହର । ସରକାରଙ୍କ ଅପ୍ରମେୟ ବାତୁଳତା ବେଶି ଏକା ଏଇଠି ଏକ୍ସପେରିମେଣ୍ଟ କରାଯାଏ କାରଣ ସବୁ ପାପ ପାଇଁ ଏଠାକାର ମାଟି ଉର୍ବର ତଥା ପାଣିପାଗ ଓ ଜଳବାୟୁ ଉପଯୋଗୀ । 'ସଚେତନ' ଜନସାଧାରଣ ସବୁକଥା ପାଇଁ ପରାଙ୍ମୁଖ । ବହୁଭାଷୀ ( Cosmopolitan ) ବୋଲି କୁହାଯାଉଥିବା ଏହି ସହରଟିରେ ଆଉ କିଛି ଥାଉ ନଥାଉ, ସବୁ ପ୍ରାନ୍ତର ଝାରୁତା ଦେଣନେଣ ହୋଇ ପ୍ରତି ମଣିଷ ଇଣ୍ଟରନେସ୍‌ନାଲ୍ କାଓ୍ୱାର୍ଡ଼ ଆସୋସିଏସନ୍‌ର ଆଜୀବନ ସଭ୍ୟ ହୋଇଯାଇଛନ୍ତି । ଗୋଟିଏ ଉଦାହରଣ ଦେଲେ

ଯଥେଷ୍ଟ ନୁହେଁ । ନିଜକୁ ଚଲିବ୍ ଦେଉଥିବା ତାଡ଼ନାରେ ସର୍ବସାଧାରଣ ପାଇଖାନା କେଉଁଠି ଅଛି ବୋଲି ଜାଣିବାପାଇଁ ଡ୍ରେସ୍ ପିନ୍ଧିଥିବା ପୋଲିସ୍ କନେଷ୍ଟବଲ୍ ସହ ଅତର୍କିଆ ମୋ ପାଖରେ ସାଇକେଲ୍ ଅଟକାଇ ଦିଏ, ବିଶ୍ୱାସ କରନ୍ତୁ, ମୁଁ ଧଡ଼୍‌କରି ତାକୁ ପାଞ୍ଚଦଶ ଟଙ୍କା ଦେଇଦେବି । ଆମର ଏଠି କଥା ଅଛି—ଆମକୁ ଯିଏ ଠକି ନ ପାରେ ସିଏ ଆମଠାରୁ ବେଶି ବୋକା । ତେଣୁ 'ଇକୋଲୋଜିକ ବାଲାନ୍‌ସ' ପାଇଁ ସେଭଳି କେତେକ ଅଛନ୍ତି, ଉଭୟନ୍ତି ଅବଶ୍ୟ ।

ସେଇ ସହରର ଦୁଇଟିରୁ ଗୋଟିଏ ଏନ୍. ଏ. ସି. । କୁହାଯାଏ, ସ୍ୱାୟତ୍ତ ଶାସନ ବ୍ୟବସ୍ଥା । ବାସ୍ତବିକ, ବହୁକାଳରୁ ତାହା କାହାରି ଆୟତ୍ତରେ ନାହିଁ । ଚଢ଼େଇ ନୁହେଁ ଯେ ମୁକ୍ତ ଆକାଶର ପ୍ରଲୁବ୍‌ଧ ମାଳମା ଦେଖି ଉଡ଼ିଯିବ । କୁହାଯାଇପାରେ—ଅସଭ୍ୟ ଅସରପାଟାଏ, ମଇଳା ଭିତରେ ଲଟରପଟର ହେଉଥାଏ । ଗଳିପଡ଼ିବାର ନିର୍ଣ୍ଣିତତା ଜାଣି ମଧ୍ୟ ଉଡ଼ିବାର ବାହାନା କରେ । ସ୍ୱାୟତ୍ତ ଶାସନ କି ନା । ଭାରତର ଦପ୍ତରର ଉତ୍କୃଷ୍ଟ ଉଦାହରଣ ନିମନ୍ତେ ଏହି ସ୍ଥାନର ନାଁ ଆମେ ଉଲ୍ଲେଖ କଲୁ ।

ପାଞ୍ଜିରେ ଗ୍ରହ ଚଳନ ପଛେ ଭୁଲ ହୋଇଯିବ କିନ୍ତୁ ଏହି ଦପ୍ତର ଭିତରକୁ ସବୁ ଋତୁ ପଶେ ଝିମିଝିମି ଠର୍‌ଗଠାରୁ ହୁଇସ୍କି ପର୍ଯ୍ୟନ୍ତ ମଦର ଠିଣ୍ଟିଣ୍ଟ ଶବ୍ଦ ଓ ମାତାଲ୍‌ମାନଙ୍କ ଅସଭ୍ୟ ପ୍ରମତ୍ତତା ସହିତ । ସେଠିକାର ଗୋଟିଏ ମଜାକଥା ଶୁଣାଯାଏ । ଦୁଇଭାଇ—ଜଣେ ସାଇକେଲ ଲାଇସେନ୍‌ସ ପିଅନ ଓ ଅନ୍ୟ ଜଣକ ଅଫିସ ପିଅନ ଭାବେ ଯୋଗଦିଅନ୍ତି । ଶୁକର ଆରମ୍ଭରୁ ତିନିବର୍ଷ ଭିତରେ ଅଫିସ ପିଅନଟି ହେଡ଼କ୍ଲର୍କ ହୋଇଯାଏ । ସେହି ଦପ୍ତରରେ କାମ କରୁଥିବା ଝିଅଟିଏ ସହ ପିଅନ ଭାଇଟିର ଟିକେ 'ତାହା' ସମ୍ପର୍କ ହୋଇଥାଏ । ହେଡ଼୍‌କ୍ଲର୍କ ଭାଇର ଜିଭରୁ ଲାଳ ବୋହିଲା । ସେଇଠୁ କୁଆଡ଼େ ସ୍ୱାୟତ୍ତ ଶାସନ ରାଜମାତ୍ତ ଭଙ୍ଗ ମୋଡ଼ ନେଲାବୋଲି ଲୋକେ କୁହନ୍ତି । 'କାଁହିଁ' ବ୍ରହ୍ମ ପରସନ୍ତେ ଯେତେକ / କାହିଁ ନାହିଁ କନ୍ଦର୍ପ କଉତୁକ / କାମ କାହାକୁ କରନାହିଁ କାହା / କହି ବସିବା ଅବା କେତେ ତାହା । (ରସକଲ୍ଲୋଳ)

ଦୁଇଭାଇ ପ୍ରେମର 'ପଜେସନ୍' ପାଇଁ ଯୁଦ୍ଧଂଦେହି ଡାକରାଦେଲେ ଏବଂ ସେଇଠୁ ଏନ୍. ଏ. ସି. ଭାରତର ଦପ୍ତରରେ ପରିଣତ ହୋଇଗଲା ।

ସେଠାରେ ମାସ ମାସ ଧରି ମାଷ୍ଟ୍ରମାନେ ଦରମା ପାଆନ୍ତି ନାହିଁ ମାତ୍ର ଯଦି କେହି ନେତା କଦମ୍ବର ହୋଇ ଆବିର୍ଭାବ ହୋଇପଡ଼ିଲ ତାକୁ ଭିତରେ ଭିତରେ କିଛି ମାଲ ଦେଇ ଧିଆଯାଏ । ବିଭାଗର ଯନ୍ତ୍ରକଞ୍ଚି ନ୍ୟାୟସଙ୍ଗତ ରୋଜଗାର ପାଣ୍ଠିରେ ପରିଠ ହେବା ପୂର୍ବରୁ ସବୁ ଭିତରେ ଭିତରେ 'ଆଉଟ୍' । ଥିବ ଆଉ କୋଉ ଚନ୍ଦନ ଯେ, ପୋଛୁବ କିଏ କାହାଁକି କାଠ ?

ଧନମଜୁରିଆଙ୍କ ନାଁରେ ଭିତରେ ପଇସା କେତେ ଯାଉଛି ତା'ର ଠିକଣା ନାହିଁ ମାତ୍ର ଏପରି କାର୍ଯ୍ୟପାଇଁ କେଉଁମାନେ କେବେ ନିଯୁକ୍ତ ହୁଅନ୍ତି ଓ ସେମାନେ କରନ୍ତି କ'ଣ—ଏକଥା କେହି ଜାଣନ୍ତି ନାହିଁ ବା ଦେଖନ୍ତି ନାହିଁ । ପାଠକଙ୍କ ମନରେ ସ୍ୱତଃ ପ୍ରଶ୍ନ ଉଠିପାରେ: ସେଇଠି କ'ଣ ହାକିମମାନେ ନାହାନ୍ତି ବା, ଦୋ-ନମ୍ବରୀ ହୁଅନ୍ତୁ ପଛେ, କାଉନ୍ସିଲର ନାହାନ୍ତି । ନଥିବେ କାହିଁକି, ଅଛନ୍ତି । ବିଶଦ ଆଲୋଚନା ପରେ ଥରେ ହେଡ୍‌କ୍ଲର୍କଭାଇ ଏ ଲେଖକକୁ କହିଲେ—ବେଙ୍ଗଗୁଡ଼ା, କେତେ ନାଚ ମାରି ପାରିବେ । ମନ୍ତ୍ରୀ ତ ମୋ ହାତରେ । ତାଙ୍କ ଦପ୍ତାରୁ ତ ଅଫିସରଠାରୁ କାଉନ୍‌ସିଲ୍‌ର ସମସ୍ତେ ଏଠି ପୋଷ୍ଟିଂ ହେଉଛନ୍ତି । ଏପରି କୁନମୁନ ଲୋକଗୁଡ଼ାଙ୍କ 'ହାତରେ' କେମିତି ମନ୍ତ୍ରୀସବୁ ରହିପାରନ୍ତି ଓ କେଉଁ ବିଦ୍ୟା କଳା-କୌଶଳ ଯୋଗୁ ଏପରି ପରମାର୍ଥ ସାଧନ ହୋଇପାରେ, ଅନୁମାନ କରିହେଉଛି ଯେ ହେଲେ କହିହେଉନ ।

ଦୃଢ଼ବିଶ୍ୱାସ, ଏ ଲେଖା ପ୍ରକାଶ ହେଲାବେଳକୁ ମଧ୍ୟ ଗୋଟିଏ ସମସ୍ୟାର ସମାଧାନ ହୋଇ ନ ଥିବ । 'ମାଷ୍ଟ୍ରେ'ସବୁ ଦରମା ନ ପାଇ ବର୍ଷକୁ ତିନଚାରି ଥର ଆନ୍ଦୋଳନ କରନ୍ତି । ହାକିମ କହନ୍ତି—ଦରମା ଦେଇ ହେଉନ, ପଇସା ନାହିଁ । 'ମାଷ୍ଟ୍ରେ' କହିବେ—ଆମ ପିଲାକବିଲା ଖାଇବେ କ'ଣ ? ହାକିମ କହିବେ—ଟିଉସନ୍ କର । 'ମାଷ୍ଟ୍ରେ' କହନ୍ତି—ଆମେ କୋଉ ଟିଉସନ୍ କରୁନୁ ଯେ, ହଜୁରଙ୍କ ପରାମର୍ଶ ଅନୁଯାୟୀ ନୂଆ କିଛି କରିବୁ ?

ମାଷ୍ଟ୍ରମାନେ ଅଭିଯୋଗ କରନ୍ତି, ଯେଉଁ ହାକିମ ଆସନ୍ତୁ ପଛେ ଭିତରେ ପାଓ୍ୱାର ଯୋଗୁ ତାଙ୍କ ଦାଉଁ ଟାଣ । ଥରେ ଜଣେ ହାକିମଙ୍କୁ ମୁଁ

ପଚାରିଲି—ଆପଣମାନେ ତ ଦରମା ଦେଇପାରୁନାହାନ୍ତି, ସେମାନେ ନିଜ ପରିଶ୍ରମରେ ଟିଉସନ୍ କରୁଛନ୍ତି । ତାହେଲେ ଆପଣଙ୍କ ସଂସ୍ଥାରେ ସେମାନେ ଚାକର କରିବେ କାହିଁକି । ମହାଶୟଙ୍କର ଉତ୍ତର ଯାହା ଥିଲା ତହିଁରେ କୌଣସି ସଂଶୋଧନ ନ କରି ତାହାକୁ ଲେଖିଦେଉଛି, 'ବେଙ୍ଗଲାରେ ଯୋଗ୍ୟ ନ ହୋଇଥିବା ଗୋରୁ ବେଙ୍ଗଲାରେ ପଡ଼ିଥିବା ପାଳ ଚୋବାଇବା କେବେ ଦେଖିଛ' ସତକଥା, ଚାଷୀ ବାଡେଇ ତା' ଥୋମଣି ଫଟେଇଦେବ ।

ଖଜୁରିଗଛର କି ଗୁଣ ଗାଇବା ସେ'ତ ମୂଳରୁ ପାହାଚ ପାହାଚ । ଦୁଇଟିରୁ ଗୋଟିଏ ଏନ୍. ଏ. ସି.ର ସ୍ୱଳ୍ପ ଗଳ୍ପଟିଏ । ଇଏ ଆମ ରାଉରକେଲା—ଜନ୍ଦ୍ ଓ୍ୱାଦ୍ ।



# ପ୍ରକ୍ସି

ପ୍ରକ୍ସି ଶବ୍ଦ ଶୁଣୁଶୁଣୁ ଚଟ୍‌କରି ମନେପଡ଼ିଯାଏ କଲେଜପଢ଼ା ବଗୁଲିଆ ବାଳକମାନଙ୍କ କଥା । ହୁଏତ ଦୁଇ ଓଭର୍ କ୍ରିକେଟ୍ ବଲ୍ ବାଡ଼େଇ ଦେଇ ଆସିବାପାଇଁ ବା ସାମାନ୍ୟରୁ ଅତ୍ତଉଚ୍ଚ ମାନସିକ ସ୍ଖଳନ ଓ ଉଦ୍ଭଟତାର ଇସ୍ତମାଲ୍ ପାଇଁ ବଗପରି ଠାକବସିବା ସୁଯୋଗ ଅଭିଳାଷରେ ଶ୍ରେଣୀକୁ ନ ଯାଇ କୌଣସି ସୁହୃଦ ବନ୍ଧୁଙ୍କ ସହାୟତାରେ ନିଜର ଉପସ୍ଥାନ 'ମ୍ୟାନେଜ୍' କରିନେବା । ବିନ୍ଦୁ ଜରିଆରେ ସିନ୍ଧୁ ଦର୍ଶନ କରାଯାଉ । ଉଦାହରଣ ଯେତେ ଶ୍ରେଷ୍ଠ ହେଉ ପଛେ, ପ୍ରକ୍ସି ହେଉଛି ସର୍ବବ୍ୟାପ୍ତ । କ୍ଷିତି-ଅପ୍-ତେଜଃ-ମରୁତ୍-ବ୍ୟୋମ ଯୋଉଠି ଥିବ ଏ ଶଟଟି ଅଲବତ୍ତ ସେଇଠି ଥିବ । ମାତ୍ର ଦୁଃଖର କଥା, କେବଳ କମ୍ପାନି ଆକ୍ଟରେ ପ୍ରକ୍ସି-ଭୋଟିଂ ଓ ବାଗୁଡ଼ି ଖେଳରେ କା'କୁ ଛାଡ଼ି ବାକି ସବୁଠି ଏହାକୁ ବେଆଇନ ବୋଲି ବିଚାର କରାଯାଏ ।

ଭାବୁଛି, ଏଇ ଯୋଉ ନିର୍ବାଚନ ସଂସ୍କାର କଥା ଏବେ ଶୁଭୁଛି ସେଥିରେ ପ୍ରକ୍ସି-ଭୋଟିଂକୁ ଅନ୍ତର୍ଭୁକ୍ତ କରାଯାଉ ବୋଲି କହିଲେ ଲୋକାପବାଦରୁ ନିସ୍ତାର ମିଳିବ ନାହିଁ ଭୟରେ ଅନେକ ରାଜନୈତିକ ଦଳ କହୁନାହାନ୍ତି ସିନା ହେଲେ ମନ ନିଶ୍ଚୟ କଲବଲ ହେଉଥିବ—ହେ ଠାକୁରେ, କେମିତି କେମିତି ହୋଇଯା'ନ୍ତା କି ! ଯେତେ ବାଡେଇଲେ ମୃଦଙ୍ଗରୁ କିରଣି ଆଉ ମୋଠରୁ ଛାଡ଼ନ୍ତା ନାହିଁ । ମାଷ୍ଟ୍ର ଓ ମେହେନ୍ତର-ମାନେ ଡାଇରେକ୍ଟ ପ୍ରକ୍ସି ବ୍ୟବସ୍ଥା କରୁଥିବା କଥା ଆମେ ଖବର-କାଗଜରେ ପଢ଼ିବାକୁ ପାଉ । ଦପ୍ତର କିରାନିମାନଙ୍କର ବିବିଧ ପ୍ରକାର ପ୍ରକ୍ସି ଅଛି । ଟେବୁଲ ଉପରେ ଖାଲି ବ୍ୟାଗ୍, ପାନବଟା, ଛତା ଆଦି ଥୋଇଦେଇ ବାବୁ ଅନ୍ତର୍ଦ୍ଧାନ ହୋଇଯାଇଥିଲେ ମଧ୍ୟ କାହାର ଜୁ ନାହିଁ ଠଉରେଇବାକୁ ବାବୁ ନାହାନ୍ତି ବୋଲି । ଏ.ଜି. ଅଫିସରେ ଆମର ଜଣେ ସମ୍ବଳୀପୁ ବାବୁ ଅଛନ୍ତି, ସେ ବର୍ଷାଦିନେ ଦୁଇଟି ଛତା ବ୍ୟବହାର କରନ୍ତି । ଗୋଟିଏ ସଦାବେଳେ ଟେବୁଲ ଉପରେ ଥୁଆ ହୋଇଥାଏ ଓ ଅନ୍ୟଟି ବର୍ଷା କବଳରୁ ରକ୍ଷା ପାଇବାପାଇଁ ।

ଟାଉଟରୀ ଗୋଟେ ପ୍ରକାର ନକ୍ତକ ପ୍ରକ୍ସି । ଟାଉଟରମାନେ ନିଜ କ୍ଲାଏଣ୍ଟ ବା ଭିକ୍ଟିମଠାରୁ ଯେତେବେଳେ 'ମାଲ୍' ନିଅନ୍ତି କଦାପି ନିଜେ ନେଉଛନ୍ତି ବୋଲି କହନ୍ତି ନାହିଁ । ତାଙ୍କୁ କଏ 'ସତ୍ୟ' ବୋଲି ବୁଝନ୍ତୁ ବା ନ ବୁଝନ୍ତୁ, ପଣ୍ଡଆଗରେ କଳଙ୍କ ଲଗାଇବେ କିଆଁ ? ବେନାମୀ ବେପାର ଆଉ ଗୋଟିଏ ପ୍ରକାର ପ୍ରକ୍ସିର ଇନ୍ଦ୍ରଜାଲ । ଆଇନର ଶିଙ୍ଘ ଯେତେ ପ୍ରବଳ ବେଗରେ ଆସି ଭୂସିହେଲେ ମଧ୍ୟ ତାହା କେବଳ ପବନରେ ପଶିବା ସାର ହୁଏ । ବୁନ୍ଦାଏ ରକ୍ତ ବହେନ ବା ଟିକିଏ ମଳଚମ ବି ଉଖୁରେ ନାହିଁ । କାରଣ ବେପାରଟି ଥାଏ ସ୍ତ୍ରୀ, ଶଳା ଏପରିକି ଅଦେଖାମାନଙ୍କ ନାଁରେ । ବୁକିଚିଆମାନଙ୍କ ଆଚରଣ ବଧିରେ ଯେ ଏଥିପାଇଁ କଟକଣା ନାହିଁ ତାହା ନୁହେଁ, ମାତ୍ର 'ମିଳେଲ ପ୍ରକ୍ସି ମେବ ଭୁଞ୍ଜାବ, ସୁର ବନେ ନମାସ୍' (ଜନସେବା ସଂଘର ମରଷଦ ଉଦ୍ଦେଶ୍ୟରେ ଷମା ପ୍ରାର୍ଥନା ସହ) ନ୍ୟାୟରେ ଉଚ୍ଛ୍ୱଳା ଜାହ୍ନବୀ ତା'ର ବହିଗଲାଛି, ଗୁଲଥାଉ । ବୀମା ଏଜେନ୍ସି—ଶହେରୁ ଅନେଶତ ପ୍ରତିଶତ ପ୍ରକ୍ସି । ନୁହେଁ କି ?

ଜୀବାତ୍ମା-ପରମାତ୍ମା, ସୃଷ୍ଟି-ସ୍ରଷ୍ଟା, ପ୍ରକୃତି-ପୁରୁଷ ଆଦି ଚିନ୍ତନକୁ ଦ୍ୱୈତବାଦର ଦାର୍ଶନିକ ଅଭିବ୍ୟକ୍ତି ବୋଲି କୁହାଯାଇପାରେ, ମାତ୍ର ନିଜେ ଗଳ୍ପ ସୃଷ୍ଟି କରି ନିଜେ ସ୍ରଷ୍ଟା ହେବା ଏହି ପର୍ଯ୍ୟାୟରେ ଆସିବ କି ନା, ସନ୍ଦେହ ହେଉଛି ।

ଉପରେ ବର୍ଣ୍ଣନା କରାଯାଇଥିବା ପ୍ରତିକ୍ଷେତ୍ରରେ 'ମୁଁ' ନାମକ ପ୍ରାଣୀଟି ଅତି ସାଧୁ । ଯଦି ନହାତି ଧରାପଡ଼ିଲା, ସ୍ୱୈର ହୋଇଥିବ 'ପ୍ରକ୍ସି' । ଯା' ନାଲିଶ୍ କରୁଥା, କାହା ଆଗରେ କରିବ ।

ଉତ୍କୃଷ୍ଟ ଉଦାହରଣ ନିମନ୍ତେ ଗୋଟିଏ କ୍ଷୁଦ୍ର ଗଳ୍ପ ବଖାଣ କରୁଛି । ଅନେକ ଥର ଗୋଟିଏ ବିଚିତ୍ର କଥା ଲକ୍ଷ୍ୟ କରି କରି ଜଣେ ଭଦ୍ରଲୋକ ଆଉ ଜଣଙ୍କ ଟେବୁଲକୁ ଗଲେ । ଦ୍ୱିତୀୟ ବ୍ୟକ୍ତି ବାର୍‌ରେ ସର୍ବଦା ଏକୁଟିଆ ବସନ୍ତି ମାତ୍ର ଦୁଇଟି ଗିଲାସରେ ଏକାସାଙ୍ଗରେ ମଦ ରଖି ଏଥିରୁ ଟିକିଏ ପିଅନ୍ତି, ସେଥିରୁ ଟିକିଏ ପିଅନ୍ତି । ଏପରି ଆଚରଣ ଦେଖି ପ୍ରଥମ ବାବୁ ଯେ ଏକା ବିସ୍ମିତ ହେଲେ ତାହା ନୁହେଁ, ଯେ କେହି ବିସ୍ମିତ ହୋଇଥା'ନ୍ତେ ।

ଯାହାହେଉ, ଦିନେ ପ୍ରଥମ ବାବୁ ଏହି ଅଭୂତ ବ୍ୟକ୍ତିଙ୍କ ଟେବୁଲ୍ ପାଖକୁ ଯାଇ ପଚ୍ଚାରିଲେ : ଏକ୍ସକଉଜ୍ ମି, ଅନେକଦିନରୁ ଦେଖୁଛି ଆପଣ ଏକା ବସି ଦୁଇଟି ଗ୍ଲାସ୍‌ରେ ମଦ ପିଅନ୍ତି, କାହିଁକି ?

: ଓଃ ଥ୍ୟାଙ୍କସ୍ । ଆପଣ ଦେଖିବାର ବହୁପୂର୍ବରୁ ମୁଁ ଏଇମିତି ପିଉଛି । ଯାହାହେଉ ପ୍ରଥମ ପଚ୍ଚାରିଲେ ଆପଣ । ଏ ସ୍ଟ୍ରେଞ୍ଜ୍ ମେମୋରି । କହିପାରିବନି । ଇଟ୍ ଉଇଲ୍ ବି ଇମୋସ୍‌ନାଲ୍ ।

'ସରି' କହି ପ୍ରଶ୍ନକର୍ତ୍ତା ନିଜ ଟେବୁଲ୍‌କୁ ଫେରିଗଲେ ।

ଅନେକ ଦିନ ବ୍ୟବଧାନରେ ଥରେ ସେ ଦେଖିଲେ, ଦୁଇଟି ନୁହେଁ, ଗୋଟିଏ ଗ୍ଲାସ୍ ଧରି ବାବୁ ବସିଛନ୍ତି । ନିଜ ଉତ୍ସୁକତାକୁ ଆକଟି ନ ପାରି ସେ ପୁଣି ଯାଇ ପଚ୍ଚାରିଲେ—ଆଜି ଗୋଟିଏ ଗ୍ଲାସ୍ ଯେ ?

: ବସନ୍ତୁ । ମୋର ମନେ ଅଛି, ସେଦିନ କହି ନ ଥିଲି । ଆଜି ଲୁଚ୍ଚାଇବାର କିଛି ନାହିଁ । ମୋର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କ ପାଇଁ ଗୋଟିଏ ଗ୍ଲାସ୍‌ରେ ପିଉଥିଲି, ନିଜର ଆଉ ଗୋଟିଏ ।

ଏବେ ତା ହେଲେ ଗୋଟିଏ ଗ୍ଲାସ କାହିଁକି ?

: ମୋ ପ୍ରେମିକାକୁ ସେଇ ବନ୍ଧୁ ବାହା ହୋଇପଡ଼ିଲେ । ମୋ ମନ ଗୋଟିଏ ଭଙ୍ଗା ତଣ୍ଟି, ନଙ୍ଗର କ'ଣ ପକେଇବି ? ମୁଁ ପରାସ୍ତ, ମୁଁ ହତାଶ । ବିଫଳତାର ସାକାର ମୂର୍ତ୍ତି । ତାଙ୍କ ବିବାହ ନିଦିବତର ବାଜଣା ଶୁଣି ମୁଁ ପ୍ରତିଜ୍ଞା କରିଛି, ଆଉ ମଦ ଛୁଇଁବି ନାହିଁ । ସେଇଦିନୁଁ ଛୁଉଁନାହିଁ ମଧ୍ୟ ।

ପିଉଛନ୍ତି ଯେ !

: ଓଃ ସିଲି ! ଇଏ ତ ମୋ ବନ୍ଧୁଙ୍କ ପାଇଁ । ମୋ ଉତ୍‌ସ୍ୱାନ୍, ତୃପ୍ତ, ବିଜୟୀ ।

ତାଙ୍କ ଆଖିରୁ ଦ'ଧାର ଲୁହ ଗଡ଼ିଆସିଲା ଓ ବାର୍‌ର ଈଷତ୍ ଆଲୁଅ ଭିତରେ ବି ବାରି ହେଉଥାଏ ଥରଥର ଓଠ ଦିଓଟି ତାଙ୍କର କହୁଥାଏ—ଆ'ମ ଓନ୍‌ଲି ହିଜ୍ ପ୍ରକ୍‌ସି ।



# ଅରକ୍ଷିତ ମାଂ...

ମଣିଷ ଇତିହାସରେ ଏମିତି ଗୋଟିଏ ପାହୁଣ୍ଡ ନଥିବ ଯେଉଁଥିରେ ଯୁଦ୍ଧ-ବିଗ୍ରହ-ସନ୍ଧିର ଆଶ୍ୱସ୍ତ ବା ରକ୍ତାକ୍ତ ପାଦଚିହ୍ନ ଦେଖିବାକୁ ନ ମିଳିବ ଅଥବା 'ଗୃନ୍‌ସପାଇ' ଉତ୍ତର ପୁରୁଷଗଣ ଅଣ୍ଟାତକୁ ଅଯଥାରେ ରୋମାଞ୍ଚିତ କରାଇ ସେଇ ପାଦଚିହ୍ନରେ ସୋରିଷ ବୁଣି ତହିଁରୁ ଉପୁଜିବାକୁ ଥିବା ହଳଦିଆ ଗୁଲୁଗୁଲୁ ଫୁଲଗୁଡ଼ିକୁ ବଗିଚାର ଅନେଇ ଅନେଇ ଅନେକ ମୁଗ୍ଧ କଳ୍ପନା କରୁ ନଥିବେ । ରିପିଟ୍-ଗୃନ୍‌ସ ପାଇ ବହୁତ ଜାଗାରେ ଖିର ମରିଯାଇଛି ଅଥଚ ବାଜୁନାହିଁ । ସେସବୁକୁ ଗୃନ୍‌ସ ବୋଲି କୁହାଯିବ ନାହିଁ ।

ଆମ ଦେଶ ସ୍ୱାଧୀନ ହେବା ପୂର୍ବରୁ ସମସ୍ତେ ରାଜନୈତିକ ଭାବେ ଅରକ୍ଷ ଥିଲେ । ଏକଥା ଚିତ୍‌କାରି ବୁଝାଇବା ଦରକାର ନାହିଁ କାରଣ ଏହା ବାସ୍ତବତା । ସ୍ୱାଧୀନତା ମିଳିବା ପରେ ସଂରକ୍ଷଣ ନାମକ ଏକ ହର୍‌ରଙ୍ଗୀ ଗୃହନୂଆ ଦେଶର ସାମ୍ବିଧାନିକ ବ୍ୟବସ୍ଥାରେ ଆମେ ଦେଖିବାକୁ ପାଇଲୁ । ଅନ୍ୟ ପ୍ରକାରେ, ଏଇ କଥାକୁ ଆମେ ନାକ ଟେକିଥିଲୁ '୧୯୩୫ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟରେ । କିନ୍ତୁ ପରେ ପରେ ଏହି ଚିଜ୍ ଆମକୁ ଶୀତଦିନେ କମ୍ବଳ ପରି ଉଷୁମ ଲାଗିଲା । କୁହାଗଲା, ମହାତ୍ମାଙ୍କ ଦରଦକୁ ତଦ୍ଦ୍ୱାରା ସାକାର ରୂପ ଦିଆଗଲା କୁଆଡ଼େ । ଯାବତ୍ ବୁନିଆଦ୍‌ହୀନ, ଅଣଐତିହାସିକ, ଅପ୍ରମାଣିତ କଥାଟିଏ ଢୁଣ୍ଡିବାଇଦ ଜରିଆରେ ପ୍ରମାଣସିଦ୍ଧ ହୋଇଗଲା । ହେଲା ବାବା, ମାନ ନିଗୃହୀତମାନଙ୍କ ପିଠି ଆଉଁସିବାକୁ ଯେଉଁମାନେ ଥରେ ଗୃହନୂଆ ତଳକୁ ପଶିଗଲେ ସେମାନେ ସକୁଟୁମ୍ବ ସେଠାରେ ଆସନ ଜମେଇ ବସିଲେ । କାଳକ୍ରମେ ସ୍ଥାନାଭାବ ହେଲା । ଖୋଦ୍ ମହାତ୍ମାଗାନ୍ଧୀଙ୍କୁ ବି ସେଠିରେ ଜାଗା ମିଳିଲା ନାହିଁ । ସେ ଏବେ ଖରାକୁ ପିଠିକରି ଦାଣ୍ଡରେ ବୁଲୁଛନ୍ତି ।

ସଂସଥାନ୍ତ ସଂରକ୍ଷଣର ଉପଭୋକ୍ତାମାନଙ୍କ ମନ କାଇଲ୍ କଲା କି କ'ଣ କେଜାଣି, ସେମାନେ ଏହି ବ୍ୟବସ୍ଥାକୁ ଆହୁରି ବ୍ୟାପ୍ତ କରିବାକୁ

ଲାଗିଲେ । ୧୯୬୨ ଚୀନ-ଯୁଦ୍ଧ ପର୍ଯ୍ୟନ୍ତ ହରିଜନ, ଆଦିବାସୀ ଏବଂ ଓ.ବି.ସି. ପର୍ଯ୍ୟାପ୍ତ ପର୍ଯ୍ୟନ୍ତ ଚାକିରି କ୍ଷେତ୍ରରେ ମଧ୍ୟ ଯେଉଁ ମୁଖବନ୍ଧକୁ ବନ୍ଦ ବୋଲି ବୁଝାଯାଉଥିଲା, ସେଇଠୁ ଆଉ ଟିକଏ ତାହାକୁ ଅଧିକା ବ୍ୟାପ୍ତ କରାଗଲା । ଏକ୍ସ-ମିଲଟାରୀ । ଯେତେବେଳେ ଯେଉଁ ସରକାର ଆ'ନ୍ତୁ ନା କାହିଁକି ସମସ୍ତେ ସଂରକ୍ଷଣ ଜରିଆରେ କୌଣସି ଗୋଷ୍ଠୀ ବା କୌଣସି ଦଳକୁ 'ଇନ୍‌ସେଣ୍ଟିଭ୍' ଦେଇ ପ୍ରଲୋଭିତ କରିବାକୁ ଚେଷ୍ଟା କରିଛନ୍ତି । ଏପରି ସଫଳତାର ମାପକାଠି ଦେଖେଇ ଦେଖେଇ ନେତାମାନେ ହୋଇଯାଇଛନ୍ତି ଜଣେ ଜଣେ ପାଏଡ୍‌-ପାଇପର୍ ଓ ଦେଶବାସୀ ବଶୀଭୂତ ହୋଇଥିବା ମୂଷାଙ୍କ ପରି ସେମାନଙ୍କ ପଛରେ ଗୋଡ଼େଇବାକୁ ଶ୍ରେୟ ପନ୍ଥା ବୋଲି ମଣି ନେଲେଣି ।

ରାଜୀବ ଗାନ୍ଧୀ ନିକଟରେ କହିଲେ ଯେ ସରକାରୀ ଯୋଜନାରେ ବରାଦ କରାଯାଇଥିବା ଟଙ୍କାର ଗରିବମାନଙ୍କ ପାଖରେ ପହଞ୍ଚିଲା ବେଳକୁ ଅଠର ପଇସା ହୋଇଯାଉଛି । ସମ୍ଭବତଃ, ଏପରି ସ୍ପଷ୍ଟବାଦିତା ଅତୀତରେ କୌଣସି ପ୍ରଧାନମନ୍ତ୍ରୀ ଦେଖାଇ ନାହାନ୍ତି । ଅତ୍ୟନ୍ତ ସମ୍ଭବ ଯେ ରାଜୀବ ଗାନ୍ଧୀଙ୍କର ଏହି ଉକ୍ତି ସମୟ ସୁଯୋଗ ହେଲେ ତାଙ୍କର ବିରୁଦ୍ଧରେ ହିଁ ବ୍ୟବହାର କରାଯିବ । କାରଣ ଆମେ ତିନି ମାଙ୍କଡ଼ର ଦେଶ : ସବୁ ସୁନ୍ଦର ଦେଖିବୁ, ସବୁ ସୁନ୍ଦର ଶୁଣିବୁ, ସବୁ ସୁନ୍ଦର କହିବୁ । ରାଜୀବ ଗାନ୍ଧୀ କୋଉ ଖାତାରୁ ଏ ଅଠର ପଇସାର ହିସାବ ପାଇଲେ ସେ ବିତର୍କ ଭିତରକୁ ନ ପଶି ସାଧାରଣ ଲୋକଙ୍କ ମନରେ ଶଙ୍କା ଉପୁଜୁଛି—ଅଠର ଅଠର ତ ? ରାଜନୈତିକ ଭାବେ ସଂରକ୍ଷିତ ହୋଇଥିବା ଦଳ ସର୍ବଦା ଅର୍ଥନୈତିକ ଭାବେ ଅରକ୍ଷିତ ରୁହନ୍ତି । ଏତିକ କଥାକୁ ପରିମାପକ ବୋଲି ଧରାଗଲେ ଅଠର ଅଲବତ୍ ତଳକୁ ଖସିଯିବ ।

ରାଜନୈତିକ ପୃଷ୍ଠଭୂମିରେ ସାରା ଦେଶଟା ଖୋଜିଲେ ଯଦି ଗୋଟିଏ ମ୍ୟାଜିକ୍ ଓ୍ୱାର୍ଡ଼ ମିଳୁଥାଏ ତାହା ଯୋଜନା ନୁହେଁ, ବିକାଶ ନୁହେଁ, ଶିଳ୍ପ ନୁହେଁ, କୃଷି ନୁହେଁ ବା ଶିକ୍ଷା ନୁହେଁ—ତାହା ହେଲା ସଂରକ୍ଷଣ ବାଦ (Protectionism)—ସମସ୍ତଙ୍କ ଶନ୍ଧାଧାର ଭିତରେ ଗୋଟାଏ ଭୂତ ପଶିଯାଇଛି । ଆମେ କେମିତି ଟିକେ ସଂରକ୍ଷିତ ହୋଇପାରିବୁ । କିନ୍ତୁ

ଶ୍ରେଣୀ-ବର୍ଗରେ ଧୃତରାଷ୍ଟ୍ର-ଆଲିଙ୍ଗନ କବଳରୁ କେହି ସଂରକ୍ଷିତ ହୋଇପାରିଛନ୍ତି କି ? ଏକା ପର୍ଯ୍ୟାୟରେ ଗ୍ରାସ ପ୍ରବଳରୁ ପ୍ରବଳତର ହେବାରେ ଲାଗିଛି । ଜଣେ ସଂରକ୍ଷିତ ନେତା ପର୍ଯ୍ୟାୟର ଆଉ ଜଣେ ଅପେକ୍ଷାକୃତ ଦୁର୍ବଳ ସଂରକ୍ଷିତଙ୍କୁ ଆଗେ ଖାଇଯାଉଛି । ତଥାପି ସଂରକ୍ଷଣ ଲୋଡ଼ା । ନହେଲେ 'ଶ୍ରେଣୀ' ରହିବ କେମିତି ?

ମୂକ ବଧିର, ଅନ୍ଧ ବା ଶାରୀରିକ ବିକଳାଙ୍ଗ ସମାଜର ସମବେଦନା ପାଇବେ, ଭଲ କଥା । ଗୋଲକଧନ୍ଦା ଏଇଠି ସରିଲାନି । ଦୁ' ପାହୁଣ୍ଡ ଆଗକୁ ଦୌଡ଼ିଯାଇ ଗୋଟିଏ ପ୍ରମୁଖ ରାଜନୈତିକ ଦଳ ନାରୀମାନଙ୍କ ନିମନ୍ତେ ନିଜ ଘରେ ସଂରକ୍ଷଣ ବ୍ୟବସ୍ଥା ଜାରି କରିଦେଲେ । ସରକାରୀ ବ୍ୟବସ୍ଥାରେ ସେକଥା ଆଗରୁ ଅଛି । କିନ୍ତୁ ଯାହା ଦେଖାଯାଉଛି 'ବ୍ୟାକ୍ ଲଗ୍' ମୋଟ୍‌ରୁ କ୍ଲିଅର ହେଉନାହିଁ । ଗ୍ରୀନ୍ କାର୍ଡ ଆଉ ଗୋଟିଏ ସଂରକ୍ଷଣ ବ୍ୟବସ୍ଥା । ସରକାରୀ, ଅର୍ଦ୍ଧସରକାରୀ, ଅଣ୍ଡରଟେକିଂ, କର୍ପୋରେସନ ଆଦିରେ ଯେ ପ୍ରକାର ସଂରକ୍ଷଣ ବ୍ୟବସ୍ଥା ଜାହିର କରାଯାଏ ତାହା କଳିପିଟରେ ସିଂଘ ପଶିବା ପରି । କେହି ଦେଖିପାରିବେନି । ସହରରେ ନିର୍ମିତ ଗୃହ ଆବଣ୍ଟନଠାରୁ ଚାକିରିରେ ସଂରକ୍ଷଣ ପର୍ଯ୍ୟନ୍ତ । ଅନ୍ୟ ପିଶାଚମାନଙ୍କ ପାଇଁ ସେ ହତା ମାଡ଼ିବା ନିଷେଧ ।

ସଂସଦ, ଚାକିରି, ସରକାରୀ-ବ୍ୟବସାୟ, ଜମିବଣ୍ଟନ, ଲଟେରୀ ଉଠାଣ ସବୁଥିରେ ଏପରି ବ୍ୟବସ୍ଥା ଚାଲୁଚାଲୁ ସଂରକ୍ଷଣ ଏବେ ଏକପ୍ରକାର ବୁନିଆଦ ପ୍ରଶ୍ନ ଛୁଇଁଛି । ତାହାହେଲା, ସଂରକ୍ଷିତ ବ୍ୟକ୍ତିର ପିଲାକବିଲା ଯେମିତି ଯାବତ୍ ଚନ୍ଦ୍ରାର୍କ ସଂରକ୍ଷିତ ହୋଇ ରହିବେ ତହିଁର ମସୁଧା ଚାଲିଛି । ଏ ଲେଖକର ଜନ୍ମ ସ୍ୱାଧୀନତା ପାଖାପାଖି ସମୟର କଥା । ଗ୍ଲାକ୍ସାସାୟାର ବୋତଲରେ ଆମେମାନେ ଦୁଧ ପିଉଥିଲୁ । କାରଣ ସେତେବେଳେ ଭାରତରେ ଫିଡ଼ିଂ ବୋତଲ ବି ତିଆରି ହୋଇନଥିଲା । ତା ପରବର୍ତ୍ତୀ ସମୟରେ ଜନ୍ମ ହୋଇଥିବା ପିଲାମାନେ ନିଶ୍ଚୟ ଭାରତୀୟ ବୋତଲରେ କ୍ଷୀର ପିଇଥିବେ । ଦୁଇଟି କାରଣ—ସମୟର ବ୍ୟବଧାନରେ କାଚବୋତଲ ସବୁ ଭାଙ୍ଗିଯାଇଥିବ ଏବଂ ଇମ୍ପୋର୍ଟ ବନ୍ଦ । ଅକସ୍ମାତ୍ ସେମାନେ ସ୍ୱାଧୀନତା ସଂଗ୍ରାମୀଙ୍କର ବଂଶଧର ହୋଇଥିବା ଯୋଗୁଁ ସେମାନଙ୍କ ପାଇଁ ମଧ୍ୟ 'ହେରେଡ଼ିଟି କ୍ଲେମ୍' ହେଲାଣି । ଏହି ଦଳ କପର

ସଂଖ୍ୟାଧିକ ଜଣାପଡ଼ିବେ ସେଥିପାଇଁ 'ସ୍ୱାଧୀନତା ସଂଗ୍ରାମୀ' ବୋଲି କେଉଁମାନେ ଅଭିହିତ ହେବେ ତାହାଁର ସଂଜ୍ଞା ପରିବର୍ତ୍ତନ ହେବା ଆବଶ୍ୟକ ହୋଇପଡ଼ିଲାଣି । ତେଣିକି କଥା 'ଡାଉଟ୍‌ଫୁଲ୍ କେଟେଗରି ଅଲ' ଆଡ଼କୁ ଯାଉଥିଛେ ।

ସମଗ୍ର ଭାରତର ରାଜନୀତି ଗୋଟାଏ ଅନାବାଦୀ ଭୂଇଁ । ଏତେ ଗୋଷ୍ଠୀ ସଂରକ୍ଷିତ ହୋଇସାରିଛନ୍ତି ଯେ ସେଥିରେ ଗୋଟିଏ ଆଉ ମିଶିଗଲେ ଓଜନ ବଢ଼ିବ ନାହିଁ ବା କମିବ ନାହିଁ । ସରକାର ଏ ବର୍ଗର ଶୀଘ୍ର କରିଦେଇପାରନ୍ତି ଅବଶ୍ୟ ।

କିନ୍ତୁ ପ୍ରଶ୍ନ ହେଉଛି, ବାକି ଯେତେକ ଅରକ୍ଷିତ ରହିଲେ ସେମାନଙ୍କ ସଂରକ୍ଷଣର ଭାର କେହି ନେବେ କି ?



# ବହ୍ୱାରମ୍ଭେ ଲଘୁ...

"ପଶ୍ଚାତ୍ୟ-କଲ୍‌ଚର ଯୋଗୁଁ 'ହାଏ' କହିବା ତୁମ ପକ୍ଷେ ଦାନ୍ତଘଷିବାବେଳେ ନଡ଼ିଆ ଗ୍ରେଟ୍‌କିବା ପରି ଅସମ୍ଭବ ବୋଲି ମୁଁ ବୁଝିପାରୁଛି କିନ୍ତୁ ସକାଳୁ ଉଠାଇ ଟି କପେ ଦେଲାବେଳେ 'ସୁଇଟ୍ ସୁଇଟ୍ ସ୍ମାଇଲିଙ୍ଗ୍ ଫେସ୍' ତ ଟିକିଏ ଦେଖେଇ ପାରନ୍ତ । ନିଦ ଭାଙ୍ଗିଲା ବେଳକୁ ଏଣେ ମୋ ମନରେ ସୁଟର୍ ଶବ୍ଦର ଚମକ, ତେଣେ ଆଖି ଖୋଲିଲାବେଳକୁ ତୁମପରି ରୂପସୀଟିଏ ଫଣଫଣିଆ ମୁହଁ ଦେଖେଇ ଠିଆ ହୋଇଥିବ— କେମିତି ଲାଗୁଥିବ ମୋତେ କହିଲ ?"

ସ୍ୱାମୀଙ୍କର ଏପରି ଉଚ୍ଛୁଳା ଭାବୁକତାକୁ ରମଣୀ ରତନ କ୍ଷଣେ ମୁହୂର୍ତ୍ତେ ଅନେଇ ରହିଗଲେ । ଶୁଖିଲା କାଠରୁ ଏତେ ରସ ଆସିଲା କୋଉଠୁ ? "ମାଇଁ ଡିଅର, ବୋତଲ ବ୍ୟାଗରେ ଥୁଆହୋଇଛି । ଦୟାକରି ଶୀଘ୍ର ଖଟାଲ୍‌କୁ ଯାଅ । ନହେଲେ ଯେତେ ଫାଇନ୍ଟ୍ରେସନ୍ କଲେ ମଧ୍ୟ ଦୁଧରେ ପାଣି ବା ପାଣିରେ ଦୁଧ କେତେ ମିଶିଥିବ ବାରିହେବ ନାହିଁ । ବକ୍‌ବକ୍ ହେବାକୁ ସମୟ ମୋ ପାଖରେ ନାହିଁ । ଅଫିସ୍ ଯିବାବେଳକୁ ଗ୍ରେଷେଇ ସରି ନଥିଲେ ତୁମ ଶ୍ରୀମୁଖର ରୂପ ଯାହା ହେବ ମୋତେ ତାହା ଜଳଜଳ ହୋଇ ଦେଖାଯାଉଛି । ମୁଁ ଯାଉଛି । ପ୍ଲିଜ୍...", ଏହା ଥିଲା ସ୍ତ୍ରୀଙ୍କର ଲଳିତ ମଧୁର ଉତ୍ତର ।

"ମୁଁ ତ ତୁମର ହାତ ଧରି ଅଟକାଇ ନାହିଁ । ଯାଉଛି ବୋଲି ଅନୁମତି ମାଗୁଛ କାହିଁକି ?"

"ବେରସିକ କୋଉଠିକାର । ମୁଁ କ'ଣ ତୁମକୁ ମନା କରିଥିଲି ? ଏବେ ମୁଁ ସତକୁ ସତ ଯାଉଛି", ଏତିକି କହି ଭଦ୍ରମହିଳା ସ୍ଥାନ ତ୍ୟାଗ କଲେ ।

ଉପରେ ଯେଉଁ ଟିକିକ ଲେଖାଗଲା ତାହା ଗପ, ନାଟକ, ଉପନ୍ୟାସ ବା ଅର୍ଥବୋଧକ କୌଣସି ପୂର୍ଣ୍ଣାଙ୍ଗ ଡାଇଲଗ୍, କୋଉବାଟେ କିଛି ନୁହେଁ ।

ଗୋଟିଏ ଟ୍ରେଟିଆ ପରିବେଶର ବର୍ଣ୍ଣନା କରାଯାଇଛି କେବଳ । ଯେଉଁଥିରୁ ଅନ୍ତତଃ ସ୍ପଷ୍ଟ ବାରି ହେଉଛି—ସ୍ୱାମୀ ସ୍ତ୍ରୀ, ଯୁବକ ଯୁବତୀ; ଉଭୟଙ୍କ ମନରେ ପ୍ରଣୟର ପ୍ରଲୁବ୍ଧ ଇନ୍ଦ୍ରଧନୁ, ଆଲିଙ୍ଗନ ଲାଗି ଯେତିକି ଆଦର ଲୋଡ଼ା ତାହା ଅଛି । ମାତ୍ର ଆଲୋଚିତ ଉଦାହରଣରେ ଜଣାପଡୁଛି ପଞ୍ଚଗ୍ରହକୂଟ ପଡ଼ିନାହିଁ ଯେମିତି, ଜଣଙ୍କର ଜୁଆରିଆ ମନ ସାଙ୍ଗକୁ ବେତାଳିଆ ଲାଗୁଛି ଆଉ ଜଣଙ୍କ ମନରେ କର୍ତ୍ତବ୍ୟର ଭିଡ଼ । ଏବଂ ସବୁଠାରୁ ବେଶି ବାରି ହେଉଛି, ପ୍ରେମାନ୍ଧର ଡିଗ୍ରୀ କମ୍ ନଥାଇ, ଜଣେ ଅପରକୁ ନିଜ ଅଧିକାର ବିଷୟରେ ତାଗିଦା କରୁଛନ୍ତି ।

ଏଇ 'ତାଗିଦା' ମାମଲାରେ ଗୋଟିଏ ପ୍ରାଞ୍ଜଳ ଅଭିବ୍ୟକ୍ତି ହେଲା ମୁଁ ନାମକ ମଣିଷ ଆଉ ଗୋଟିଏ ସମଜାତୀୟ ପ୍ରାଣୀଠାରୁ ଯାହା ଆଶା-କରେ ଏବଂ ତାହାଁର ହିମବର୍ଦ୍ଧିଷ୍ଣୁ ପ୍ରତିକ୍ରିୟାକୁ ଘୋଷାରି ଘୋଷାରି ଆଗକୁ ନେଲାବେଳେ ନିଜେ ଯେପରି ଜଘନ୍ୟ ବା ମହତ୍ତ୍ୱର ସ୍ତରରେ ପହଞ୍ଚିପାରେ; ଏଇକଥା ମଣିଷ ଛଡ଼ା ପ୍ରାଣୀ ଜଗତରେ ଆଉ କେହି କରିପାରନ୍ତି ନାହିଁ । ପୁନଶ୍ଚ, ଏପରି 'କରିବା' ସମ୍ପର୍କରେ ସଚେତନ ଅନୁଶୀଳନ ମଣିଷ ଛଡ଼ା ଅନ୍ୟ କୌଣସି ପ୍ରାଣୀ ପକ୍ଷେ ସମ୍ଭବ ନୁହେଁ ।

ଲେଖାରମ୍ଭେ ସ୍ୱାମୀ-ସ୍ତ୍ରୀଙ୍କ ଛନ୍ଦୁକ୍ କଥୋପକଥନକୁ ଆମ୍ଭେ ଯେପରି ପାଦଟୀକା ଦେଇ ବଖାଣ କରିଥାଉ ନା କାହିଁକି ତାହାଁରେ 'ଧର ନା ଲୋ ମୁଁ ହଲିହିବ : ଆଉ ନ ଅନାରେ, ମୁଁ ଭସିଯିବ' ପରି ରୋମାଣ୍ଟିସିଜିମ୍ ଯେ ନାହିଁ ଏକଥା ନିହାତି ଓଲୁଟିଏ ବି କହିବାକୁ ସାହସ କରିବ ନାହିଁ । ତତ୍ପର୍ଯ୍ୟ, ଅଛି ।

ଟପିକ୍‌କୁ ଆସିବା । ଆମ ସହରର ଜଣେ ନେତା ଓ ଆଉ ଜଣେ ପ୍ରେବେନ୍‌ଶୋରି ଇଂଲିଶ୍ (ଲୁଚିଛପା ଓଡ଼ିଆ ମଧ୍ୟ) ସାମ୍ବାଦିକଙ୍କ କାହାଣୀ । ନେତାଙ୍କ କୃପାରୁ ଏ ସାମ୍ବାଦିକ ବେଳେବେଳେ ଆମ ସହରକୁ ଆସନ୍ତି । ମଦ-ଗାଡ଼ି ହୋଟେଲ-ଲେଡ଼ି ଏବଂ ତାଙ୍କ ପକେଟ୍ ପାଇଁ 'ଡ୍ୟାସ୍' ପର୍ଯ୍ୟନ୍ତ ସବୁକଥାର ହେପାଜତ ନେତା ଏବଂ ତାଙ୍କ ଗୁମଗୁମାନେ ନିଅନ୍ତି । ନେତାଙ୍କର ଗୋଟିଏ କଥାରେ ମନ ଦୁଃଖ । କାରଣ, "ଏ ମୃଣାଳ ରସ / ଏ ପୁଷ୍କର ରସ / ଏ କୁମୁଦ କନ୍ଦ / ଏ କୋମଳ

ମକରନ୍ଦ / ଏ କନକ ପଙ୍କ / ଏ ମୋତି ରଜକ" (ସୌଜନ୍ୟ—ଚତୁର ବିନୋଦ କଥା, ବ୍ରଜନାଥ ବଡ଼ଜେନା) ଯେତେ ଦେଲେ ମଧ୍ୟ 'ସୁଇଟ୍ ସୁଇଟ୍ ସ୍ମାଇଲ ଫେସ୍' ସେ ମୋଟରୁ ଦେଖାନ୍ତି ନାହିଁ । ମାତ୍ର କେତେବେଳେ କେମିତି କଲିକତି ଖବରକାଗଜଆ ଗଡ଼ମା ଗୋଟେଅଧେ ଫୁଟେଇ ଦିଅନ୍ତି ଯାହା ସହିତ ଆମ ସହରର କୌଣସି ସମ୍ପର୍କ ନଥାଏ । ଏବେଣ ନେତା ଭାବନ୍ତି, ତାଙ୍କର ମାଲ୍ ଟଙ୍କ ବେଶି ମାତ୍ର ସେ କିଛି ଡାଇରେକ୍ଟ ରିଟର୍ଣ୍ଣ ପାଉ ନାହାନ୍ତି । ମନ ଉଣା ହେଲଣି, ହେଲେ ଉପାୟ କିଛି ନାହିଁ । ଗୃହିବା ଶିଖେଇ ଯାଉ ମହି ଗସ୍ତାରେ ଗୁଡ଼ଡ଼େଲେ କାଳେ ଓଲଟା ଗ୍ରେଟ ପଡ଼ିବ, ସେ ଭୟ ବି ଅଛି । ନେତା କିନ୍ତୁ ଗୋଟାଏ କଥା ଅଲବତ୍ ଖେୟାଲ ରଖିଥାନ୍ତି, ତାହାହେଲା ଉପରୋକ୍ତ ଡୋ-ସାମ୍ବାଦିକ ଆମ ସହରକୁ ଆସିଲାବେଳେ ସେ ଯେମିତି ହେଲେ ନିଜେ ସହର ଗୁଡ଼ ପାର ହୋଇଯାଇ ଥାଆନ୍ତି । ପିଓର ଭେଜିଟେରିଆନ୍ ମାର୍ଜାର କି ନା ! କିଏ ଚ୍ୟାଲେଞ୍ଜ କରିବ କରୁଥାଉ । ପୁନଶ୍ଚ, ନେତା ହେଉଛନ୍ତି ବିରୋଧୀ ଦଳର ଅଥଚ ସରକାରୀ ଦଳରେ ତାଙ୍କ ଧାପ ମଧ୍ୟ କମ୍ ନୁହେଁ । ମାନେ, ଉଭୟ ଟଂ କୁ ତାବଲି ବି ଟଂ ।

ଗୋଟିଏ ସାମ୍ବାଦିକ-ରାଜନୈତିକ ବ୍ୟକ୍ତିଙ୍କ ସମ୍ପର୍କ ବର୍ଣ୍ଣନା କରିବାକୁ ଯାଇ ଉଦାହରଣରେ ସ୍ୱାମୀ-ସ୍ତ୍ରୀଙ୍କ କଥୋପକଥନ ବୟାନ କରାଯାଇଥିବା ଅନେକଙ୍କୁ ନିଶ୍ଚୟ ଅନୈତିକ ପରାୟ ଲାଗିବ । ଏକଥା ଲେଖକ ନିଜେ ଅଙ୍ଗୀକାର କରୁଛି କାରଣ ତାକୁ ମଧ୍ୟ ସେଇଆ ଲାଗିଛି । ଯେତେ ହେଲେ, ଦାମ୍ପତ୍ୟ ଗୋଟିଏ ବ୍ରତ । ସେଇ ବ୍ରତଚାରୀମାନଙ୍କ ପରିହାସ ସହିତ ଲମ୍ପଟ ଓ ବେଶ୍ୟାମାନଙ୍କ ପରିହାସକୁ ତୁଳନା କରାଯାଇ ନପାରେ । ନିଜ ସପକ୍ଷରେ ଚଅଁର ହଲାଉଥିବା ବେଳେ ମହାତ୍ମାଗାନ୍ଧୀଙ୍କ ନିକଟତମ ବ୍ୟକ୍ତିତ୍ୱ ପରି ମୁଁ ସତ୍ୟସନ୍ଧ, ମୋ ବୃତ୍ତି ମହାନ୍ ବୋଲି କେଉଁ ସାମ୍ବାଦିକ ନ କୁହନ୍ତି ଯେ ? ରାଜନୀତିଆ ଲୋକେ ନିଜ ବିଷୟରେ କ'ଣ କୁହନ୍ତି ? ନା, ସେମାନେ କିଛି କୁହନ୍ତିନାହିଁ, ମାତ୍ର ଯାହା ପଡିଆରି ଦେଖେଇ ହୁଅନ୍ତି ତହିଁରୁ ଲୋକେ ଅନୁମାନ କରୁଥିବେ—ଓଃ ବାବା, ଏମାନେ ତ ମହାତ୍ମା ଗାନ୍ଧୀଙ୍କଠାରୁ କେତେ କାହିଁ ବଡ଼ !

ପ୍ଲାଟୋ କହୁଛନ୍ତି : Moral progress is identified with the increase in technical proficiency from generation to generation. The lowest criminal of an advanced society is virtuous in comparison with a primitive savage. ଖ୍ରୀଷ୍ଟପୂର୍ବ ଚତୁର୍ଥ ପଞ୍ଚମ ଶତାବ୍ଦୀର ଏଥେନ୍ସର ଏହି ବିଶ୍ୱବରେଣ୍ୟ ଦାର୍ଶନିକ ଯଦି କଦାପି ଆମ ଭୂଇଁକୁ ଆସିପାରନ୍ତେ, ସେ ଦେଖନ୍ତେ ଯେ ଅନ୍ତତଃ ସାମ୍ବାଦିକମାନଙ୍କର କେତେକ ମତଲବୀ କ୍ଷେତ୍ରରେ ତାଙ୍କ ଥିଓରି ଫେଲ୍ !

ଏହି ଆଲୋଚନା ମଧ୍ୟ ଏକ କିସମରେ ବହ୍ୱାରମ୍ଭେ ଲଘୁକ୍ରିୟାରେ ପରିଣତ ହୋଇଯାଇଛି କାରଣ କେଉଁଠି ପ୍ରୀତିର ଚଞ୍ଚୁ ଘଷା ଓ କେଉଁଠି ସ୍ୱାର୍ଥପାଇଁ କଲମ ଚଂଚୁ ।



# ମ୍ୟାଜିଅମର ନେତା

ପ୍ରତୀୟମାନଂ ପୁନରନ୍ୟଦେବ
ବସ୍ତ୍ୱସ୍ତି ବାଣୀଷୁ ମହାକବୀନାମ୍ ।
ଯତ୍ତତ୍ ପ୍ରସିଦ୍ଧାବୟବାତିରିକ୍ତଂ
ବିଭାତି ଲାବଣ୍ୟମିବାଙ୍ଗନାସୁ ।

(ଧ୍ୱନ୍ୟାଲୋକ-୧/୧୯)

ଉପର ଶ୍ଳୋକରେ କବି କହନ୍ତି—କୌଣସି ଲଳନାକୁ ଯଦି ରୂପସୀ ବୋଲି କୁହାଯାଏ, ରୂପର ଗୋଟିଏ ପ୍ରକାର ସାମଗ୍ରିକ ପ୍ରତିଭାତ ମୂର୍ଚ୍ଛନା ଦର୍ଶକକୁ ମୁଗ୍ଧ କରାଉଥାଏ । ପ୍ରଶଂସିତାର ନିର୍ଦ୍ଦିଷ୍ଟ କେଉଁ ଅଙ୍ଗରେ ରୂପ ରହିଛି ସେ ବାରିପାରେନା । ନିଜ ଚେତନାର ସାକାରତାରେ ସେ ଅଭିଭୂତ ହୋଇପଡ଼େ । ଉପମେୟରେ କାବ୍ୟର ପ୍ରତୀୟମାନତା କପରି ତାହା ବର୍ଣ୍ଣନା କରାଯାଇଥିଲେ ମଧ୍ୟ, ଆମେ ଆମ କାରଣ ଯୋଗୁଁ ଉପମାନର ପ୍ରସିଦ୍ଧି ଗାନକରି ତାହାକୁ ବ୍ୟାଖ୍ୟା କରିଛୁ କେବଳ ।

ବୈଜ୍ଞାନିକ କାରଣମାନ ବାଦ୍‌ଦେଲେ, ଭାବପ୍ରବଣ ହୋଇ ଅଙ୍ଗାରକୁ ସ୍ଥାଣୁତମୟ କରାଇବା ଓ ମଣିଷର ଉଦ୍‌ଗତ ଦୟାକୁ ଜାଲ ଭିତରେ ଆବୋରି ରଖିବାର ଦୁଇଟି ଉପାୟ ଆମେ ଉଦ୍‌ଭାବନ କରିଛୁ, ଯଥାକ୍ରମେ ତାହାହେଲା—ମ୍ୟାଜିଅମ୍ ଓ ଚିଡ଼ିଆଖାନା । ଏବେ ଆମେ ଖବରକାଗଜରେ ପଢ଼ୁଛୁ ଯେ ବଜେଟ୍‌ର ଏକ ତୃତୀୟାଂଶ ଖର୍ଚ୍ଚ ହେବା ପାଇଁ ଦାବି ହେଉଛି ଜନ୍ତୁମାନଙ୍କ ସଂରକ୍ଷଣ ଉଦ୍ଦେଶ୍ୟରେ । ଏହାକୁ ଏକ ଜନାଦୃତ, ଗ୍ରହଣଯୋଗ୍ୟ ପ୍ରସ୍ତାବ ଭାବେ ଯଦି ସ୍ୱୀକାର କରି ନିଆଯାଏ, ତା'ହେଲେ ଆଉ ବଳକା ରହିଲା ଦୁଇ ତୃତୀୟାଂଶ ଯାହା ସେନ୍‌ସସ୍‌ଭୁକ୍ତ ମଣିଷ ନାମକ ପ୍ରାଣୀମାନଙ୍କ ହିତାର୍ଥେ ବିବିଧ ଯୋଜନାକୁ ସମ୍ଭାଳିବ ।

ଆମ ନେତାମାନେ ସୁନ୍ଦର । ସେମାନଙ୍କ ସିଦ୍ଧାନ୍ତଠାରୁ ରୂପ ପର୍ଯ୍ୟନ୍ତ କୌଣସିଟି ନିଆରା ବାରି ନହୋଇ 'ବିଭାତି ଲାବଣ୍ୟ ମିବାଙ୍ଗନାସୁ'

ଚର ସର୍ବାଙ୍ଗୀନ ସୁନ୍ଦର ଲାଗେ । ଏଥିରେ ଶାସକ ବା ବିରୋଧୀ, ଏଦେଶ ଉଭାମନର ବ୍ୟତିକ୍ରମ ମଧ୍ଯ ନାହିଁ ।

ଆମେମାନେ ମାଟି କାନ୍ଥ ଓ ନେତାମାନେ ଆମର ଜଣେ କୁଣଳୀ ଆଲମ୍ବନାର ଚରକର । ଏହା କେବଳ ରାଜନୈତିକ ନେତାଙ୍କ କ୍ଷେତ୍ରରେ ନୁହେଁ—ସବୁ କ୍ଷେତ୍ରରେ ସେଇ ଏକା କଥା । ଯେଉଁ ବୃତ୍ତିରେ ଯିଏ ଥାଆନ୍ତୁ ନା କାହିଁକି, ସେ ଯଦି ହେଇଠି ଠିକେ ନେତା ହୋଇଗଲେ ତା'ହେଲେ ତାଙ୍କୁ ସମସ୍ତେ ମୁଗ୍ଧ ଚକିତ ନୟନରେ ଅନାନ୍ତି, ତାଙ୍କ ଷ୍ଟାଟସ୍ ବଦଳିଯାଏ । ଆମ ଦେଶରେ ଶାସନ କେତେ ବିକେନ୍ଦ୍ରୀକରଣ ହୋଇଛି ବା ହୋଇନାହିଁ ଭିନ୍ନକଥା କିନ୍ତୁ ନେତା ସୃଷ୍ଟି ମାମଲାରେ ଆମ ଗଣତାନ୍ତ୍ରିକ ସରକାର ଏହି କେସ୍ଟାରଟି ଅଲବତ୍ ନେଇଛନ୍ତି !

ନେତାମାନେ କେମିତି ନେତା ହୁଅନ୍ତି ? ଏଥିପାଇଁ କିଛି ବିଧିବିଧାନ ଅଛି କି ? ଏ ପ୍ରଶ୍ନ—ବୃକ୍ଷ ଓ ବୀଜରୁ ବା ଡିମ୍ବ ଓ କୁକୁଡ଼ାରୁ କେଉଁଟି ଆଗ ପୃଥିବୀରେ ଆବିର୍ଭାବ ହେଲାପରି ଏତେ ଅସମାଧିତ ପର୍ଯ୍ୟାୟର ନୁହେଁ । ଅନ୍ୟାନ୍ୟ ବହୁତ କଥା ଛଡ଼ା ଗୋଟିଏ ହେଲା—ନେତାମାନେ ନେତା ସୃଷ୍ଟି କରିଥାନ୍ତି ଓ ସୃଷ୍ଟ ବାଳୁତ ଦଳ ଆବଶ୍ୟକ ସମୟ ପର୍ଯ୍ୟନ୍ତ ସେମାନଙ୍କ ପୂଜ୍ୟ ପ୍ରଜାପତିଙ୍କୁ ଟେକ ଧରିଥାନ୍ତି ।

ପୂର୍ବରୁ ଯେଉଁ ମ୍ୟୁଜିଅମ୍ ଓ ଚିଡ଼ିଆଖାନାର ପ୍ରସଙ୍ଗ ଉଠାଇଛୁ ନେତାମାନଙ୍କ ସହିତ ତାହାର ସମ୍ପର୍କ କ'ଣ ଅଛି ? Menagerie (ସର୍କସରେ ଜୀବଜନ୍ତୁଙ୍କୁ ଯେମିତି ପିଞ୍ଜରା ଭିତରେ ରଖାଯାଏ—) ବା ଚିଡ଼ିଆଖାନା ବା ଅଭୟାରଣ୍ୟ ଯେମିତି ଭିନ୍ନଭିନ୍ନ କିସମର, ନେତାମାନଙ୍କ ସ୍ଥିତିରେ ମଧ୍ୟ ସେମିତି ତାରତମ୍ୟ ଦେଖାଯାଏ । ଏହା ହେଲା ସେମାନଙ୍କ ଜୀବଦ୍ଦଶା କାଳର କଥା ।

ଜୀବନୋତ୍ତର କାଳରେ କ୍ୱଚିତ୍ ମ୍ୟୁଜିଅମ୍‌ରେ ସ୍ଥାନ ପାଆନ୍ତି । ଯଥା—ସେମାନଙ୍କ ଆବକ୍ଷ ବା ପୂର୍ଣ୍ଣାଙ୍ଗ ପ୍ରତିମୂର୍ତ୍ତି ଠାଏ ଠାଏ ସ୍ଥାପନ କରାଯାଏ । ମ୍ୟୁଜିଅମ୍ ସଂରକ୍ଷଣ କମିଯିବାର ଆଉ ଯାହା କାରଣ ଥାଉନା କାହିଁକି ଗୋଟିଏ ସ୍ପଷ୍ଟ କଥା ବାରିହେଉଛି ଯେ ସାମ୍ପ୍ରତିକ ସରକାର-ଗୁଡ଼ିକ ଏଥିପାଇଁ ବଜେଟ୍ ଆଲୋକେସନ୍ ବଢ଼ାଉ ନାହାନ୍ତି ଏବଂ କାଳର

କବଳ ଗଡରେ ବହୁସଂଖ୍ୟକ ନେତା ଅଙ୍କିତ ହେଉଛନ୍ତି । ତେଣୁ ଉପରୋକ୍ତ ଅବସ୍ଥାର ମୁକାବଲା କରିବା ପାଇଁ ଚିଡ଼ିଆଖାନା ସହିତ ମ୍ୟୁଜିଅମ୍‌ର ସମ୍ପର୍କ ସ୍ଥାପନ କରିବାକୁ ସରକାରଗୁଡ଼ିକ ବାଧ୍ୟ ହେଉଛନ୍ତି । ଲଇନ୍ ଅଫ୍ ପାଓ୍ୱାର ଯେଉଁଠି, ଆବଶ୍ୟକତା ସେଇଠି ଉପୁଜୁଛି । ସମ୍ଭବତଃ, ଏହି କାରଣ ଯୋଗୁଁ ତିଲକ, ମାଳବ୍ୟ, ଗୋଖଲେ, ମହାତ୍ମା ବା ଜୟପ୍ରକାଶ ସାମ୍ପ୍ରତିକ କାଳ ପାଇଁ ଅପ୍ରାସଙ୍ଗିକ ହୋଇ ପଡ଼ିଛନ୍ତି । ମ୍ୟୁଜିଅମ୍‌ରେ ସ୍ଥାନ ପାଉନାହାନ୍ତି ।

ପ୍ରସ୍ତାବିତ ଖର୍ଚ୍ଚ ଖସଡ଼ାର ଯେଉଁ ଦୁଇ ତୃତୀୟାଂଶ ପେନ୍‌ସନ୍‌ଭୁକ୍ତ ମନ୍ତ୍ରୀମାନଙ୍କ ନିମନ୍ତେ ବିନିଯୋଗ କରାଯିବ ସେଥିରେ ସ୍ୱାଭାବିକ ସାମ୍ୟବାଦ ନ ଅଣ୍ଡାଳିବା ଉଚିତ । କାରଣ ଅଭୟାରଣ୍ୟ ସିଂହ ଓ ଚିଡ଼ିଆଖାନା ସିଂହ ସମାନ ହୋଇ ନପାରେ । ଉଦାହରଣ ନିମନ୍ତେ ଯେଉଁ ଚିଡ଼ିଆଖାନା ଓ ମ୍ୟୁଜିଅମ୍ କଥା କୁହାଗଲା ସେଥିପାଇଁ ଅନେକଙ୍କ ମନରେ ଆଲୋଡ଼ନ ସୃଷ୍ଟି ହେଉଥିବ କହିଲେ ଏ ଲେଖକ ବିଶ୍ୱାସ କରିବାକୁ ରାଜି ଏବଂ ଏକା ସାଙ୍ଗରେ ବିଶ୍ୱାସ କରିବାକୁ ରାଜି ଯେ ନିର୍ବାଚନୀୟତାର ପ୍ରତିକାର ନାହିଁ ।

'ମନ୍ତ୍ରୀ ପ୍ରସିଦ୍ଧାବସ୍ଥାବାଞ୍ଛିତଂ'—ଯେତେବେଳେ ଆବଶ୍ୟକ ନେତାଙ୍କୁ ଆମେ 'ଭଲପାଉ' ତାହାକୁ ସୂଚୀପତ୍ରରେ ବର୍ଣ୍ଣନା କରି ହେବନାହିଁ । ନକଗୁଡ଼ିବା ପର୍ଯ୍ୟନ୍ତ ସେ ଆମ ମୁଣ୍ଡ ଉପରେ ଥିବେ, ତାଙ୍କ ଧ୍ୟାନ ଆମର କଣ୍ଠି ଓ ଧାରଣା ହୋଇଥିବ ଶିରସ୍ତ୍ରାଣ !



# କାଗଜ ବାଘ

ସିବ୍ ଠିକ୍ ଘାଗ ନ ହୋଇଥିବା ଯୋଗୁଁ ମିଠେଇ ଦାନା ବାନ୍ଧି-ପାରେନା । କାରିଗର ପୂର୍ଣ୍ଣ ପରାସ୍ତ ନ ହେବା ପର୍ଯ୍ୟନ୍ତ ସିଏ ତା' ବହପ ଛାଡ଼େନା । ମୁଣ୍ଡରେ ପଶୁଥିବା ଗୋଟାକେତେ ଓଲମ୍ବଲମ୍ ବାହାନାକୁ ସେ ବଖାଣୁଥାଏ କେବଳ । ଶେଷ ଫଳ ଯାହା ହୁଏ ତାହା ହେଲା ଲଡ଼ୁ-ନାଁରେ ଝରିବୁନ୍ଦି । ଘର ପଠାଇଲା ବେଳେ ଅସହାୟ ଗୃହସ୍ୱାମୀ ଝରିବୁନ୍ଦିର ମାହାତ୍ମ୍ୟ ମଧ୍ୟ ଗାନ କରିବାକୁ ବାଧ୍ୟ ହୋଇଥା'ନ୍ତି । ନ ହେଲେ ଯାହା ଲୋକସାନ ହେବ ତାହା କାରିଗରର ପ୍ରତିଷ୍ଠା ନୁହେଁ, ନିଜର ପତଆର । ପ୍ରାତ୍ୟହିକ ଜୀବନରେ ଏମିତିଆ କାମଚଳା ସତ୍ୟକୁ ନେଇ ଆମେମାନେ ଚଳିବା ଶିଖିଗଲେ ସେଥିରେ ଦୋରସ୍ତ ହୋଇ ସାରିଲୁଣି । ମଥା ନଇଁଯିବା ପରି ଯେଉଁ ବଡ଼ ସ୍ଥାନମାନଆ ଘଟଣାଟିଏ ଘଟିଲେ ବି ଠିକେ କଲବଲ ହୋଇସାରି ପରବର୍ତ୍ତୀ ଅବସ୍ଥାରେ ଆମେ ଘଟଣାଟିକୁ ଏମିତି ସୁନ୍ଦରଭାବେ ବର୍ଣ୍ଣନା କରୁ ଯେ ତାହା ଖାଲି ଫାଷ୍ଟ୍ କ୍ଲାସ୍ ମାନବୀୟ ପରି ଜଣାପଡ଼େନା ବରଂ କେତେବେଳେ କେମିତି ଈଶ୍ୱରଙ୍କ କମାଲ୍ ପରି ଆଖି ଝଲସିଯାଏ ।

ଗୋଟିଏ ନିର୍ମାଣ ବିଭାଗର କଥା । ସାଧାରଣତଃ ଯାହା ଧାରଣା କରାଯାଏ କଥା ସେଇଆ । ହେଲେ, କ୍ଲାଇମେକ୍ସ ଆହୁରି ଅଛି । ସମସ୍ତେ ହୁରି କରୁଥା'ନ୍ତି—ସବୁ ଖାଇଦେଲେ, ଖୋଳ ହୋଇଗଲା, ଅମୁକର ସମ୍ପତ୍ତି ଦେଖ, ଅମୁକର ଠାଣି ଦେଖ ଇତ୍ୟାଦି ବିବିଧ କଥା । ସଂସ୍ଥାଟି କେନ୍ଦ୍ର ସରକାରଙ୍କର । ବାସ୍ତବିକ୍ ପ୍ରଚୁର ପଇସା ଆସେ ଏବଂ ବିଧି ବ୍ୟବସ୍ଥା ଅନୁଯାୟୀ ସମସ୍ତେ ବାଣ୍ଟି କୁଣ୍ଟି ନେଇଯା'ନ୍ତି, ଯେଉଁ ବଡ଼ ବଡ଼ ଠା' କୁ ସେୟାର୍ ପଠାଇବା କଥା ତାହା ପଠାଇ ଦିଆଯାଏ । ସବୁଲ ମାମଲା କରିବାପାଇଁ କେବଳ କାଗଜପତ୍ର କାମ ବାକି ରହିଯାଏ ।

ଥରେ ବିଧି ବାମ ହେଲାପରି ଦୂରରୁ ତଦାରଖ ସଂସ୍ଥାର ଲୋକେ ଆସି ପହଞ୍ଚିଗଲେ । ସମସ୍ତଙ୍କ କଣ୍ଠାପାଣି ମାରି । ନଶୁଆ ନଶୁଆ ବାଘୁଆ

ଲୋକଗୁଡ଼ାକ । ସେଥିରୁ ଗୋଟିକୁ ଯିଏ ଦେଖୁଛି ସେ ଭାବୁଛି ସତେ କି ତା' ସାମ୍ନାରେ କାଳଯମ ।

ଅଳନ୍ଧି ଝାଡ଼, ଅନେକ ବର୍ଷ ଧରି ଯେଉଁ ଫାଇଲଗୁଡ଼ିକ ସୂର୍ଯ୍ୟାଲୋକ ଦେଖି ନଥିଲେ ଏବଂ ଯେଥିଯୋଗୁଁ ସେଥିରେ ଥିବା କାଗଜର ବର୍ଣ୍ଣ ପରିବର୍ତ୍ତନ ହୋଇଯାଇଥିଲା, ସବୁ କଟାଗଲା । ଅନ୍ୱେଷଣ କରୁଥିବା ଲୋକେ ଗୁପି ଗୁପି ଉନ୍ମତ୍ତ ହେଉଥା'ନ୍ତି । ଯାହା ହେଉ, ଥୋଡ଼ାଏଙ୍କର ଏଇଥର ଦୁର୍ମାତିର ବଣ୍ଡ ମରିଯିବ । ଅଲ୍ଲାହ କେ ଦରବାର୍ ମେ ଦେର୍ ହୈ, ଅନ୍ଧେର ନେହିଁ ।

କାଗଜପତ୍ର ତଦାରଖ ତିନି ଦିନ ଚାଲିଗଲା । ବଡ଼ଲୋକ ଯେତେ ଗରହସିଆର ହୋଇଥିଲେ ବି କଦାପି ମାଛ କାତକୁ କପାଳରେ ଟିକା ସଜେଇ ବୁଲେ ନାହିଁ । କାଗଜପତ୍ରରେ ଆପାତ ଗଫଲତି କିଛି ମିଳୁ-ନଥାଏ । ତଦାରଖ ସଫା କହିଲେ ଆମେ କ୍ୟାସ୍ ଚେକ୍ କରିବୁ । ବଡ଼ ହାକିମ କହିଲେ, କ୍ୟାସିଅର୍ ଛୁଟିରେ । ହାଜିରା ବହି ଦେଖାଗଲା । "କି ଅଦ୍ଭୁତ କଥା, ଆମେ ତିନି ଦିନ ହେଲା ଏଠି ଅଛୁ ଅଥଚ ଆପଣ ଗତକାଲି ତାକୁ କେମିତି ଛୁଟି ଦେଇ ଦେଲେ ?" ଏପରି ତୋଡ଼ ପ୍ରଶ୍ନର ଉତ୍ତରରେ ହାକିମ କହିଲେ, "ଦେଖନ୍ତୁ ନା, ଟେଲିଗ୍ରାମ୍ । ମଦର୍ ତା'ର ସିରିଅସ୍ ଇଲ୍ । ଗୁହାରି କଲେ ବି କେମିତି ଆମେ ଅମଣିଷ ହେବୁ, କୁହନ୍ତୁ ତ ।"

ଏଇଥର ତଦନ୍ତକାରୀ ଅଫିସର୍‌ମାନଙ୍କ ସନ୍ଦେହ ଦାନା ବାନ୍ଧିଲା । ସେମାନେ କହିଲେ, ତା' ପରମାନେଣ୍ଟ୍ ଆଡ୍ରେସ୍ ବାହାର କରନ୍ତୁ ଆମେ ତା' ଘରକୁ ଯିବୁ । ତାହାହିଁ ହେଲା । ସଦଳବଳେ ପ୍ରାୟ ଦେଡ଼ ଶହ କିଲୋମିଟର୍ ଜଙ୍ଗଲିଆ ରାସ୍ତାରେ ସେମାନେ ଗଲେ । ଯିବା, ଫେରିବା ଦୁଇଦିନ । ପରର କଥା । ତାଙ୍କ ଘରେ ପହଞ୍ଚି ସେମାନେ ଯାହା ଶୁଣିଲେ ତାହା ହେଲା କ୍ୟାସିଅର୍ ବାବୁଙ୍କ ମା' ପୁଅକୁ କଲ୍ୟାଣ କରି ତହିଁକୁ ପ୍ରାୟ ଦଶବର୍ଷ ପୂର୍ବରୁ ସ୍ୱର୍ଗବାସ ବରଣ କରି ନେଇଛନ୍ତି ।

ଚୋରକୁ ଗୋଡ଼ୋଉ ଗୋଡ଼ୋଉ ହେଇ ଧରିପକାଇଲା ଗୌରବ ବେଳକୁ ପୋଲିସ୍ ହାତରେ ଯଦି ଚୋରର ଗାମୁଛାଟି ଧରାପଡ଼ିଯାଏ ଏବଂ

ରୁର ଚମ୍ପଟ ମାରନ୍ତେ, ସେତେବେଳେ ପୋଲିସ୍ ବାବୁଙ୍କର ଯେମିତିଆ ପ୍ରଚଣ୍ଡ କ୍ରୋଧ ହେବା କଥା, ତଦନ୍ତକାରୀ ଦଳ ଏହାଠାରୁ କମ୍ ତାତିଯାଇ ନଥିଲେ । ହେଡ୍‌କ୍ୱାର୍ଟରକୁ ଫେରିଲେ । ଜଗିବସିଲେ । ବେଟା, ଏଥର ସବୁ ଲୁଆତେଡ଼ି ଯିବ ! ରାତିରେ ବି ନାଇଟ୍ ଗାର୍ଡ଼ ଦେଲେ ।

ଆଉ ଦୁଇ ଦିନ ପରେ କ୍ୟାସିଅର୍ ବାବୁ ଦପ୍ତରକୁ ଆସିଲେ । ତଦନ୍ତକାରୀ ସଂସ୍ଥାର ସମସ୍ତେ ଏକାବେଳେ ଝାମ୍ପି ଉଠିଲେ । କ୍ୟାସିଅର୍ ବାବୁ କହିଲେ, ହଜୁର୍‌ମାନେ ଧର୍ଯ୍ୟ ଧରନ୍ତୁ । ମୋ ପାଖରେ ସବୁ ଅଛି । ତତ୍ପରେ ଅର୍ଦ୍ଧୋଚ୍ଚାରିତ କଣ୍ଠରେ ଲକ୍ଷ୍ମୀ-ମନ୍ତ୍ରଟିଏ ପଢ଼ି ନିଜର ସିରସ୍ତା ଆଲମିରା ଓ ଟ୍ରେଜେରି ଖୋଲିଦେଲେ । ଟ୍ରେଜେରି ଭିତରେ କେତେଗୁଡ଼ିଏ ଶୁଖା ଫୁଲ ଓ ଗୋଟିଏ ହନୁମାନ ଚଳିଶା ଛଡ଼ା ଆମ ମିଣ୍ଟ୍‌ରେ ତିଆରି ହୋଇଥିବା ବୈଧାନିକ ମୁଦ୍ରା କୋଡ଼ିଏ ପଇସିଟିଏ ଥିଲା । ଭାଉଚର୍ ସବୁ ସହ ହିସାବ ମିଳାଇଲା ବେଳକୁ ଦେଖାଗଲା କାଚ କାହିଁ ଏତେ ପ୍ଲେନ୍ ହେବ କି !

ତଦନ୍ତକାରୀ ହାକିମ କ'ଣ ଗୁଣ୍ଡିବା ଲୋକ ? 'ମଦର୍ କ୍ରିଟିକାଲି ଇଲ୍' ବୋଲି ଟେଲିଗ୍ରାମ ଦେଖାଇ ଘରକୁ ଗଲେ ଯେ, ତୁମେ ତ ଘରେ ନଥିଲ । କୁର୍ଣ୍ଣିସ୍ ହୋଇ କ୍ୟାସିଅର୍ ବାବୁ କହିଲେ, "ସାର୍ ! ସେଇ ଟେଲିଗ୍ରାଫ୍‌ବାଲା ଆଉ କ'ଣ କାମ କରୁଛନ୍ତି ? ଦେଖୁନାହାନ୍ତି ସାର୍, ଟେଲିପ୍ରିଣ୍ଟର୍ ମେସେଜ୍ ଷ୍ଟ୍ରିପ୍‌ରେ ଠିକ୍ ଠିକ୍ ଅଠା ମାରୁନାହାନ୍ତି ଯୋଉଥି ସକାଶେ 'ଇନ୍ ଲ' ମୋ ପକେଟ୍‌ରେ ।" ଏତିକି କହି ସତକୁ ସତ ଟିକି କାଗଜଟିଏ କାଢ଼ିଲେ । ବର୍ଣ୍ଣନା କଲେ, 'ମଦର୍' ଘରଠାରୁ 'ମଦର୍ ଇନ୍-ଲ' ଘରର ଦୂରତା ଦୁଇ ଶହ କଲୋମିଟର୍ । "ଆପଣମାନେ ସାର୍ ମୋତେ ଖୋଜିବା ପାଇଁ ଏତେ କଷ୍ଟ ପାଇଲେ, ମୁଁ ଭାରି ଦୁଃଖିତ ।"

ଆଇନ୍‌ର କଡ଼ମଡ଼ ଦାନ୍ତ ସବୁ ଭାଙ୍ଗିଯାଇଛି ବୋଲି ସିଓର୍ ହୋଇସାରି ଦୁଇ ମୁଖ୍ୟ ରେଡ଼୍ ଲାଇଟ୍ ଜଳାଇ ଦପ୍ତରରେ ବସିଲେ । ଅନ୍ଦରମହଲରୁ ଯାହା ଶୁଣାଯାଏ ତାହା ଥିଲା ଏହିପରି "ଯାହା ତ

କଲ କଲ, ଆମେ କ'ଣ ବୁଝିପାରୁନୁ ? ପ୍ରମାଣ କରିବାକୁ ଟିକିଏ କଷ୍ଟ ବାଟ ଥିଲେ ସମସ୍ତଙ୍କ ନାକରେ ରଶି ପକେଇ ଟାଣି ନେଇଥା'ନ୍ତୁ । ଆମେ ଛଅଟା ଲୋକ ସାତଦିନ ବେକାର । କ'ଣ କରିବା ?"

ଏ ବଗଟ ପ୍ରଶ୍ନକାରୀର ସମୁଚିତ ଉତ୍ତର ଦେବାକୁ ଯାଇ ଦପ୍ତର ମୁଖ୍ୟ କହିଲେ, "ଆମ ଭିତରେ ଅଣ୍ଡରଷ୍ଟାଣ୍ଡିଂ ନଥିଲା ସାର୍ ! ନହେଲେ ଜଣେ ଘଣ୍ଟାକ ପାଇଁ ଆସିଥିଲେ ବି କାମ ସରିଥା'ନ୍ତା । ଏଣିକି ସାର୍ ଏତେବାଟ ଆସିବା କଷ୍ଟ ଆପଣଙ୍କୁ ବରଣ କରିବାକୁ ହେବ ନାହିଁ । ଆମେ ଦେଶ ନିର୍ମାଣ କରୁଛୁ, ଏଇ ସାଧାରଣ ଦାୟିତ୍ୱଟିଏ ଆପଣଙ୍କ ଲାଗି ନେଇପାରିବୁ ନାହିଁ ?"

ଏହାପରେ ବଜପ୍ଟି ଦଳ କହୁଛନ୍ତି : 'ବୁଝ ନଜର ଓହ୍ଲାଲେ ତେତେରେ ମୁହିଁ କାଲ !'



# ଉଦ୍ଧଣ୍ଡ ପୂଣ୍ୟ

ଇଂଲଣ୍ଡର ଟେଙ୍ଗ୍ୱିନ୍-ଭାଇକାଙ୍ଗ୍ ସଂସ୍ଥା ଦ୍ୱାରା ପ୍ରକାଶିତ ସଲ୍‌ମାନ୍ ରଶ୍‌ଦିଙ୍କ 'ସାଟାନିକ୍ ଭର୍ସେସ୍' ବେଶ୍ ଏବେ ବିଶ୍ୱ-ସଭା ଜମେଇ ଦେଲାଣି । ଏ ଲେଖକ ତାହା ପଢ଼ିନାହିଁ ବା ଲୁଗ୍ଗୁଛପାରେ ନମିଳିବା ପର୍ଯ୍ୟନ୍ତ ପଢ଼ିବାର ଗ୍ରନ୍ଥ ମଧ୍ୟ ନାହିଁ । ତେଣୁ ବହି ସମ୍ପର୍କରେ କିଛି ଆଲୋଚନା କରିବାକୁ ଅଭାଜନ ବୋଲି ନିଜ ତରଫରୁ ନିଜେ ଆମେ ଘୋଷଣା କରିଦେଲୁ ।

ପାକିସ୍ଥାନରେ ଏହି ବହିକୁ କେନ୍ଦ୍ରକରି ଦଙ୍ଗା ହୋଇସାରିଛି ଏବଂ ଭାରତରେ ଏହାର ସ୍ୱୀନକ୍ଷୀନ ନିକ୍ୱଣ ଯେଉଁଠି ଶୁଣାଯିବା କଥା ସେ କାମ ବି ଫତେ ହୋଇସାରିଲାଣି । ଧର୍ମ ଜରିଆରେ ରାଜତନ୍ତ୍ରକୁ ବିତାଡ଼ିତ କରି ରାଷ୍ଟ୍ରକୁ କାବୁ କରି ରଖିଥିବା ଇରାନ୍‌ର 'ସୁପ୍ରିମୋ' ଆୟତୋଲ୍ଲା ରୁହୁଲ୍ଲା ଖୋମେନି, ସମ୍ବାଦ ଅନୁଯାୟୀ, ରଶ୍‌ଦିଙ୍କୁ ଫାଶି ଅର୍ଡ଼ର କରି ଦେଇଛନ୍ତି । "ମଡ଼ାମଡ଼ି କମର, ନାହିଁ ଢାଲ ତଲୁଆର୍ / ନାଁ କିନ୍ତୁ ମୁଛ ରଖା ନିଧିରାମ ସରଦାର ।" ଏ କଥା ଏଇଥିପାଇଁ କୁହାଗଲା ଯେ ଖୋମେନିଙ୍କର ଏହା ପ୍ରଥମ ଫାଶି ଆଦେଶ ନୁହେଁ । ୧୯୭୮-୭୯ରେ ନିଜେ ଆମେରିକାରେ ରହି (ଏପରି କାର୍ଯ୍ୟ କରିବାକୁ ସୁନ୍ଦର ଦେଶଟିଏ) ଇରାନ୍ ଭୂଇଁରେ ବିପ୍ଳବ କରାଇଥିବା ଏହି ଧର୍ମାତ୍ମା ମହାପୁରୁଷ ଦେଶର ନିରବଚ୍ଛିନ୍ନ ଅଢ଼େଇ ହଜାର ବର୍ଷର ରାଜତନ୍ତ୍ରକୁ ଲୋପ କରାଇ ଇରାନ୍‌ର ଶେଷ ସମ୍ରାଟ ଶାହା ମହମ୍ମଦ ରେଜା ପହଲବିଙ୍କୁ ଦେଶରୁ ଖେଦି ସାରି, ତାଙ୍କ ଅନୁପସ୍ଥିତି (in absentia)ରେ ତାଙ୍କୁ ଫାଶିଖୁଣ୍ଟରେ ଝୁଲାଇ-ଦେଲେ !

ପୃଥିବୀର ଅଜସ୍ର ଇସ୍‌ଲାମ୍ ରାଷ୍ଟ୍ରକୁ ପଛରେ ପକାଇ ଆମ ସରକାର ରଶ୍‌ଦିଙ୍କ ବହିର ପ୍ରସାରଣକୁ ଆଗତୁରା ନିଷେଧ କରିଦେଲେ । ଯେତେ-ବେଳେ କେତେକ କୌତୂହଳପୂର୍ଣ୍ଣ କଥା ସମ୍ବାଦପତ୍ରଗୁଡ଼ିକରେ ପ୍ରକାଶ ପାଇଥିଲା । ଭାରତ ସରକାରଙ୍କର ଯେଉଁ ବିଚକ୍ଷଣ ପଦାଧିକାରୀମାନଙ୍କୁ

ପଚରାଯାଉଛି, ପ୍ରତ୍ୟେକ କହୁଛନ୍ତି, "ମୁଁ ପଢ଼ିନାହିଁ।" ତା'ହେଲେ ସ୍ୱତଃ ପ୍ରଶ୍ନ ଉଠୁଛି—କ'ଣ ବାହାର ମଲାଟ ଦେଖି ଭିତରିକା ଅନୁମାନ କରାଯାଇ ପାରିଲା କି? ନା ଡାହାଣୀ ଯଦି ନୂଆ ହୋଇଥାଏ ଅନ୍ଧାର ପୂରା ଘୋଟିବା ପୂର୍ବରୁ 'ସେ କଥା' ଚରିବାକୁ ସେ ବାହାରିଯାଏ। ଆମେ ସାମ୍ବିଧାନିକ ଭାବେ ଧର୍ମନିରପେକ୍ଷ କି ନା! କାଳେ ପଣ୍ଡଆରା କୋଉଠି ହୁଗୁଳିଯିବ ତେଣୁ ଯାହା ହେଲେ ବାଟ୍ଟର କରି ଗୋଟାଏ କ'ଣ ଦେଖେଇଦେଲେ ଯାଏ। ବୋଧହୁଏ ଏହାଛଡ଼ା ବଡ଼ 'ବାଗ୍ଗର' ଆମ ସରକାରଙ୍କ ପାଖରେ ନଥିବ। ଆମ ସରକାର ତ ବହୁ ଆଗରୁ ମୁଗୁରା ମୁହିଁ ଟାଇଟ୍ କରିଥିଲେ, ଆମ ଦେଶରେ ତା'ହେଲେ ଦଙ୍ଗା ହେଲା କାହିଁକି? ଅସହାୟତାର ଜାଲ ଭିତରେ ପଡ଼ି ପ୍ରତିକାରହୀନ ଭାବେ ସାଧାରଣ ମଣିଷଗୁଡ଼ାକ ଯାହା ବାରିପାରୁଛନ୍ତି ତାହା ହେଲା—ଧର୍ମ ଯେଉଁ ନାଁ ନେଇଥାଉ ନା କାହିଁକି ତାହା ଗୋଟାଏ ପ୍ରକାର ଖୋଷା। ଖୋଷା ବିଷାକ୍ତ ନୁହେଁ, ମାତ୍ର ଭିତରେ ଥିବା ବିଷାକ୍ତ ପୋକଗୁଡ଼ିକ ଯେନତେନ-ପ୍ରକାରେଣ ନିଜେ ସୁରକ୍ଷିତ ରହିବେ—ଏହି ପରମ ଲକ୍ଷ୍ୟ ନେଇ ସେମାନେ ଖୋଷାକୁ ଜବରଆ କରିଦେଉଛନ୍ତି। କୌଣସି ସମୟର ଧର୍ମ ସେଯାବତ୍ ପ୍ରମାଣିତ ଆପାତ ବୈଜ୍ଞାନିକ ସିଦ୍ଧାନ୍ତକୁ ଗ୍ରହଣ କର୍‌ବାକୁ ବାଧ। ମାନ୍ଧାତା ଅମଳର ରୂଢ଼ି ତ୍ୟାଗ କରି ଧାର୍ମିକମାନେ ନିଜ ନିଜର ମାନସିକ ଆଚରଣକୁ ସଚେତନ ବା ଅବଚେତନ ଭାବେ ସଜାଡ଼ି ଯୁଗୋପଯୋଗୀ ହୋଇପଡ଼ନ୍ତି। ତା' ଯଦି ନହୋଇଥା'ନ୍ତା, ମୋହଗ୍ରସ୍ତ ଧର୍ମ ଚିନ୍ତାରେ ଏବେ ମଧ୍ୟ ପୃଥିବୀ ଗ୍ରହପାଖରେ ସୂର୍ଯ୍ୟ ବୁଲୁଥା'ନ୍ତା! କାରଣ, ପ୍ରାୟ ୧୫୦୦ ଖ୍ରୀ. ଅ. ବେଳକୁ କପର୍‌ନିକସ୍ (Nicolaus Copernicus, 1473-1543) ସୂର୍ଯ୍ୟ ଆମ ସୌରଜଗତର କେନ୍ଦ୍ରରେ ବୋଲି ତାଙ୍କ ତତ୍ତ୍ୱ ବାଢ଼ିଲେ ଏବଂ ପୃଥିବୀର ଯେତେକ ମହାନ୍ ଧର୍ମ, ସେମାନଙ୍କ ଉତ୍ପତ୍ତି ତତ୍ପୂର୍ବରୁ ହୋଇଥିବାରୁ, ସେମାନେ କ'ଣ ଏଯାଏଁ ଏ ବିଷୟରେ ଆଇଡ଼ିଆ ବଦଳାଇ ନାହାନ୍ତି କି?

କଥା ସେଠାରେ ନୁହେଁ। ଆମ ଧର୍ମାଧିକାରୀଗଣ ଯେମିତି ହେଲେ ବୁଝାଇବାକୁ ଚାହାଁନ୍ତି ଯେ କାହାରିକୁ ସାକ୍ଷୀ ନ ରଖି ପ୍ରଭୁ ଧର୍ମଙ୍କୁ ଭି.ପି.ପି.ରେ ପଠାଇଥିଲେ, ଯାହା ସ୍ୱଚ୍ଛ ସୂତ୍ରରେ ଏବେ ସେମାନଙ୍କ

ପାଖକୁ ଆସିଛୁ । ମଣିଷ ଆଗେ ଆସିନ; ପ୍ରତିକୂଳ ପରିବେଶ ଭିତରେ କେମିତି ସେ ବଞ୍ଚିଲ ଅନ୍ୟାନ୍ୟ ପ୍ରାଣୀଙ୍କଠାରୁ ନିଆରା ହେବ, ଏହି ଗରଜ ତା' ମନ ଭିତରେ ଆସିନ; ଶାସ୍ତ୍ରୀଲୁ ଯେ ପ୍ରୟୋଗ କରିନାହିଁ ତଥାପି ତା' ପୂର୍ବରୁ ତଥାକଥିତ ଧର୍ମମାନ ଆସିଯାଇଥିଲା ? ଏହାଠାରୁ ବଳି ଅବୈଜ୍ଞାନିକ ବିତଣ୍ଡା ଆଉ କିଛି ଥାଇପାରେ କି ? ସଂଗଠିତ ଡକାୟତ ଦଳ, ସଂଗଠିତ ରାଜନୈତିକ ଦଳ, ସଂଗଠିତ ମିଥ୍ୟାଗ୍ରସ୍ତ ଦଳ ଛଳେବଳେ କୌଶଳେ ଆପେକ୍ଷିକ ସମାଜରେ ନିଜର ପ୍ରତିପତ୍ତି ଜାହିର୍ କରିବାକୁ ଯେମିତି ସମର୍ଥ, ଠିକ୍ ସେହିପରି ଦଳେ ତଥାକଥିତ ଧର୍ମ ସଂରକ୍ଷଣକାରୀ ବିବିଧ ଉପାୟରେ ସେହି କାର୍ଯ୍ୟ କରିପାରିବେ ନାହିଁ ବୋଲି ଆମେ ବା ଅବିଶ୍ୱାସ କରିବା କାହିଁକି ?

ଧର୍ମର ମହାମାୟିତା ଏବଂ ଧର୍ମ ନାଁରେ ଅଳୀକତା ସୂଚାଇବା ପାଇଁ ଗୋଟିଏ ଉଦାହରଣ ମନେପଡ଼ୁଛି । ଆଜକୁ ପ୍ରାୟ ଦଶ ବର୍ଷ ତଳେ ବମ୍ବେ-ହାଓଡ଼ା ରେଳଲାଇନ୍ କଡ଼ରେ ହଠାତ୍ ଗୋଟିଏ 'ତୀର୍ଥପୀଠ' ଗଢ଼ି ଉଠିଲା । ସାଧାରଣତଃ 'ପୀଠ'ଗୁଡ଼ିକ ଯେମିତି ଆରମ୍ଭ ହୁଏ, ଯଥା— ବରଗଛଟିଏ ଥିବ; ସେଥିରେ ପୂଜାଏ ସିନ୍ଦୂର ମରାଯିବ; ଗଛର ଶିଖ ଉପରକୁ ଜଗତ ଦେଖିଲା ପରି ତିନିକୋଣିଆ ଧର୍ମଧ୍ୱଜାଟିଏ ଉଡ଼ାଇ ଦିଆଯିବ; ଗୋଟିଏ ପିଣ୍ଡି; ସନ୍ଧ୍ୟାରେ ଗଞ୍ଜେଇ ସଂକୀର୍ତ୍ତନ; ଭକ୍ତମାନଙ୍କ ନିମନ୍ତେ ଗ୍ରାମୁଡ଼ିଆଠାରୁ ଆରମ୍ଭ କରି ରେନ୍‌ଫୋର୍ସଡ କଂକ୍ରିଟ୍ ଘର; ଧୀରେ କୌଣସି ଠାକୁର ବା ଠାକୁରାଣୀଙ୍କ ମହିମାର ଗୁଜବ ପ୍ରଚାର— ସବୁ ସେଠାରେ ହେଲା । ସମୟାନୁକ୍ରମେ ଦେଖାଗଲା ଯେ ମନ୍ଦିର ଯୋଗୁ ସ୍ଥାନଟିର ମହିମା ଏତେ ବଢ଼ିଲା ଯେ ନିକଟର ଓ୍ୱାଗନ୍‌ବ୍ରେକରମାନଙ୍କୁ ଦାଗବାଦିଗ ବୁଲି ପୋଲିସ୍ ନ ଖୋଜି ସେହି ମନ୍ଦିରଟିକୁ ଉଭୟପକ୍ଷ ନିଜର ମିଳନ ସ୍ଥଳରେ ପରିଣତ କରିଦେଲେ । ଆନୁଷଙ୍ଗିକ ଅବଶ୍ୟମ୍ଭାବୀ ଶୋଷ—ଜୀବନ ଯୌବନର ଅବଦମିତ ଜୁଆରମାନ ରାତିରେ ସେଇ ପ୍ରାଙ୍ଗଣରେ ଖାଲି ଚକାଭଉଁରି ଖେଳିଲେ । ଫଳତଃ ଦେଖାଗଲା ଯେ ଦକ୍ଷିଣ-ପୂର୍ବ ରେଳବାଇ ଓ ବୀମା କମ୍ପାନୀର କ୍ଷତି ବହୁତ ବଢ଼ିଚାଲିଲା ।

ସମସ୍ତେ ଜାଣିପାରୁଥାନ୍ତି ହେଲେ ଉପାୟ ନଥାଏ । କାରଣ ସେଇ ପୀଠକୁ ଫୁରସତ୍ ନ ଦେଇ ଆଗ୍ରହୀଙ୍କ ପରେ ପରମାଗ୍ରହୀ, ମହିମାଗ୍ରହୀ,

ବିଶ୍ୱାଚାର୍ଯ୍ୟ, ଜଗତାଚାର୍ଯ୍ୟ ଆଦି ବାରମ୍ବାର ଆସୁଥାନ୍ତି । ସେ ପୀଠକୁ ଆଙ୍ଗୁଠି ଦେଖେଇବାକୁ କାହାର ବହପ କୁଳେଇବ ? ସେଥିକୁ ପୁଣି ରାଜନୈତିକ ଶଙ୍କରାଚାର୍ଯ୍ୟମାନଙ୍କର ଅଭୟମୁଦ୍ରା ଦଣ୍ଡେ ମୁହୂର୍ତ୍ତେ ପାଇଁ ସ୍ଥାନାନ୍ତରିତ ହେଉନଥାଏ । ଥରେ ଜଣେ କଲେକ୍ଟର ବୁଲ୍‌ଡୋଜର ଚଳେଇ ସବୁ ବାଡ଼େଇ ସାବାଡ଼ କରିଦେଲେ । ପରେ ପରେ ତାଙ୍କର ବଦଳି ହୋଇଗଲା ଅବଶ୍ୟ; କିନ୍ତୁ ରେଳବାଇ ଓ ବୀମା କମ୍ପାନୀର କ୍ଷତି ବହୁତ କମିଗଲା ।

ଏଭଳି ପ୍ରବଞ୍ଚକମାନଙ୍କୁ କଷଟିରେ ପରଖିଲା ବେଳକୁ ଆମ ଅଚ୍ୟୁତାନନ୍ଦଙ୍କର ଗୋଟିଏ ଉକ୍ତି କାହିଁକି ଭାରି 'ଆପ୍ରୋପ୍ରିଏଟ୍' ଲାଗୁଛି : "କାଠମାଳିଆ ଭଗତ / ଝିଙ୍ଗଲମୁଣି ପେଲା ଯେ ଜନମତ / ହେ ଭକ୍ତ ଜନ / ଗୋଟି ଗୋଟି ଧରାପଡ଼ିବେ ତ ।" ଅବଶ୍ୟ ବିଶ୍ୱ କଥା ଦେଖିଲାବେଳକୁ ଅଚ୍ୟୁତଙ୍କ କଳ୍ପନା ହିଗବଳୟଠାରୁ ଆହୁରି ଆହୁରି ଦୂରକୁ ହଟିଗଲା ପରି ଲାଗୁଛି । ତଥାପି ଗୋଟିଏ କଥା ଅନୁଭବ କରିହେଉଛି—ଧର୍ମ ମହତ ମଣିଷ ସୃଷ୍ଟି କରିପାରେ; ମାତ୍ର ଅମହତ ମଣିଷଗୁଡ଼ାକ ପୃଥିବୀକୁ ଓଲଟ-ପାଲଟ କରିଦେଇପାରନ୍ତି ପଛେ, ଧର୍ମ ସୃଷ୍ଟି କରିପାରିବେ ନାହିଁ ।

ରସିଦଙ୍କୁ ପଦେ : ଯେତେ ଆର୍ମି ଗାର୍ଡ୍ ରଖିଲେ ବି ତୁମକୁ ମାରି ଦିଆଯାଇପାରେ । ମରିଯାଅ । ଇତିହାସରେ ବହୁ ମୂର୍ଖ ବହୁ ଯୋଗୀଙ୍କୁ ହତ୍ୟା କରିଛନ୍ତି । ତୁମେ ମୂର୍ଖ ସଂଖ୍ୟା କମେଇ ପାରିବ ? ତା' ହୋଇଥିଲେ ସେମାନେ ବହୁ ପୂର୍ବରୁ ଏ ଧରାଧାମରୁ ନିଶ୍ଚିହ୍ନ ହୋଇଯାଇ-ଥା'ନ୍ତେ ।

ତୁମ ପରି ଜଣେ ଲେଖକ ଯଦି ତା'ର ଲେଖାପାଇଁ ମରେ ତାହା ହେବ ପ୍ରଜ୍ଞାର ମୃତ୍ୟୁ, ମଣିଷର ନୁହେଁ । ଶପ୍ପର୍ସ ରସିଦ, ଶପ୍ପର୍ସ !



# ପରିଚୟ ସଙ୍କଟ

ପ୍ରାୟ ଛ' କୋଟି ବର୍ଷ ପୂର୍ବେ ଆମ ପୃଥିବୀରେ ଜୀବ ଜଗତ ସୃଷ୍ଟି ହୋଇଥିଲା ବୋଲି ବୈଜ୍ଞାନିକମାନେ ଅନୁମାନ କରନ୍ତି । ଡାରଉଇନଙ୍କ ବିବର୍ତ୍ତନବାଦକୁ ଅନୁଧାବନ କରି ସ୍ୱିଡ଼େନର ପ୍ରକୃତି ବିଜ୍ଞାନୀ ଲିଇନିଅସ 'Carolus Linnaeus' ପ୍ରାଣୀଜଗତକୁ ଶ୍ରେଣୀ ବିଭାଜନ କଲାବେଳେ ମଣିଷ 'Home Sapiens' ଓ ମାଙ୍କଡ଼ 'Primates Aie'ଙ୍କ ମଧ୍ୟରେ ବୁନିଆଦ ସମ୍ପର୍କ ଅଛି ବୋଲି କହିଲେ । ବୈଜ୍ଞାନିକମାନଙ୍କର ଏହି ସମ୍ପର୍କ ଯୋଡ଼ା ଅନବରତ ଚାଲିଛି । ଫସିଲ୍‌ଠାରୁ ଆରମ୍ଭ କରି ପ୍ରତ୍ନତାତ୍ତ୍ୱିକ ଗବେଷଣା ପର୍ଯ୍ୟନ୍ତ ଝାଳନାଳ ହୋଇ ସେମାନେ ଯେମିତି ହେଲେ ପ୍ରମାଣ କରିବାକୁ ଚାହାନ୍ତି ଯେ ଆମର ପୂର୍ବ-ପୁରୁଷ ମାଙ୍କଡ଼ ଥିଲେ ଏବଂ ଖାଲି ସେମାନଙ୍କ ଲାଙ୍ଗୁଡ଼ଟା କ୍ରମେ କ୍ରମେ ଗଛ, ପଥର ଆଦିରେ ଘଷି ହୋଇ ହୋଇ ଉଭାନ ହୋଇଯାଇଛି । ନହେଲେ କୁଆଡ଼େ 'ଜୁଟିଲକକାଳ' ସବୁ ସମାନ ।

ପ୍ରଶଂସା ପାଇଁ ଗୋଟିଏ ପ୍ରସ୍ତାବନା ଏବଂ ଉତ୍ତର ମିଳୁନଥିବା ଆଉ ଗୋଟିଏ ପ୍ରଶ୍ନ ଯଥାକ୍ରମେ ହେଲା—ଯାଦୁ ବା କୁଣ୍ଡିଆ ହୋଇଥିବା ଯୋଗୁ ଏବଂ ତାହା ପ୍ରବଳ ସଂକ୍ରାମକ ରୂପ ଧରିଥିବାରୁ ଆମ ପୂର୍ବପୁରୁଷଗଣ ନିଶ୍ଚୟ ଯୋଉଠି ପାରି ସେଠି ନିଜ ନିଜର ଲାଙ୍ଗୁଡ଼ମାନ ନିଶ୍ଚିହ୍ନ ହେବା ପର୍ଯ୍ୟନ୍ତ ପୁରୁଷାନୁକ୍ରମେ ଘଷି ଚାଲିଥିବେ, ସମ୍ଭବତଃ ଅବଚେତନ ଭାବେ । ତେଣୁ ଯାଦୁ ବା କୁଣ୍ଡିଆକୁ ଧନ୍ୟବାଦ । ନ ହେଲେ, ଫେର୍‌କାମି ମାରିବାକୁ ଆମେ ଆବିର୍ଭାବ ହୋଇଥା'ନ୍ତୁ ବା କେମିତି ? ଅନ୍ୟ କ୍ଷେତ୍ରରେ ପ୍ରଶ୍ନଟି ହେଲା, ସର୍ଜିକାଲ୍ ଡିପାର୍ଟମେଣ୍ଟଗୁଡ଼ିକରେ ଲାଙ୍ଗୁଡ଼ କଟେଇବା ପାଇଁ ମାଙ୍କଡ଼ମାନେ କାହିଁକି ଆଗେଇ ଆସୁନାହାନ୍ତି ? ଡାରଉଇନ୍‌ଙ୍କ ତତ୍ତ୍ୱ ଶହେ ତିରିଶ ବର୍ଷରୁ ଅଧିକ ହେଲାଣି ଅଥଚ ଏ ଦୀର୍ଘ ସମୟ ମଧ୍ୟରେ ସୋସାଇଟି-ଫର୍-ଆନିମଲ୍ ପରି ଅନେକ ସଂସ୍ଥା ମାଙ୍କଡ଼ମାନଙ୍କୁ କାହିଁକି ଏ ଦିଗରେ ପ୍ରଭାବିତ କରି ନାହାନ୍ତି ?

ନା, ମାଙ୍କଡ଼ମାନେ ନିଜ ନିଜର ପରିଚୟ ବା ଆଇଡେଣ୍ଟିଟିକୁ 'ହୋମୋ ସାପିଏନ' ମାନଙ୍କ ବଦ୍ଧ୍ୟା ବ୍ୟକ୍ତି ଆଇଡେଣ୍ଟିଟି ସହିତ ମିଶେଇ ନେଇ ହଜିଯିବାକୁ ବୋଧହୁଏ ଚାହାଁନ୍ତି ନାହିଁ । ସେମାନେ ବଣ ଜଙ୍ଗଲରେ ଥାଇ ବି ଅନୁଭବ କରିପାରୁଥିବେ ଯେ, ସୋସିଆଲିଜମ୍ ପାଇଁ କଣ୍ଠ ଫଟେଇ ଚିତ୍କାର କରୁଥିବା ଗୋଟିଏ ବେହିଆ ଜାତିର ନାଁ ହେଲା ମଣିଷ; ଯେଉଁମାନେ ବ୍ୟକ୍ତି, ଗୋଷ୍ଠୀ, ଜାତି, ଦେଶ, ଏପରିକି ମାନ୍ତି ଅମାନ୍ତି ସବୁ ନାଁରେ ନିଜ ପାଇଁ ପରିଚୟ ଉଣ୍ଡାଳିବାର ବାହାନା କରି ସେଇ ଜାତିର ଅନ୍ୟମାନଙ୍କ ଉପରେ ଦାଦାଗିରି କରନ୍ତି ।

ନିକଟତମ ଉଦାହରଣକୁ ଆସିଯିବା । ଆମ ଦୂରଦର୍ଶନ ସତକୁ ସତ 'ଅଦୂର' ଏବଂ ଆମ ଅବହେଳିତ ପ୍ରବେଶ ପାଇଁ ପ୍ରାୟ ଅଦର୍ଶନୀୟ । ଭାରତୀୟ ଜୀବନ ନାଁରେ ମେଟ୍ରୋନଗରୀଗୁଡ଼ିକର ପାଖାପାଖି ଅଞ୍ଚଳ ଭୁନାକୁଭୁନା ଦେଖେଇ 'ଜାତୀୟ ସଂହତି' ବୋଲି ହାରିକନ୍ ଦେଖେଇ ହେଉଛନ୍ତି ଏବଂ ତହିଁରେ ବି କର୍ତ୍ତୃପକ୍ଷଙ୍କ ମନର ଉଣା ଭାବ ଏତେ ଅଧିକ ଯେ ଓଡ଼ିଆ କାର୍ଯ୍ୟକ୍ରମ ବୋଲି ଯାହାକୁ କହନ୍ତି ତାହା କେବଳ କଟକ, ପୁରୀ ଅଞ୍ଚଳରେ ଦେଖାଯାଏ । ସନ୍ଧ୍ୟା ୮-୪୦ ପର୍ଯ୍ୟନ୍ତ ଏହି କାର୍ଯ୍ୟକ୍ରମ ଦେଖୁଥିବା ନିର୍ବିକାର ଦର୍ଶକମାନେ ପ୍ରାୟ ଜାଣି ନଥିବେ ଯେ ଏହା ସମଗ୍ର ଓଡ଼ିଶା ପାଇଁ ନୁହେଁ । ଯଦି ଯୁକ୍ତି ଥାଏ—ଗ୍ରାଉଣ୍ଡ ହୋ, ବଡ଼ଠାକୁର ତ ଦେଖିଲେ, ପୁରୁଣା ସହର ତ ଦେଖିଲ, ଓଡ଼ିଶା ଆଉ କାହାକୁ କହନ୍ତି କି ? ଏଥିକୁ ଆମର ଉତ୍ତର ହେଲା, ପୂର୍ବପୁରୁଷ ଲାଙ୍ଗୁଡ଼ ଘଷି ଅତ୍ୟନ୍ତ ଭୁଲ କରିଛନ୍ତି ।

ଗତ ୯ ତାରିଖ ଦିନ କଟକ ଦୂରଦର୍ଶନର 'ଯନ୍ତ୍ର ସୃଷ୍ଟି' ହୋଇଥିବା, ଯେଉଁ ସମ୍ବାଦ ପ୍ରକାଶ ପାଇଛି ତାହା ଯଦି ସତ ହୋଇଥାଏ ତା ହେଲେ ଆମେ ପୂର୍ବପୁରୁଷଙ୍କୁ ପୁଣି ଦୋଷ ଦେବୁ—ବିଚରାଗୁଡ଼ାକ ଏତେ କ୍ଳେଶ ସହି ଲାଙ୍ଗୁଡ଼ କାହିଁକି ଘଷୁଥିଲେ ?

ଏ କଥା ସବୁ ଯେତେ ବଖାଣିଲେ ବି ସରିବ ନାହିଁ । ସବୁ ପ୍ରଦେଶର ସାଂସ୍କୃତିକ ପରିଚୟ ବିଭିନ୍ନ ସିରିଏଲ୍ ମାଧ୍ୟମରେ ଏବଂ ଅନ୍ୟଥା ଚନ୍ଦ୍ରୁଆ ପରି ଝଟକି ଉଠୁଛି ମାତ୍ର 'ବେଟେ ଉଡ଼େ ?' ଗଙ୍ଗାଠାରୁ

ଗୋଦାବରୀ ଯାଏ ଆକାଶକୁ ଡାକୁକ ଭଳି ଅନେଇ ବସିଥା । ଝାଡ଼ଖଣ୍ଡ ହା-ହୋଲ୍ଲା ଯୋଗୁ ଏବେ ଅବଶ୍ୟ କେନ୍ଦ୍ରାଂଶରେ ଓଡ଼ିଶା କଥା ଶୁଣାଗଲାଣି । ମାହାଦେବ କାହାକୁ ଡରନ୍ତି, ଏକଥା ଶିଖେଇବା ପାଇଁ କୌଣସି ଅଦ୍ଭୁତର ଡେମନ୍‌ଷ୍ଟ୍ରେସନ୍‌ର ଆବଶ୍ୟକତା ନାହିଁ, ଦିଲ୍ଲୀ ଦୂରଦର୍ଶନର ପୂର୍ଣ୍ଣ କାର୍ଯ୍ୟକ୍ରମ ଦେଖିଦେଲେ ପିଲାଟିଏ ବି ବୁଝିପାରିବ ।

ଓଡ଼ିଶାର ଜଣେ ନାମକରା ତରୁଣ-ଚଳଚ୍ଚିତ୍ରନିର୍ମାତା ଥରେ ନିଜର ଗୋଟିଏ ସଙ୍କଟ ବିଷୟରେ ଏ ଲେଖକକୁ କହୁଥିଲେ । ତାଙ୍କର ଗୋଟିଏ ଚଳଚ୍ଚିତ୍ର ସର୍ବଭାରତୀୟ ସ୍ତରରେ ପୁରସ୍କୃତ ହୋଇଥାଏ । ରାଷ୍ଟ୍ରପତିଙ୍କଠାରୁ ଯେଉଁଦିନ ପୁରସ୍କାର ଗ୍ରହଣ କରିବେ ସେହି ଦୃଶ୍ୟ ତାଙ୍କର ବନ୍ଧୁ ସୋଦର ଦେଖନ୍ତେ ଏହା ନିଶ୍ଚୟ ତାଙ୍କ ଗୌରବକୁ ଆହୁରି ଆମୋଦମୟ କରାଇ ପାରିଥା'ନ୍ତା । ଆମ ପ୍ରଦେଶର ପ୍ରଶାସକବର୍ଗ ଏଥିପାଇଁ ତାଙ୍କୁ କାଫି ବ୍ୟାକିଂ କଲେ । ସେଠାକାର ପ୍ରଶାସକଙ୍କୁ ସେ ଦେଖାକଲେ । ଉତ୍ସାହିତ ନ ହେବାର କିଛି କାରଣ ନଥିଲା । ନିଉଜ୍ ରିଲ୍ ଦେଖିଲା ବେଳକୁ ସବୁ ଫୁସ୍ । ତାଙ୍କ ନାଁ ଏବଂ ଚଳଚ୍ଚିତ୍ରର ନାଁ ବି କୁହାଗଲା ବିକୃତ କରି । ପରେ ବାବୁଙ୍କୁ ପଚାରିଲି—କଥା ହେଲା କ'ଣ ? ବାବୁଙ୍କର ଉତ୍ତର ଥିଲା—ଦୂରଦର୍ଶନର ଆଇ. ଏ. ଏସ୍. ଡାଇରେକ୍ଟରଙ୍କ ଠାରୁ ଏସବୁ ମାମଲାରେ କ୍ୟାମେରାମ୍ୟାନ୍ ଓ ନିଉଜ୍ ଏଡ଼ିଟରଙ୍କ ପାଓ୍ୱାର ବେଶି । ସେତିକି ମୁଁ ଜାଣିପାରି ନଥିଲି ।

ଏ ସମସ୍ତ ବ୍ୟତିହାନ୍ତ ଝନ୍‌ଝଟର ମୂଳ ଖୋଜିଲେ ଆମେ ସେହି ଗୋଟିଏ କଥା ଦେଖିବାକୁ ପାଇବା : ପରିଚୟ ସଙ୍କଟ । ଜାତି, ଗୋଷ୍ଠୀ, ବ୍ୟକ୍ତି ବା ଦେଶ କେହି ଏହିଁରୁ ବାଦ୍ ଯାଉନାହାନ୍ତି । କଳ୍ପନାଠାରୁ ସତ କେତେଦୂର ଏକଥା ଯେ କୌଣସି ଅନୁଭବୀ ଜାଣିପାରୁଥିବେ । ପ୍ରଗତି ସହ ତାଳ ଦେଇ ଗୋଟିଏ କଥା ଆମ ଭାରତୀୟ ପୃଷ୍ଠଭୂମିରେ ଯାହା ଦେଖାଦେଉଛି ତାହାହେଲା କେବଳ ନେତାମାନଙ୍କ ଭାଷଣ କଳ୍ପନାକୁ ଟପିପାରୁଛି । ଆଉ କିଛି ନୁହେଁ । ବିବର୍ତ୍ତନ ବି ଓଲଟା ଗତି କରିପାରିବ ନାହିଁ । ତେଣୁ ଆମ ଉତ୍ତମାମନ ଭରଣା କରିବା ପାଇଁ ସରକାରଙ୍କୁ ଆମେ ଗୋଟିଏ ନିବେଦନ କରୁଛୁ । ଏକଥା ଅନ୍ତତଃ ସରକାର ଇଚ୍ଛା କଲେ

କରିପାରିବେ । ଏହା ବ୍ରିଟିଶ୍ ଇସ୍ପାତ କାରଖାନା ବା ତାଳଚେର-ବିମଳାଗଡ଼ ରେଳପଥ ନିର୍ମାଣ ପରି ଗହନ କଥା ନୁହେଁ । ଆସନ୍ତା ବଜେଟ ଅଧିବେଶନରେ ଓଡ଼ିଶାର ସମସ୍ତଙ୍କ ପାଇଁ ଗୋଟିଏ ଗୋଟିଏ ଦର୍ପଣ କିଣିବାର ବ୍ୟବସ୍ଥା କରାଯାଉ । ଆମେ ଅଳସ ମୁହୂର୍ତ୍ତ ଦେଖି ନିଜ ମୁହଁକୁ ନିଜେ ଦେଖୁଥିବୁ ଓ ମୁରୁକେଇ ମୁରୁକେଇ ହସି ଦେଉଥିବୁ ।

ଅବଶ୍ୟ ଗୋଟିଏ ଆଶଙ୍କା—ବିତରଣ ବେଳେ କାହାକୁ କ୍ୱାଲିଟି ବେଲ୍‌ଜିୟମ୍ ତ ଆଉ କାହାକୁ ଭାଙ୍ଗପକା ଅଇନା ମିଳିପାରେ । ଆବ୍‌ସଲିଉଟ୍ ସୋସିଆଲିଜମ୍ ସମ୍ଭବ ନହେଲେ ମଧ୍ୟ ଚଳିବ କାରଣ ସଦର୍ଶନ ଟିକେ ଓଲମ୍ବାଲମ୍ ହେଲେ ବି ଭାବିନେବୁ 'ଆମ ବାପାଙ୍କ ବାପାଙ୍କ ବାପାଙ୍କ ବାପାଙ୍କ ବାପାଙ୍କ ବାପାଙ୍କ···ବାପା ଥିଲେ ଏକ ମାଙ୍କଡ଼' ।



# ଚନ୍ଦନ ବେଶ ମୁଁ ସାଜନ୍ତି...

ଓଲେଇ ମନ କେତେବେଳେ ମୋତେ କୋଉଠୁ ନେଇ କୋଉଠି ନ ଥୋଉଛି ? ହାଇମାରିବା ପାଇଁ ହ'ଓଠ ଥରେ ମେଲ କରି ଦେବାପରି କଥା । ଫଗରୁ ନୋହାଇ ମୁକୁଳିଗଲି ତ ଅଳ୍ପଆଉ ଆଉ କାହିଁ ? ସେତିକିବେଳେ ଯେଉଁ ପରିରମ୍ଭର ଆବେଗ, ପାଟିରେ ପାରଡ଼ାପୋକ ପଶିଗଲେ ମଧ୍ୟ ନାରୁପାୟ । ମୁଁ ଏକା ନୁହେଁ, ଅନେକ, ଏପରିକି ଆନୁଷ୍ଠାନିକ ଭାବେ, ଏଇ ଭ୍ରମଚକ୍ରର ଭିତରେ ପଡ଼ଯା'ନ୍ତି । ବସ୍ତୁତଃ ମୂର୍ଚ୍ଛତାକୁ 'ବିଶ୍ୱାସ' ବୋଲି ବିଗୁଚୁଥା'ନ୍ତି । ବାହାରିବାକୁ ତ ଇଚ୍ଛା କରିଯାଏ ନାହିଁ, ତେଣୁ ଉଦ୍ୟମ ଆସିବ କାହୁଁ ? ମହାତ୍ମା ତୁଳସୀଦାସ କହିଛନ୍ତି :

ରୂପ ବିଶେଷ ନାମ ବିନ ଜାନେ,
କରତଲ ଗତ ନ ପରହିଁ ପହିଚାନେ ।
ସୁମିରିଅ ନାମ ରୂପ ବିନୁ ଦେଖେ,
ଆବତ ହୃଦୟଁ ସନେହ ବିଶେଷେଁ ।

ଅର୍ଥାତ୍, ନ ଜାଣିଥିବା ପଦାର୍ଥ ହାତରେ ଥିଲେ ବି ଚିହ୍ନି ହୁଏ ନାହିଁ ଏବଂ ଜାଣିଥିବା 'ଜିନ' ଯେତେ ଦୂରେଇ ଥାଉ ପଛେ, ଖାଲି ନେଉଁ କଲେ ହିଁ ସେନେହ ମାଡ଼ିଆସିବ, ମାଡ଼ିଆସିବ ରୋମାଞ୍ଚକତା । ତୁଳସୀଙ୍କ ପଂକ୍ତିରୁ ଗୋଟିଏ କଥା ବାରି ହେଉଛି—ଆମେ ଯାହା ନ ଜାଣୁ ତାହା ହଜାର ପ୍ରକାର କୁହେଳିକା ସୃଷ୍ଟି କରିବାକୁ ସକ୍ଷମ ହୋଇପାରେ ବରଂ, ମାୟା ସୃଷ୍ଟି କରିପାରିବ ନାହିଁ । ତୁଳସୀ କହିଦେଲେ ବୋଲି ସେ କଥା ବେଦରେ ଗାର ହେବ, ଏହା ନୁହେଁ । ସ୍ୱେୟୁ ବିପରୀତ ଅଛି ମାତର ।

ଥରେ ଏ ଲେଖକ ନିମନ୍ତ୍ରିତ ଅତିଥି ଭାବେ ଗୋଟିଏ ପୋଲିସ୍ ବିଭାଗୀୟ ସଭାକୁ ଯାଇଥାଏ । ପୃଥିବୀଟା ଆଜିକାଲି ଏତେ ବୈଜ୍ଞାନିକ ହୋଇଗଲାଣି ଯେ ବକ୍ତାମାନଙ୍କର ଭାଷଣ ପାଇଁ କିଛି ପ୍ରବ୍ଲେମ୍ ନାହିଁ । ଯାହା କହିଦେଲେ ଚଳିବ । ଶ୍ରୋତାମାନଙ୍କ କମ୍ପ୍ୟୁଟର ବ୍ରେନ୍

ଚଟାପଟ୍ ଅଧଜଡ଼ା ଭାଷଣକୁ ସଜାଡ଼ି ଦେବ । ପାର୍ଟିଅରର ପାର୍ଟ ସରିଲେ ସେ ବସି ସୁଆଙ୍ଗ ଦେଖିବା ପରି, ମୁଁ ମୋର ସଭା ଦେଖିଲି । ସେଇ ବିଭାଗର ବଡ଼ବାବୁମାନେ ଗ୍ରେଟବାବୁମାନଙ୍କ ପାଇଁ ଯେମିତି ଫ୍ୟାନ୍ଟାସି ସୃଷ୍ଟି କରନ୍ତି, ବୋଧହୁଏ ନିର୍ବାଚନ ଆଗଦ୍ଧନ ନିଜ ଗ୍ରେଟରଙ୍କ ପାଇଁ ନେତା ବା କୁନି ନେତା ବି ତାହା କରିପାରୁ ନଥିବେ । ଭୁଲଯାଁ ଫେଲ୍ । ‘ନାମ ବିନ ଜାନେ’ ମଧ୍ୟ ହୃଦୟରେ ‘ସେନେହ ବିସେଷେଁ’ ସୃଷ୍ଟି କରିପାରେ !

ଅନ୍ୟ ବକ୍ତାଙ୍କ ଭାଷଣରୁ ଜାଣିବାକୁ ମିଳିଲା ଯେ ଇଦାନିଂ ଉତ୍କଳ ବୈଜ୍ଞାନିକ ପରାକାଷ୍ଠା ପୋଲିସ ବିଭାଗର ଅପରାଧ ନିର୍ଣ୍ଣୟରେ ଏତେ ସାହାଯ୍ୟ କରୁଛି ଯେ ଆଉ କାହାରି ଖସିବା ଜୁ ନାହିଁ । ନିବାରଣରେ ବିଜ୍ଞାନ, ନିର୍ଣ୍ଣୟରେ ବିଜ୍ଞାନ, ତଥ୍ୟକୁ ପୁଣି ପ୍ରମାଣରେ ବିଜ୍ଞାନ । ଶୁଣି ଲାଗୁଥାଏ, ବିଚରା ଚୋର ବା ଅପରାଧୀଗୁଡ଼ାକ କି ହନ୍ତସନ୍ତ ହେଉ ନଥିବେ ଟି !

ସାଧାରଣ ଜୀବନରେ ଆମେ ମାତ୍ର ତିନୋଟି କଥାକୁ ସାଂଘାତିକ ଏପିଡେମିକ୍ ବୋଲି ବିଚାର କରୁ—ତାଳି, ଭାଷଣର ଖିଅ ଓ ପରନିନ୍ଦା । ଅବଶ୍ୟ ଶେଷଟିକୁ ଆମେ ଏହି ଲେଖା ମାଧ୍ୟମରେ ପ୍ରକଟିତ କରିବୁ ନାହିଁ କରିବୁ । କାରଣ୍ ଆଗ ଦୁଇଟି କାହାରି ଅନୁମତି ନ ନେଇ ସେଇ ସଭାରେ ହୋଇଯାଇଛି । ଜଣେ ବକ୍ତା ଯେ ବିଜ୍ଞାନ ଆରମ୍ଭ କରିଦେଲେ, ଆଉ ଅଜ୍ଞାନ କ’ଣ ସେ ଅଞ୍ଚଳରେ ରହିଲା ?

—କହୋ, ତୁମେ କେଉଁ ଖୁସିରେ ହସିଲ ? ଏପରି ପ୍ରଶ୍ନର ଉତ୍ତରରେ ଯଦି ଶୁଣିବାକୁ ମିଳେ—‘ମଲା, ତୁମେ ଦେଖିଲନି କି ଆମ ରାଜା ହସିଲେ’, ଏପରି ଆଚରଣ ଏବଂ ମନୋବୃତ୍ତି ଆଉ କେଉଁଠି କେତେ ଅଛି, ଆମେ ଜାଣୁନା ମାତ୍ର ପୋଲିସ୍ ବିଭାଗରେ ଏହାର ଅନୁପାତ ? ଅନେକତ ଶତାଂଶ ବି ତୁଳିବ ନାହିଁ—ଶହେକୁ ଶହେ । ଉପର ଆଲୋଚ୍ୟ ସଭାର ଜଣେ ଶ୍ରୋତା, ସେ ମୋର ବନ୍ଧୁ ଓ ଜଣେ ଇନ୍‌ସପେକ୍ଟର; ମୋତେ ସେଇ ରାତିରେ ଖାଇବାକୁ ଡାକିଥିଲେ ।

ତାଙ୍କର ମୋର କଥୋପକଥନର ସାରାଂଶ ହିଁ ଏଠାରେ ଲେଖୁଛି ଯାହା ବୋଧହୁଏ ସୂଚାଇ ଦେବ ଯେ ଆମମାନଙ୍କ ଇଚ୍ଛା କେତେ ପବିତ୍ର, ଅଭିଳାଷ କେତେ ମନୋମୁଗ୍ଧକାରୀ ଏବଂ କଳ୍ପନା କେତେ କଲ୍ୟାଣମୟୀ; ମାତ୍ର ଯେତେବେଳେ ନର୍ଦ୍ଦମା ପତ ସାମ୍ନାରେ ହାବୁଡ଼ ଯାଉ ସେତେବେଳେ ଦେଖି କୃଷ୍ଣ କଂସକୁ ମାରିବାକୁ ସଜଡ଼ିଆର; ଚନ୍ଦନବେଶ ହୋଇପାରୁ ନାହାନ୍ତି; ଯୁବତୀମାନଙ୍କ 'ଶରୀ' ଗାଡ଼କୁ ଯାଉ ପଛେ ।

ସବୁ କଥା ଚଳିଲା । ବନ୍ଧୁ ମୋର କହିଲେ, "ଆବେ ଚଲ୍, ତୁ ଗୁଡ଼ାଏ ଫିଲୋସଫି ଗପିଲୁ ।"

"ଆରେ, ସହଜ ପାଠ ବେ । କହିବା ଲୋକର ବୁଝିବା ଦରକାର ନାହିଁ, ଶୁଣିବା ଲୋକ କହୁଥିବେ ଫିଲୋସଫି । ଆମେ ମାଟ୍ରିକ୍ ପଢ଼ିଲାବେଳେ ଏତିକି ବୁଦ୍ଧି ଯଦି ମୁଣ୍ଡରେ ପଶିଥା'ନ୍ତା, ତୁ ଦୁଇଥର ବା ମୁଁ ତିନିଥର ଚିତ୍‌ପଟାଙ୍ଗ୍ ମାରିଥା'ନ୍ତେ କାହିଁକି ବେ ?" ଏହା ଥିଲା ମୋର ଉତ୍ତର ।

ପ୍ରାୟ ୧୮୫୮ ବେଳକୁ ଇଂଲଣ୍ଡ କୋର୍ଟରେ ଟିପଚିହ୍ନ ଚାଲିଲା ଓ ଠିକ୍ ତା' ପରେ ପରେ ତତ୍‌କାଳୀନ ବ୍ରିଟିଶ୍-ବେଙ୍ଗଲର ଶାସକ ସାର୍ ଉଇଲିୟମ୍ ହେରେଲ୍ ଆଦେଶ ଦେଇଥିଲେ ଯେ ଭାରତୀୟମାନେ ସମସ୍ତ ଦସ୍ତାବିଜ୍‌ରେ, ସନ୍ତକ କରନ୍ତୁ ବା ନକରନ୍ତୁ, ଟିପଚିହ୍ନ ଅଲବତ୍ ମାରିବେ । ସେଇଠୁ ଆଜି ପର୍ଯ୍ୟନ୍ତ ପ୍ରାୟ ୧୩୦ ବର୍ଷ ଭିତରେ ପୃଥିବୀରେ ବିଜ୍ଞାନ କେତେ ବାଟ ଯାଇଛି ଭିନ୍ନ କଥା, ମାତ୍ର ଭାରତୀୟ ପୋଲିସ୍ ସଂଗଠନରେ—ବିଶେଷତଃ ଭାଷଣରେ—ବିଜ୍ଞାନ ଆଖି ନ ପାଉଥିବା ଦୂରକୁ ଚାଲିଗଲାଣି । ପୋଲିସ୍ ଦଖଲରେ ଏବେ ପଦାର୍ଥ ବିଜ୍ଞାନଠାରୁ ଅପଦାର୍ଥ ବିଜ୍ଞାନ ପର୍ଯ୍ୟନ୍ତ କୋଉ କଥା ଯେ ନାହିଁ, ଅନୁମାନ କରିହେଉନି ।

ମୋ ବନ୍ଧୁଙ୍କୁ ପଚାରିଲି, "ହଇରେ, ଆଜିର ଭାଷଣମାନ ଶୁଣି ତୁମ ପୋଲିସ୍ ସାଙ୍ଗମାନଙ୍କର ଆଇଡ଼ିଆ କ'ଣ ହେଉଛି ? ଏକବିଂଶ ଶତାବ୍ଦୀ ବେଳକୁ ଅପରାଧ ଅନୁସନ୍ଧାନ କେମିତି ହେଉଥିବ ବୋଲି ତୁମର ଧାରଣା ?"

"ଭାଇ ଯାହା କହ, କମ୍ପ୍ୟୁଟର ହେଲା ପରେ ବ୍ୟାଙ୍କ୍, ରେଲ୍, ହାଇଜାକିଂ, ସ୍ମାଇଂ, ଏସ୍‌ପିଓନେଜ୍ ଆଦି ବଡ଼ ବଡ଼ କଥାରେ ପୋଲିସ୍ ବିଭାଗ ଯଥେଷ୍ଟ ସାହାଯ୍ୟ ପାଉଛି ।"

"ତୁମ ବିଭାଗର କମ୍ପ୍ୟୁଟର କେଉଁଠି ଅଛି ?"

"କଟକରେ ।"

"ତୁମେ କେମିତି ସାହାଯ୍ୟ ପାଉଛ ?"

"ସେଥିପାଇଁ ଜଣେ ଆଇ.ଜି. ଅଛନ୍ତି ।"

ମୁଁ ଓଲଟିଏ ପରି ତା ମୁହଁକୁ ଚାହିଁ କହିଲି, "ଓ, ଆଚ୍ଛା ।" ମନେ ମନେ ଭାବିଲି; ଯାହା ହେଉ, ଆମ ଦେଶରେ ଏହା ଏକମାତ୍ର ବିଭାଗ ଯାହା ଅଟୋମେସନ୍‌ର ବିରୋଧ କରିବ ନାହିଁ ।

ମୁଁ ପଚାରିଲି, "ହଠାତ୍ ଗୋଟିଏ ବ୍ୟବସ୍ଥା କଥା କହିଲୁ, ଯାହା ବୈଜ୍ଞାନିକ ପ୍ରଣାଳୀରେ ପୋଲିସ୍ ବିଭାଗ ପାଇଁ ଅତି ଆବଶ୍ୟକ ।"

"ନାଇଁରେ, ଗ୍ରୁପ ଡିସ୍‌କସନ୍‌ରେ ସେକଥା ପଡ଼ିଥିଲା । ରୋବଟ୍ ନିହାତି ଦରକାର । ଟେକା ପଥର, ଛୁରି ଭୁଜାଲି, ଗୁଳି ବନ୍ଧୁକର ଯେଉଁ ଆକ୍ରମଣ ପୋଲିସ୍ ଉପରେ ହେଉଛି, ତାହାର ସଠିକ୍ ଜବାବ ହେଲା ରୋବଟ୍ । ପ୍ରୋଗ୍ରାମିଂ କରି ଛାଡ଼ିଦେଲେ ଲୁହା ମଣିଷଟା ଡେଇଁ ଡେଇଁ ଯିବ ଓ ସବୁ ସାବାଡ଼ି କରି ଚାଲିଆସିବ ।"

"ପ୍ରୋଗ୍ରାମିଂ କଲେ ଆଉ କ'ଣ ସବୁ କରିପାରିବ ?" ଏହା ଥିଲା ମୋର ପ୍ରଶ୍ନ ।

"ମଣିଷ ଯାହା କରୁଛି, ସବୁ କାମ କରିପାରିବ ।"

"ଆଚ୍ଛା ! ବେଶ୍ ଡାଏରୀ ଲେଖିପାରିବ ?"

"ହଁ ।"

"ଇନ୍‌ଭେଷ୍ଟି କରିପାରିବ ?"

"ହଁ ।"

"ଟ୍ରାଫିକ୍ କଣ୍ଟ୍ରୋଲ ?"

"ଏମିତି ତ ଟାଇମର୍-ରଲେ-ଅଟୋମେଟିକ୍ ସୁଇଚ୍‌ରେ ତାହା ହୋଇଯାଉଛି ।"

"ଭାଓଲେସନ୍ ?"

"ଦରକାର ଅଛି ।"

ମୁଁ ବାସ୍ତବିକ ବିସ୍ମିତ ହୋଇପଡ଼ୁଥିଲି । ଭାବୁଥିଲି, ଭାଷଣ ତ ମୁଁ ବି ଶୁଣିଥିଲି କିନ୍ତୁ କାହିଁକି ଏତେ କଥା ତ ବୁଝିପାରି ନଥିଲି । ସତକଥା, ପୋଲିସ୍ ନ ହେଲେ ପୋଲିସ ବିଜ୍ଞାନ ବୁଝିବା ଭାରି କଷ୍ଟ । ମନକୁ ଗୋଟାଏ କଥା ହଠାତ୍ ପଶିଲା, ବନ୍ଧୁଙ୍କୁ ପଚାରିଲି, "ହାଇଟର ମକରନ୍ଦ, ସେ ଯୋଉ ଆଉ କଥାଟା, ପ୍ରୋଗ୍ରାମିଂ କରି କେମିତି ରୋବଟ୍‌କୁ ଧରାଯିବ ?"

"ଧେତ୍, ବଜାରଟା କୋଉଠିକାର... ।"



# ବିଧାନ 'ଭକ୍ତି'

ଖବରକାଗଜରେ ପ୍ରକାଶ ପାଇଥିବା ବିବରଣୀ ଅନୁଯାୟୀ ଜଣେ ଏମ୍. ଏଲ୍. ଏ. ଓ ଜଣେ ମନ୍ତ୍ରୀ ଭକ୍ତି, ମଦ ଆଦି ଆକ୍ଷେପରେ ପରସ୍ପର ମାଡ ଯାଇଥିଲେ । ସମ୍ଭବତଃ, ଅବକାଶ, ଡିମାଣ୍ଡ୍ ବା ବଜେଟ୍ ଆଲୋଚନା ମଧ୍ୟ ହେଉ ନଥିଲା । ୧୯୭୦ ପୂର୍ବରୁ ସଂସଦୀୟ ଶାଳୀନତା ଅନୁସରଣ କରାଯାଇ ପାର୍ଲାମେଣ୍ଟ୍ ବା ଆସେମ୍ବ୍ଲି ଗୁଡ଼ିକରେ 'ମିଛ' ନାମକ ଶବ୍ଦକୁ ମଧ୍ୟ ଆବରଣଯୁକ୍ତ କରାଇ 'ଅସତ୍ୟ' ବୋଲି କୁହାଯାଉଥିଲା । ସମୟର ଦୌଡ଼ରେ ଦେଶର ପ୍ରଭୂତ ପ୍ରଗତି ସାଙ୍ଗକୁ ସଂସଦୀୟ ଆଚରଣ ଆଧୁନିକୀକରଣ ହେବାକୁ ବାଧ୍ୟ ହୋଇଛି । ତେଣୁ ଆମେ ଶିବିର ଉଠିଥିଲେ ମଧ୍ୟ ସତ-ସ୍ୱରୂପ ଦେଖିବାକୁ ପାଉଛୁ । କିଏ ଲଙ୍ଗଳା ହୋଇ ପଡ଼ୁଛି ତ ଆଉ କେଉଁଠି ରାଜ୍ୟପାଳଙ୍କୁ ଟାଙ୍କେ ଛେଚା ଦିଆଯାଉଛି; ତର୍କର ସ୍ଥାନ ନେଇଛି ମୁଷ୍ଟିଯୁଦ୍ଧ; ଗୁରୁଣ୍ଡିବାଠାରୁ ପ୍ରାୟ ଦୁଇ ଅଢ଼େଇ ବର୍ଷ ହେବା ପର୍ଯ୍ୟନ୍ତ ଶିଶୁଗୁଡ଼ିକ ଯେମିତି ଯୋଉଠି ପାରି ସେ'ଠି ଟେକାମାଟି ପକାଇବାଠାରୁ ହାତରେ ଚପଲ ଜୋତା ଧରିପକାଉଥିବା ଯୋଗୁଁ ଶୈଶବର ଅନୁରଞ୍ଜିତ ଆଚରଣ ପ୍ରକଟ କରନ୍ତି, ସେମିତି କଥା ମଧ୍ୟ ବହୁଳ ଭାବେ ଦେଖାଯାଉଛି । ଆହା, କହ୍ନେଇଗୁଡ଼ିକ ସତେ ଯେମିତି ଅବୋଧ ବାଳୁତ —ଲବଣୀ ଓ ବସ୍ତ୍ର ଠଉରେଇ ପାରୁନାହାନ୍ତି !

ପାଠକମାନଙ୍କ ଅବଗତି ନିମନ୍ତେ ବିଧାନସଭାର ମାତ୍ର ଗୋଟିଏ ନିୟମ (ରୁଲ୍, ୧୮୫-୧୧) ଅବତାରଣା କରୁଛୁ : ଜଣେ ସଭ୍ୟ ନିଜ ବକ୍ତବ୍ୟ (ଗୃହରେ) ଉପସ୍ଥାପନ କରୁଥିବାବେଳେ ଅନ୍ୟ କୌଣସି ସଭ୍ୟ ଇଙ୍ଗିତ, ଶବ୍ଦ ବା ଅନ୍ୟ କିଛି ଅଯଥା ବ୍ୟବହାର ଦ୍ୱାରା ତାଙ୍କ ଭାଷଣରେ ପ୍ରତିବନ୍ଧକ ସୃଷ୍ଟି କରିବେ ନାହିଁ (ମୂଳ ଲେଖା ଇଂରାଜୀ) । ଏହିପରି, ସଭ୍ୟମାନଙ୍କ ବ୍ୟକ୍ତିଗତ ଆଚରଣ ସମ୍ପର୍କରେ ବିବିଧ ନିୟମମାନ ରହିଛି । ଏପରି କି ଅମାର୍ଜିତ କଥା ନ କହିବା ପାଇଁ ମଧ୍ୟ (ରୁଲ୍, ୧୮୯) ।

ସଭ୍ୟମାନେ ଯଦି ନିଜ ନିଜର ବାରଗୃଡ଼ଲଆ ତୁଣ୍ଡରେ ଲଗାମ୍ ଦେଇ ଚାହୁଁନାହାନ୍ତି ବା ଶୃଙ୍ଖଳାର ଗଣ୍ଡି ଭିତରେ ରହିବାକୁ ଅଶ୍ଳାଘ୍ୟ ମନେକରୁଛନ୍ତି, ତା'ହେଲେ ଆଚରଣ ବିଧିର ସଂଶୋଧନ କରିଦେଇ ନାହାନ୍ତି କାହିଁକି ? ଏ କ୍ଷମତା ମଧ୍ୟ ବିଧାନସଭାର ରହିଛି । ମାତ୍ର, ନା ଆଜ୍ଞା ନା, ଖାଲି 'ମାଇପ ଆଗରେ ପାଇକ ପଣ ।' କ'ଣ ନା, ଆମେ ପ୍ରିଭିଲେଜ୍‌ଡ଼୍ । ଆମକୁ କେହି କିଛି କହିଲେ ଆମେ ତାକୁ ଘୋଷାରି ଦେବୁ ।

ଏପରି ଉଦ୍ଧାଣର ଗୋଟିଏ ସୁନ୍ଦର ଢଗ ଆମ ଓଡ଼ିଆ ଭାଷାରେ ଅଛି : "ମାଛ ମୁଁ କାଟିଲି ଖଣ୍ଡି ଖଣ୍ଡିକା / ମଝି ଖଣ୍ଡି କଲି ଭଜା / ମୋତେ ତୁ କହିବୁ ବିଟପୀ ନାରୀ, ମୋ ସରୁଆ ସଜ ? / ତେବେ, ପରିବାଘ କରି ନ ଯା' ।" ଅର୍ଥାତ୍, ପରିବାସ କରିବା ପାରିବାରିକ ଅର୍ଥମାତ୍ର ପାଇଁ ଅପରିହାର୍ଯ୍ୟ ହେଉଥିଲେ ମଧ୍ୟ, ସେହି ସୁଯୋଗରେ ସ୍ତ୍ରୀର ବିଟପୀତ୍ୱ ପ୍ରକାଶ ପାଉଥିବା ଏବଂ ସାବୁତ ହେଉଥିବା ସ୍ପଷ୍ଟ ହେଲେ ମଧ୍ୟ, ଭଦ୍ରମହିଳାଙ୍କୁ ସାମାଜିକ ସଂସ୍କାରର ଖାତିରରେ ବା ଦାମ୍ପତ୍ୟ ଅନୁଶାସନର କଠୋରତା ପାଇଁ ମଧ୍ୟ ଡାଗିଦା କରାଯାଇ ପାରିବ ନାହିଁ । କାରଣ ସେ ଦାବି କରିବେ—ମୁଁ ପ୍ରିଭିଲେଜ୍‌ଡ଼୍ । ମୁଁ ଯଦି ସତୀ ହେବି ବୋଲି ଲୋଡ଼ୁଛୁଟରେ ଅଳ୍ପାଇଷା, ଗୃହର ଗ୍ରୁଡ଼ ଘରେ ବଅସ ! ଆଉ ବିଟପୀ ହେବି ନାହିଁ । ପାଠକେ କୁହନ୍ତୁ ତ—ଏ ଯୁକ୍ତି କେମିତି ଲଗିଲା ? ଜଣେ ଅବସରପ୍ରାପ୍ତ ଅଧ୍ୟାପକଙ୍କ ସହିତ ଏହି ବିଷୟରେ କଥା ହେଉ ହେଉ ସେ 'ଯୁଗ-ଧର୍ମ' ବୋଲି କହି ସାମୂହିକ ମଣିଷ ଆଚରଣର ଗୋଟିଏ ପ୍ରକାର ବଢ଼ିଆ ଅନୁଶୀଳନ କଲେ । ଯେଉଁଥିରୁ କୌଣସି ସମୟର କୌଣସି ବିଧାନସଭା ବା ପାର୍ଲାମେଣ୍ଟ ବାଦ୍ ଯିବ ନାହିଁ ମଧ୍ୟ । ସେ କହିଲେ, 'ବଳ ଯାହାର, ମୁଲକ ତାର, ବା survival of the fittest, ପ୍ରାଣୀ ଜଗତର ଗୋଟିଏ ଅନିବାର୍ଯ୍ୟ ତତ୍ତ୍ୱ । ଏଇ କଥାଟି ଚକ୍ର ଆକାରରେ ଘୂରେ । ଯଥା : ଆପଣଙ୍କ ମତ ସହ ମୋ ମତ ମିଶିବ ନାହିଁ, ଏପରି ଅନେକ ହେବା ସମ୍ଭବ ବୋଲି ଆମେ ସଜ ହୋଇଯିବା । ଏହାର ପରବର୍ତ୍ତୀ ଅବସ୍ଥା ଆସିଛି, ଯୁକ୍ତିଦ୍ୱାରା ଅନ୍ୟକୁ ସିଦ୍ଧାନ୍ତ ସମ୍ପନ୍ନ କରାଇ ତା' ମତକୁ ପ୍ରଭାବିତ କରିବା । ତା' ପର ପର ସୋପାନଗୁଡ଼ିକରେ ଆସେ—ସଂଖ୍ୟା

ଅଧିକ ତ ବଳ ଅଧିକ; ତା'ପରେ, ଚକ୍କାର କରି ଯିଏ ଅଧିକା 'ରଖମା' ଦେଖେଇ ପାରିଲା; ତା'ପରେ ଅନ୍ୟକୁ ଯେତେ ଯିଏ ଡରେଇ ପାରିଲା; ତା'ପରେ ଦୈହିକ ବଳ ଓ ଆନୁଷଙ୍ଗିକ ଅମାର୍ଜିତ ଭାଷା । ଏମିତି ଏମିତି 'ବଳ ଯାହାର, ମୁଲକ ତା'ର' ଅବସ୍ଥା ଆସିଯିବ । ମୁଁ ପଚାରିଲି, "ଆଜ୍ଞା ! ତଥାପି ତ ବହୁତ ଭଦ୍ରଲୋକ ଅଛନ୍ତି ଯେଉଁମାନେ ଏପରି ଅସଣୁଣା ଢଙ୍ଗ ସହିପାରୁ ନ ଥିବେ । ସେମାନେ କରିବେ କ'ଣ ?" ମହାଶୟଙ୍କର ଉତ୍ତର ଥିଲା, "ଯେଉଁମାନେ ନର୍କକୁ ଆଦରି ନ ପାରିବେ ସେମାନେ ସ୍ୱର୍ଗକୁ (ପ୍ରଭୁ ସେମାନଙ୍କୁ ଦୀର୍ଘାୟୁ କରନ୍ତୁ !) ଯିବାକୁ ବାଧ ।"

"ବିଧାନସଭାରେ ମଦ, ରିଭଲ୍‌ଭର୍, ଛୁରି, ଭୁଜାଲି ଆଦି କେବେ ଚାଲିବ ତା'ହେଲେ ?" ଏହି ପ୍ରଶ୍ନର ଉତ୍ତରରେ ସେ କହିଲେ, "ଅସ୍ତ୍ର ବଦଳରେ ଫାଇଲ୍, ଚପଲ, ମାଇକ୍ ଷ୍ଟାଣ୍ଡ୍ ଆଦି ମିଳୁଛି ତ ! କାମ ଚାଲିଯାଉଛି । ଆଉ, ମଦ କଥା ? ବିଧାନସଭାରେ ଡ୍ୟୁପ୍‌ଟେଷ୍ଟ୍ ହୁଏ କି ?"

ଏ ସବୁ ଆଲୋଚନା ପରେ ମନକୁ ହାଲ୍‌କା କରିବା ପାଇଁ ଗୋଟିଏ ଭିନ୍ନ ସ୍ୱାଦର ଗପ ମନେପକାଇଲି । 'ହାବ୍‌ଡ଼ା ପୋଲ ଓ ଗଞ୍ଜୋଡ଼ ଉପାଖ୍ୟାନ ।' ଦି'ଜଣ ଓଡ଼ିଆ ଗଞ୍ଜୋଡ଼ କଲିକତା ଯାଇଥା'ନ୍ତି । ସେଠାରେ ପହଞ୍ଚିବାର ଦୁଇ ତିନି ଦିନ ବିତିଗଲାଣି. ଅଥଚ ଅବକାରୀ ଦୋକାନ କୋଉଠି ସେମାନେ ଠେର୍ ପାଉ ନ ଥା'ନ୍ତି । ଏଣେ, ନାକ ପାଟିରୁ ଖାଲି ଲାଳ ବୋହିବାରେ ଲାଗିଲାଣି । ସେମାନେ ଗୋଟିଏ ଉପାୟ ଚିନ୍ତା କଲେ । ସମସ୍ତେ ଜାଣିଥିବେ, ଗଞ୍ଜୋଡ଼ ଗୁଲିଆ ମାତାଲ୍‌ମାନେ ଚିନ୍ତା କରିଥିବା କୌଣସି କଥାର 'ଏକ୍‌ଜ୍ୟୁକୁସନ୍'ରେ ଆଦୌ ବିଳମ୍ବ କରନ୍ତି ନାହିଁ । ଦୁଇ ଜଣ ପୋଲ ମଝି ଆମଝି ଦୁଇ କଡ଼ରେ ବସି ଜଣେ ଡାହାଣ ହାତରେ ବାଁ ହାତକୁ ଓ ଅନ୍ୟ ଜଣକ ବାଁ ହାତରେ ଡାହାଣ ହାତକୁ ଉପରୁ ତଳକୁ ଘୋଷାରୁଥା'ନ୍ତି । ସେମାନଙ୍କ ପାସୁଲି ଦେଖିଲେ ଜଣାପଡ଼ିବ, ଯେମିତି ଗୋଟାଏ ଲମ୍ବା ଦଉଡ଼ି ବଳୁଛନ୍ତି । 'ହାବ୍‌ଡ଼ା ପୋଲ ।' ଲକ୍ଷ ଲକ୍ଷ ଲୋକ, ହଜାର ହଜାର ଗାଡ଼ି ମଟର ଯାଉଛନ୍ତି । କିଏ କାହିଁକି ଏ ଗଞ୍ଜୋଡ଼ ଦି'ଟାଙ୍କୁ ଅନେଇବ ?

କିନ୍ତୁ ନା ଆଜ୍ଞା ! ଗୋଟିଏ ଲୋକ ଚାଲି ଚାଲି ଆସି ଏକଡ଼-ସେକଡ଼ ଚାହିଁ ଦୁଇ ଗଞ୍ଜୋଡ଼ଙ୍କ ହାତର ଉଚ୍ଚତାକୁ ଅନୁମାନରେ ଅନୁମାନରେ ମାପି ଦେଲା । ତା'ପରେ, ଠିକେ ପଛକୁ ଫେରିଗଲା । ଦୌଡ଼ି ଦୌଡ଼ି ଆସି ହାଇଜମ୍ପ ମାରିଦେଲା । ଖୁସି ହୋଇଗଲା, ଯାହା-ହେଉ ଦଉଡ଼ିରେ ତା' ଗୋଡ଼ ଛନ୍ଦା ହୋଇନ । ନ ହେଲେ ପଡ଼ିଥିଲେ କ'ଣ ହୋଇଥା'ନ୍ତା, କିଏ ଜାଣେ ।

ଏତିକିବେଳେ ଦୁଇ ଗଞ୍ଜୋଡ଼ ଆସି ତାକୁ ମାଡ଼ିବସିଲେ । "ଭାଇଟା ପରା, ଅବକାଶ ଦୋକାନ କୋଉଠି ଅଛି ଟିକିଏ କହ !" ସେଥୁ ଅନ୍ତେ ବୋଧହୁଏ ତିନିଜଣଯାକ ଅଭୀଷ୍ଟ ସାଧନ ପାଇଁ ଯାଇଥିବେ ।



# ବଗୁଲିଆ ବିଜୁଳି

କେଉଁ ଯୁଗରେ ଏପରି ବାପା ଥିଲେ କି ନା ଜଣାନାହିଁ ମାତ୍ର ପିଲାଙ୍କ ବହିରୁ ଗପଟିଏ ପଢ଼ି ଆମର ହୃଦ୍‌ବୋଧ ହୋଇଯାଇଛି ଯେ ହିଁ ସେପରି ଜଣେ ଥିଲେ । ସେ କୁଆଡ଼େ ମୃତ୍ୟୁଶଯ୍ୟାରେ ସେ ଯାବତ୍ କର-ପ୍ରାପ୍ତ ନିକମ୍ମା ଅକାଳକୁଷ୍ମାଣ୍ଡ କୁଳଲଣ୍ଡଣମାନଙ୍କୁ ତାଙ୍କ ନିଜର ଅନ୍ତିମ ବାଣୀ ଶୁଣାଇଲେ : ହେ ହେ ପୁତ୍ରାଃ, ମଦାପ୍ତ ସ୍ୱ-ଉପାର୍ଜିତ ବିତ୍ତ ସହ ତୁମ୍ଭେମାନେ ପ୍ରଲୁବ୍ଧ କ୍ରୀଡ଼ା କରୁଛ । କର୍ମ କ'ଣ ଜାଣିଲ ନାହିଁ । କର୍ତ୍ତବ୍ୟ କ'ଣ ବୁଝିଲ ନାହିଁ । ଧନ ଖର୍ଚ୍ଚ କରିବାକୁ ହେଲେ ଅର୍ଜିବାକୁ ପଡ଼େରେ । ତୁମ୍ଭେମାନେ କେବଳ ପ୍ରଥମଟି ଶିଖିଛ । ମୋ ଜୀବଦ୍ଦଶା କାଳରେ ଆରଟି ଶିଖିବାକୁ ଆଗ୍ରହୀ ହେଲନାହିଁ । ମୋ ଜୀବନର ଅଣଆଶରୁ ଅଠରକଳଶ ପବନ ଫୁସ୍ ହୋଇସାରିଲାଣି । ଆଉ ଗୋଟାଏ, ଅଟେଇଥିବ କେତେବେଳେ ଓଲଟ ତରୁ ସଳଖି ହୋଇଯିବ, କିଏ ଜାଣେ । ତତ୍‌ପୂର୍ବରୁ ଗୋଟିଏ ସିକ୍ରେଟ୍ କହିଦେଇଥାଏ । ଜମିର ବିଭିନ୍ନ ସ୍ଥାନରେ ସୁନା, ରୁପା, ମଣି, ମାଣିକ୍ୟ ପୋତି ରଖିଦେଇ ଯାଉଛି । ଖାଡ଼ିବ ପାଇବ । ମୋଠୁରୁ ନକ୍‌ସା କହିବିନି ।

ଏତିକି କହିସାରିବା ପରେ ଗଳ୍ପକାର କହନ୍ତି, ବାପା କୁଆଡ଼େ ମରିଗଲେ । ତା'ପରେ ପୁଅମାନେ ଅକ୍ଳାନ୍ତ ପରିଶ୍ରମ କରି ଏମିତି ଖାଡ଼ିଲେ ଖାଡ଼ିଲେ ଯେ ଏଥିଅନ୍ତେ ଜମିଗୁଡ଼ିକ ସୁଜଳା, ସୁଫଳା, ଶସ୍ୟ-ଶ୍ୟାମଳା ହୋଇଗଲା ଓ ପିଲାଏ ହୋଇଗଲେ କର୍ମଠ । ତେଣିକି ପିଲେ ବୁଝିଲେ—ବାପା କହିଥିବା ସୁନା, ରୁପା ସତକୁ ସତ କ'ଣ ? ହେଲା ଯେ, ମାତ୍ର ଅନୁଶୀଳନ କରିବାକୁ ଯାଇ ଯଦି ପଚରାଯାଏ—ଖାଡ଼ିବା କାର୍ଯ୍ୟ ଯୋଗୁଁ ବିଲର ଫସଲ ଉଜୁଡ଼ିନାହିଁ ତ ?

ମନ୍ତ୍ରୀ କହନ୍ତି—ଟର୍ବାଇନ୍ ଭାଙ୍ଗିଯାଇଥିବା ଓ ପାଓ୍ୱାର ଚ୍ୟାନେଲ୍ ମରାମତି ହେଉଥିବା ଯୋଗୁଁ ରାଜ୍ୟରେ ଯାନ୍ତ୍ରିକ ବିଦ୍ୟୁତ୍ ସଙ୍କଟ ଉପୁଜିଥିବା ସମ୍ଭବ ଅଟେ । ଏକଥା ଯଦି ନହୋଇଥାନ୍ତା

ତା'ହେଲେ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ ସମଗ୍ର ଉତ୍କଳ ଭୂମିରେ 'ବା-ବା-ରେ-ଆଲୁଅ' ତଳକୁ କଷ୍ଟ କରିନଥାନ୍ତେ ।

ଚଞ୍ଚଳମୟୀ ବିଦ୍ୟୁତ୍ ସମ୍ପର୍କରେ ଯାହା ଅନୁମାନ କରାଗଲେ ବି ବେଠିକ୍ ହେବ । ଏପରିକି, ମନ୍ତ୍ରୀଙ୍କ କଥା ମଧ୍ୟ । ଉଦ୍ଭାବନର ଦୁଇଶହ ବର୍ଷ ଆତୁର ହୋଇନାହିଁ, ବିଜୁଳି ଯେତିକି ହୁଗୁଳିଲଣି—ଅନ୍ତତଃ ଆମ ପ୍ରଦେଶରେ— ତାକୁ ଆଉ କେହି ସଜଳ୍ କରିପାରିବେ, ଏକଥା ପରତେ ଯାଉନି । ସମୁଦାୟ ୪,୩୮୮ ଗ୍ରାମପଞ୍ଚାୟତରେ ବିଜୁଳି ଯୋଗାଇ-ଦିଆଯାଇଛି ବୋଲି ଦାବି କରି ଆସୁଛନ୍ତି ଆମ ସରକାର ଏବଂ ସେଥିପାଇଁ ଗୌରବାନ୍ୱିତ ବୋଧ କରୁଛନ୍ତି ମଧ୍ୟ । ବିଗୁରଟା ହେଲା, କୋଉ ଗାଁର ବିଲରେ ଯଦି ଗଣ୍ଡାକେତେ ଖୁଣ୍ଟ ପଡ଼ିଥାଏ ତା'ହେଲେ ପଞ୍ଚାୟତ ଆଲୋକିତ । ୫୦,୮୮୭ ଗାଁରେ ଯେତେ ଘର ଅଛି ତହିଁରୁ କେତେଘର ବିଜୁଳି ନେଇଛନ୍ତି ଓ ଅନ୍ୟ ମାରାତ୍ମକ ପ୍ରଶ୍ନଟି ହେଲା—ଦିନକୁ କେତେ ଘଣ୍ଟା ପାଆନ୍ତି ? ବିଜୁଳିର କମାଲ୍ ଏତିକି ଅଛି ଯେ କୌଣସି ଅଞ୍ଚଳକୁ ମନ୍ତ୍ରୀ ଗଲାବେଳେ ତାହା ଜଳିପାରିବ ଏବଂ ତାକୁ ଦେଖି ମନ୍ତ୍ରୀମାନେ କାର୍ତ୍ତିକ ଦୀପ ଦର୍ଶନର ପୁଣ୍ୟ ଅର୍ଜନ କରୁଥିବେ ।

ଆମ ଗାଁ ଶ୍ରୀବନ ଅଜା ଥରେ କହିଲେ—ହଇରେ, ଦନେଇ ଘର କଅଁାର ଇଲେକ୍‌ଟ୍ରି ଖୁଣ୍ଟରେ ସେଦିନ ଲୋକନାଥଙ୍କ ଷଣ୍ଢଟା ଟିକେ ଘଷି ହୋଇଗଲା ଯେ, ଆମେ ଦେଖୁଛୁ, ଉହାଳିବିକଳ ହୋଇ ସେ ମରିଗଲା । ଅଥଚ ଏ ଖବରକାଗଜବାଲା କହୁଛନ୍ତି, ବିଜୁଳି ଚୋରି ହୋଇଯାଉଛି ? ଏଡ଼େ ମାରାତ୍ମକ ଜିନିଷକୁ କେମିତି କିଏ କୋଉଥିରେ ପୂରାଇ ନେଉଛି ଯେ ?

ବୁଝେଇ ତ ପାରିଲିନି, ମାତ୍ର ଭାବୁଥିଲି—ହେ ଶ୍ରୀବନ ଅଜା, ତୁମେ କି ଛାର, ଯଦି କରେଣ୍ଟ ମାପିବା ପ୍ରଣାଳୀ ଉଦ୍ଭାବନ କରିଥିବା ଖୋଦ୍ ଜର୍ଜ ସାଇମନ୍ ଓମ୍ (ଓମ୍, ୧୭୮୭—୧୮୫୪) ଏଠି ଆସି ଉଭା ହୋଇଯା'ନ୍ତେ ନା ସିଏ ବି ବାୟା ହୋଇଯାଆନ୍ତେ । କାରଣ, ନେଟ୍ ଉତ୍ପାଦନ ବିୟୁକ୍ତ ନେଟ୍ ବିକ୍ରୀ ସମାନ 'ଶୂନ ନେଇଗଲା ଡାମରା କାଉ ।'

ବିଦ୍ୟୁତ୍ ସରକାରଙ୍କର ଗୋଟିଏ ପ୍ରକାର ମନୋପଲି ଟ୍ରେଡ଼ । ଉତ୍ପାଦନ କରନ୍ତି ସରକାର, ବିକନ୍ତି ସରକାର, ବିଜୁଳି ସପ୍ଲାଇରେ କୌଣସି ବୋଲ୍ହ ଯିବାର ସ୍କୋପ୍ ମଧ୍ୟ ନାହିଁ ତଥାପି ମଧ୍ୟ ମୂଳ ଚୂଳ ସମସ୍ତଙ୍କୁ ନ ହୁଅଇ କିଆଁ ?

"ଓଃ, ହ୍ୱାଟ୍ ଏ କନ୍‌ସର୍ନ ଇଜ୍ ଇଓର୍‌ସ !"

"କ'ଣ ହେଲା, ସାର୍ ?"

କଥାଟି କହିଦେଲେ ପ୍ରାଞ୍ଜଳ ହୋଇଯିବ । ସହରର ନାଁ ଭୁବନେଶ୍ୱର । ମୋର ଜଣେ ପରିଚିତ ବିଦେଶୀ ଭଦ୍ରଲୋକ ସେଠାରେ ଭଡ଼ାନେଇ ରହିଛନ୍ତି । ସେଠାକୁ ବିଦ୍ୟୁତ୍ ବିଭାଗ ଲୋକ ଆସୁଛନ୍ତି ଓ ଭୁହାକୁଭୁହା କହୁଛନ୍ତି—ଆଜ୍ଞା, ଆସେସ୍‌ମେଣ୍ଟ ହେଲାଣି ଅଠର ହଜାର ଟଙ୍କା । ଏତେ ଦିନ ଭିତରେ ପଇଠ ନକଲେ ଲାଇନ୍ କଟାଯିବ । ବାଇଡା ସମସ୍ତ ପଚିଶ ଥର ସରିଲାଣି । ବିଲ୍ ମାଗିଲେ ବିଲ୍ ବି ଦେଉନାହାନ୍ତି ବା ଲାଇନ ବି କାଟୁନାହାନ୍ତି । ବିତିଯାଇଥିବା ସମସ୍ତ ଭିତରେ ଥରକୁ ଥର ହଜାରେ, ଦୁଇ ହଜାର ବଢ଼ାଇ ବଢ଼ାଇ ତାହା ଏବେ କୁଆଡ଼େ ପଚିଶ ହଜାର ହେଲାଣି ।

ବିଦେଶୀ ସାହେବ ରହୁଥିବା ଘରର ମାଲିକ ମୋର ଅତି ପରିଚିତ ବ୍ୟକ୍ତି । ସଂଯୋଗକ୍ରମେ ସେ ବାବୁଙ୍କ ସହିତ ସାକ୍ଷାତ ହୁଏ । ପଚାରିଲି, 'ଆଜ୍ଞା, ମାମଲା କ'ଣ କି ? କାଳେ ଲାଇନ କାଟିଦେବେ ବୋଲି ସାହବଟା ଖାଲି ଡରକୁଛି ।

ସେ କହିଲେ, 'ପାଗଳ ହେଲ କି ପ୍ରେମସାଗର । ଲାଇନ କାଟିଲେ ଗ୍ରେପାଟା ପାଇବେ । ସାହାବଟା ଆମ ଜଳବାୟୁ ସାଙ୍ଗରେ ଅଭ୍ୟସ୍ତ ହୋଇନି ତ ।'

ମୁଁ ପଚାରିଲି, 'ମାନେ ?'

'ମୁଁ ଇଲେକ୍‌ଟ୍ରି ଅଫିସକୁ ପାଞ୍ଚଥର ଯାଇସାରିଲିଣି । ସେମାନେ କହୁଛନ୍ତି ପଚିଶକୁ ଆମେ ତିନିରେ ରଖିଦେବୁ, ବାକି ବାଇଶକୁ ଫିଫ୍

କରିଦଅନ୍ତୁ । ଏଣେ ସାହାବ କହୁଛି—ବିଲ୍ ଦିଅନ୍ତୁ, ମୁଁ ସବୁ ପେମେଣ୍ଟ୍ କରିବ । ତେଣୁ ସେମାନେ ବିଲ୍ ଦେଉନାହାନ୍ତି ।'

ଏକଥା ଅନେକ ଜାଣିଥିବେ ମିଠର ଶଙ୍ଗଂ କରିବାକୁ ଆସି ପ୍ରତ୍ୟେକଥର ମିଠରକୁ ପଚ୍ଛୁଆ ବୁଲିହୁଏ । ଉଦ୍ଦେଶ୍ୟ—ଘ୍ରାବକୁ ନିକଟ ତାହା ଅଭାବକୁ ଦୂର । କେବଳ କ'ଣ ଏହା ଭୁବନେଶ୍ୱରରେ ହେଉଛି, ଅନ୍ୟ କେଉଁଠି ହେଉନଥିବ ? ହମ୍ କମିସେ କମ୍ ନେହିଁ ଚରିବର ଲୋକ କ'ଣ ଅନ୍ୟ ସହରରେ ନଥିବେ ? ଯାହା ଦୁଃଖରେ ପଡ଼ିଥିବେ ସେମାନେ ହେଲେ ମଫସଲବାସୀ । ମିନିମମ୍ ଫ୍ଲାଟ ରେଟ୍ ଛଡ଼ା ଗତି ନାହିଁ ।

ବାପା କଥା ଶୁଣି ବଲ ଡାଉଁଥିବା ବାଳୁଙ୍ଗା ପୁଅମାନେ ଯଦି ଫସଲ ଆଡ଼େ ନିଘା ନ ଦିଅନ୍ତି, ମନ୍ତ୍ରୀ ଏବେ କରିବେ କ'ଣ ? ମନ୍ତ୍ରୀ ଯେତେବେଳେ ପ୍ରାଇଭେଟ୍ ହେବେ ତାଙ୍କ ଘରର ମିଠର ପଛକୁ ପୁଣି ବୁଲେଇବ କିଏ ?

